ସଜ ସକାଳ

କ୍ଷୁଦ୍ରଗଳ୍ପ ସଂକଳନ

ଗାଳ୍ପିକ :
ମନୋଜ କୁମାର ଜେନା

ପ୍ରଥମ ସଂସ୍କରଣ :
୨୦୧୯

ପ୍ରକାଶିକା :
ଗୀତାଞ୍ଜଳୀ ଜେନା
ଘର ନଂ-୧୫୭, ଗୌରୀଗାର୍ଡ଼େନ, ଗୌରୀ ନଗର
ଭୁବନେଶ୍ୱର-୭୫୧୦୦୨
ଫୋନ-୯୫୭୪୩୩୧୯୫୭

ମୁଦ୍ରଣ :
ଭିବ୍‌ଗିଓର ପ୍ରିଣ୍ଟର, ଗ୍ୟାରେଜ୍ ଛକ,
ଭୁବନେଶ୍ୱର-୭୫୧୦୦୨

ମୂଲ୍ୟ ::
୧୦୦ ଟଙ୍କା ( ଏକ ଶତ ଟଙ୍କା ମାତ୍ର)

# ସଜ ସକାଳ : ଏକ ଦୃଷ୍ଟିପାତ

## ଡଃ ବିଭୂତି ପଟ୍ଟନାୟକ

'ସଜ ସକାଳ' ମନୋଜ କୁମାର ଜେନାଙ୍କ ପ୍ରଥମ ଗଳ୍ପ ସଂକଳନ । ଅବଶ୍ୟ ଏଥିରେ ସନ୍ନିବିଷ୍ଟ ଅନେକ ଗଳ୍ପ ଏଥିପୂର୍ବରୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ପାଠକର ଶ୍ରଦ୍ଧା ଅର୍ଜନ କରି ସାରିଛି ।

ଗଳ୍ପ ସଂକଳନର ପ୍ରଥମ ତିନିଟି ଗଳ୍ପରେ ଲେଖକଙ୍କର କଥାବସ୍ତୁ ନିର୍ବାଚନର ବିବିଧତା, ପ୍ରକାଶ ଭଙ୍ଗୀରେ ଅକୃତ୍ରିମ ସରଳତା ଏବଂ ଭାଷାର ସାବଲୀଳତା ପାଠକମାନଙ୍କ ମନଯୋଗ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଧରି ରଖିବା ପାଇଁ ସମର୍ଥ ।

'ଆନନ୍ଦାଶ୍ରମ' ଗଳ୍ପରେ ଗ୍ରାମ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ହରିସାର୍ ପତ୍ନୀ ବିୟୋଗ ପରେ ଗ୍ରାମ ଛାଡ଼ି ପୁତ୍ର ସୁବ୍ରତର ସରକାରୀ ବାସଗୃହ ଭୁବନେଶ୍ୱର ଚାଲି ଆସିଥିଲେ । ପୁତ୍ର ଓ ପୁତ୍ରବଧୂ କର୍ମଜୀବୀ ଏବଂ ନାତିନାତୁଣୀ ସ୍କୁଲ୍ ର ଛାତ୍ରଛାତ୍ରୀ । ପୁଅବୋହୂ ବାପାଙ୍କ ଖୁବ୍ ଯତ୍ନ ନେଉଥିଲେ ମଧ୍ୟ ପୁଅ ବୋହୂ ନିଜ ନିଜ କର୍ମକ୍ଷେତ୍ର ଏବଂ ନାତିନାତୁଣୀ ସ୍କୁଲ୍‌କୁ ଗଲାପରେ ବାପା ହରି ସାର୍ ନିଃସଙ୍ଗତାର ବିଷମ ବ୍ୟାଧିରେ ଛଟପଟ ହୁଅନ୍ତି । ଏ ନିଃସଙ୍ଗତାକୁ ଏଡ଼ାଇବା ପାଇଁ ପୁଅ ବୋହୂଙ୍କୁ ନ କହି ଦିନେ ନୂଆପଲ୍ଲୀର ଏକ ଜରାଶ୍ରମକୁ ଚାଲିଗଲେ । ପୁଅ ସେଠାରେ ପହଞ୍ଚି ଦେଖିଲା - ବାପା ସେଠାରେ ଥିବା ଜରାଶ୍ରମର ବୃଦ୍ଧମାନଙ୍କ ସହ ବସି ମନ ଆନନ୍ଦରେ ତାସ୍ ଖେଳୁଛନ୍ତି । ଜରାଶ୍ରମ ତାଙ୍କ ପାଇଁ ଆନନ୍ଦାଶ୍ରମ ପାଲଟି ଯାଇଛି ।

ଦ୍ୱିତୀୟ ଗଳ୍ପ 'ଅଦିନ ବସନ୍ତ'ର ନାୟିକା ଶୁଚିସ୍ମିତା କୁମାରୀ ଜୀବନର ସହପାଠୀ ସୁଶାନ୍ତକୁ ବିବାହ କରିବାକୁ ଚାହିଁଥିଲା, କିନ୍ତୁ ବାପା ମାଆଙ୍କ ଚାପରେ ବାହା ହେଲା ଓ.ଏ.ଏସ୍. ଅଫିସର ଅୟସ୍କାନ୍ତଙ୍କୁ । ବହୁବର୍ଷ ପରେ ସ୍ୱାମୀ ଢେଙ୍କାନାଳ ବଦଳି ହୋଇ ଆସିଲା ପରେ ହଠାତ୍ ପରିବା ହାଟରେ ସୁଶାନ୍ତଙ୍କ ସହ ଦେଖା । ସେହିଦିନ ଢେଙ୍କାନାଳର ପ୍ରସିଦ୍ଧ ବରା ନେଇ ସୁଶାନ୍ତ ତାଙ୍କ ବସାକୁ ଯିବ ବୋଲି ପ୍ରସ୍ତାବ ଦେଲା । ନାହିଁ କରି ପାରିନଥିଲା ଶୁଚିସ୍ମିତା । ବହୁ ବର୍ଷ ପରେ ନିଜ ପ୍ରିୟ ପୁରୁଷ ସହ ଏକାନ୍ତରେ ଦେଖା ହେବା କଥା ଭାବିବା ମାତ୍ରେ ତା ମନକୁ ଅଦିନ ବସନ୍ତର ମଦିରା ନିଶା ଆଚ୍ଛନ୍ନ କରି ଦେଇଥିଲା । କିନ୍ତୁ ବରା ପ୍ୟାକେଟ୍ ଧରି ସୁଶାନ୍ତ ଯେତେବେଳେ ଘରର ଦରଜାରେ କରାଘାତ କଲା, ଭିତର ପଟୁ ଜଞ୍ଜିର ଖୋଲି ନଥିଲା ଶୁଚିସ୍ମିତା ।

ଅଦିନ ବସନ୍ତର ମୃଦୁମଳୟ ସୁଶାନ୍ତ ପାଇଁ ଝାଞ୍ଜି ଖରାରେ ରୂପାନ୍ତରିତ ହୋଇ ଯାଇଥିଲା ।

ତୃତୀୟ ଗଳ୍ପ 'ମୃଗତୃଷା' । ସଚିବାଳୟ କିରାଣି ଗୋପାଳ ବାବୁଙ୍କ ତିନି ପୁଅ । ପ୍ରଥମ ଓ ଦ୍ୱିତୀୟ ପୁଅ ଡାକ୍ତର ଏବଂ ଇଂଜିନିୟର । ତୃତୀୟ ସନ୍ତାନ ସୁଶାନ୍ତ ଫୁଟବଲ୍ ପାଗଳ, ପାଠରେ ଅପାରଗ । ଦୁଇ ଦୁଇ ଥର ମାଟ୍ରିକ୍ ଫେଲ୍ ହେଲା ପରେ ଗୋପାଳବାବୁ ତାକୁ ତ୍ୟାଜ୍ୟପୁତ୍ର କରିଥିଲେ । ସୁଶାନ୍ତ ଘର ଛାଡ଼ି ଫୁଟବଲ୍ କ୍ଲବ୍‌ରେ ରହୁଥିଲା । ନିଜ ଚେଷ୍ଟାରେ ତୃତୀୟ ଶ୍ରେଣୀରେ ମାଟ୍ରିକ ଏବଂ ଆଇ.ଏ. ପାଶ୍ କଲା, କିନ୍ତୁ ବି.ଏ. ପାଶ୍ କରିପାରିଲା ନାହିଁ । ଫୁଟ୍‌ବଲ୍ ଖେଳାଳୀ ଭାବରେ ସୁନାମ ଅର୍ଜନ କରିଥିଲା ।

ଗୋପାଳବାବୁ ସରକାରୀ ଚାକିରିରୁ ଅବସର ନେଲା ପରେ ବଡ଼ ପୁଅ ଓ ମଝିଆଁ ପୁଅ ପାଖରେ ରହିବେ ବୋଲି ମନ ସ୍ଥିର କରିଥିଲେ । କିନ୍ତୁ ଦୁଇ ପୁଅ ବୃଦ୍ଧ ପିତାମାତାଙ୍କ ବୋଝ ବୋହି ପାରିବେ ନାହିଁ ବୋଲି ମନା କରି ଦେଲାପରେ ଗୋପାଳ ବାବୁଙ୍କୁ ଚାରିଆଡ଼ ଅନ୍ଧାର ଦେଖା ଯାଇଥିଲା ।

ଅକାଳ କୁଷ୍ମାଣ୍ଡ ପୁଅ ସୁଶାନ୍ତ ଶେଷରେ ତାଙ୍କୁ ନିଜ ପାଖକୁ ଡାକି ନେଲା, ଯାହାକୁ ଗୋପାଳ ବାବୁ ତ୍ୟାଜ୍ୟପୁତ୍ର କରିଥିଲେ ।

ଆଧୁନିକ କ୍ଷୁଦ୍ରଗଳ୍ପ ହେଉଛି ସମୟର ଶିଳ୍ପରୂପ । ମନୋଜ କୁମାର ଜେନାଙ୍କ ସମୟ ସଚେତନତା ତାଙ୍କର ଅଧିକାଂଶ ଗଳ୍ପକୁ ପରିବର୍ତ୍ତିତ ସମୟର ଜଳଛବି ଭଳି ପାଠକର ଦୃଷ୍ଟିକୁ ଆଚ୍ଛନ୍ନ କରିବାକୁ ସମର୍ଥ । ଅଧିକ ଅଭିନିବେଶ ଏବଂ ଅନ୍ତର୍ଦୃଷ୍ଟି ତାଙ୍କର ସାମର୍ଥ୍ୟ ବୃଦ୍ଧି କରିବା ସହିତ ଓଡ଼ିଆ କଥା ସାହିତ୍ୟକୁ ସମୃଦ୍ଧ କରିବ ବୋଲି ମୁଁ ଆଶା କରୁଛି ।

ଭୁବନେଶ୍ୱର-୧୪

ପ୍ରଖ୍ୟାତ ଔପନ୍ୟାସିକ, ଗାଳ୍ପିକ
ଶିକ୍ଷାବିତ୍ ଓ ପ୍ରାବନ୍ଧିକ

# ଉତ୍ସର୍ଗ

ଶୃଙ୍ଖଳାକୁ ଜାହିର କରିବାକୁ ଯିଏ ଚଟାଣ ପରି କଠିନ, ସ୍ନେହ, ମମତାରେ ପଦ୍ମଫୁଲ ପରି କୋମଳ, ନିଜ ସିଦ୍ଧାନ୍ତ ଉପରେ ଯାହାଙ୍କର ଅତୁଟ ବିଶ୍ୱାସ, ଜୀବନସାରା ହାତ ଧରି ଯିଏ ବାଟ କଢ଼େଇ ଥିଲେ, ଜୀବନର ଅଗ୍ନିପଥରେ ଝୁଣ୍ଟି ପଡ଼ିଗଲେ ଉଠିବାକୁ ଶିଖାଉ ଥିଲେ, ମୋ ଆସିବା ବାଟକୁ ଯିଏ ଚାତକ ପରି ଅନେଇଁ ରହୁଥିଲେ, ଦେଖିଲେ କୋଟିନିଧି କରୁଥିଲେ , ମୋର ସବୁ ଭୁଲ୍‌କୁ ବି ଠିକ୍ ଭାବୁଥିଲେ, ଯିଏ ଶୃଙ୍ଖଳା, ଧୈର୍ଯ୍ୟ, ସ୍ପଷ୍ଟବାଦିତା ଓ ସାହସର ପ୍ରତିଛବି ଥିଲେ, ସେ ହେଉଛନ୍ତି ମୋର ବାପା ।

ଅନ୍ତଫାଡ଼ି ଯିଏ ଜନମ ଦେଇଛି, ରକ୍ତ ଦେଇ ଠିଆ କରାଇଛି, ଚଲାପଥର କଣ୍ଟାକୁ ଆଖି ଲୁହରେ ଭସାଇ ଦେଇଛି, ନରମ କୋଳରେ ଶୁଆଇ ଦେଇ "ଧୋରେ ବାଇଆ ଧୋ, ଯୋଉ କିଆରୀରେ ଗହଳ ମାଣ୍ଡିଆ, ସେଇ କିଆରୀରେ ଶୋ' ଗୀତ ଗାଇଛି, ଟୁଆଁ ଟୁଇଁ ଗପ କହିଛି, ମୋ ଖୁସିରେ ଯାହା ହୃଦୟ ଆନନ୍ଦରେ ଉଛୁଳି ପଡ଼ିଛି, ମମତାର ସେ କଳ କଳ ନାଦିନୀ ଛଳ ଛଳ ଝରଣା ହେଉଛି ମୋର ମାଆ ।

ମୋ ପରମପୂଜ୍ୟ ପିତା **ସ୍ୱର୍ଗତ ହୃଷୀକେଶ ଜେନା ଓ ସ୍ନେହମୟୀ ଜନନୀ ସ୍ୱର୍ଗତା ହେମପ୍ରଭା ଜେନାଙ୍କୁ** ମୋର ଏହି ପ୍ରଥମ କ୍ଷୁଦ୍ରଗଳ୍ପ ଗଳ୍ପ ସଂକଳନଟି ଉତ୍ସର୍ଗ କରୁଛି ।

ମନୋଜ କୁମାର ଜେନା

# ପଦେ କଥା

ସ୍କୁଲରେ ପଢୁଥିବା ସମୟରେ ମୋର ବଡ଼ ଭାଇ ଡଃ ସରୋଜ କୁମାର ଜେନା ଭାଇ, ଭଉଣୀ, ପୁତୁରା, ଝିଆରୀଙ୍କ ବିବାହ ଉପଲକ୍ଷେ ମନଛୁଆଁ କବିତା ରଚନା କରୁଥିଲେ । ତାଙ୍କର ଅନେକ କବିତା ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେଉଥିଲା । ତାକୁ ପଢ଼ି ମୋର କବିତା ଲେଖିବାର ଇଚ୍ଛା ଉଦ୍ରେକ ହେଲା ।

କଲେଜରେ ପଢ଼ିବା ସମୟରେ ମୋର ସମ୍ମାନୀୟ ଶିକ୍ଷକ ପ୍ରଖ୍ୟାତ ଗାଳ୍ପିକ ଶ୍ରୀ ଆନନ୍ଦ ଚନ୍ଦ୍ର ପହିଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ଗଳ୍ପ ଲେଖିବା ଆରମ୍ଭ କଲି । ୧୯୭୬ ମସିହାରେ ବିଜେବି କଲେଜରେ ପଢ଼ିବା ସମୟରେ କଲେଜ ପତ୍ରିକାରେ 'କାଗଜ ଫୁଲ' ଗଳ୍ପଟି ପ୍ରକାଶିତ ହୋଇଥିଲା । ତାହା ଥିଲା ମୋର ପ୍ରଥମ ଗଳ୍ପ । ବାଣୀବିହାରରେ ପଢୁଥିବା ସମୟରେ ବାଣୀବିହାରର ଏକ ପତ୍ରିକାରେ ମୋର ଗଳ୍ପଟିଏ ପ୍ରକାଶିତ ହୋଇଥିଲା ।

୧୯୭୮ରେ ଚାକିରି ଆରମ୍ଭ ପରେ କାର୍ଯ୍ୟବ୍ୟସ୍ତତା ପାଇଁ ହେଉ କିମ୍ବା ସ୍ୱଭାବ ସୁଲଭ ଅଳସୁଆମି ଯୋଗୁଁ ଗଳ୍ପ ଲେଖି ପାରିନଥିଲି । ବନ୍ଧୁ ଗାଳ୍ପିକ ରାଧା ମୋହନ ଷଡ଼ଙ୍ଗୀଙ୍କ ପ୍ରୋତ୍ସାହନରେ ବ୍ରହ୍ମପୁରରେ ଇଣ୍ଡିଆନ ଓଭରସିଜ ବ୍ୟାଙ୍କର ଶାଖା ପରିଚାଳକ ଭାବରେ କାର୍ଯ୍ୟ କରୁଥିବା ସମୟରେ ୧୯୯୪ ମସିହାରେ ଅଲ ଇଣ୍ଡିଆ ରେଡିଓରେ ଦୁଇଟି ଗଳ୍ପ ପାଠ କରିଥିଲି । ତା ପରେ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ବ୍ୟସ୍ତତା ପାଇଁ କିମ୍ବା ସାହିତ୍ୟ ପ୍ରତି ଆବଶ୍ୟକୀୟ ପ୍ରତିବଦ୍ଧତାର ଅଭାବ ଯୋଗୁଁ ଗଳ୍ପ ଲେଖିବା ବନ୍ଦ ହୋଇଗଲା । ବୃତ୍ତି ଓ ପ୍ରବୃତ୍ତିର ଲଢ଼େଇରେ ପ୍ରବୃତ୍ତି ମୁଣ୍ଡ ନୁଆଁଇ ଦେଇଥିଲା । ୩୧.୦୩.୨୦୧୭ରେ ବ୍ୟାଙ୍କ ସେବାରୁ ଅବସର ନେବା ପରେ ସହଧର୍ମିଣୀ ଶ୍ରୀମତୀ ଗୀତାଞ୍ଜଳୀ ଜେନାଙ୍କ ପ୍ରେରଣାରେ ସଂସ୍କୃତରେ ଲିଖିତ ବିଷ୍ଣୁ ସହସ୍ର ନାମ ଓ ବଙ୍ଗଳାରେ ଲିଖିତ ଶ୍ରୀକୃଷ୍ଣ ରସାମୃତ ଜ୍ଞାନମଞ୍ଜରୀକୁ ଓଡ଼ିଆ କବିତାରେ ରୂପାନ୍ତର କରି 'ପ୍ରଭୁ ମହିମା' ପୁସ୍ତକ ରଚନା କରିଥିଲି । ତା ପରେ ଆମ ଗାଁର ଧୂଳି, ଧୂଆଁ, ମାଟି, ପାଣି, ପବନକୁ ନେଇ "ଆମ ଗାଆଁ" କବିତା ପୁସ୍ତକ ରଚନା କଲି । ଏହି ଦୁଇଟି ପୁସ୍ତକ ପାଠକୀୟ ସ୍ୱୀକୃତି ଲାଭ କରିଥିଲା ।

ଅବସର ପରେ ଯେବେ ସମୟ, ସୁବିଧା ମିଳିଲା ମୁଁ ଗଳ୍ପ ଲେଖିବା ପାଇଁ ମନସ୍ଥ କଲି । ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ସଫଳ ନାଟ୍ୟକାର ଓ ଲବ୍ଧପ୍ରତିଷ୍ଠ ଗାଳ୍ପିକ ଶ୍ରୀ ଆନନ୍ଦ ଚନ୍ଦ୍ର ପହିଙ୍କ ଦିଗ୍‌ଦର୍ଶନ ଓ ପ୍ରେରଣା ଗଳ୍ପ ଲେଖିବା ପାଇଁ ମୋ କଲମକୁ ଚଳଚଞ୍ଚଳ କରି ଦେଲା । ଗଳ୍ପ ଲେଖିଲାବେଳେ ଯଦି କଲମ ରହିଯାଏ, ଶ୍ରୀ ପହି ଆଗେଇ ଚାଲିବାକୁ ଉତ୍ସାହିତ କରନ୍ତି । ମୋର ସମସ୍ତ ଗଳ୍ପକୁ ତନ୍ନ ତନ୍ନ କରି ପଢ଼ନ୍ତି । ତ୍ରୁଟି ବିଚ୍ୟୁତି ରହିଥିଲେ,

ତାକୁ ସୁଧାରି ନେବାକୁ ସୁପରାମର୍ଶ ଦିଅନ୍ତି । ତାଙ୍କର ଦିଗ୍‌ଦର୍ଶନ, ପ୍ରୋତ୍ସାହନ ଓ ସାହାଯ୍ୟ ବିନା ଏ ଗଳ୍ପ ସଂକଳନଟି ପ୍ରକାଶ କରିବା ସମ୍ଭବ ହୋଇନଥାନ୍ତା ।

ଅବସରପ୍ରାପ୍ତ ଆମ ବ୍ୟାଙ୍କ କର୍ମଚାରୀଙ୍କ ପ୍ରତି ମାସରେ ଅନୁଷ୍ଠିତ ହେଉଥିବା ସଭାରେ ପ୍ରଥମ ଗଳ୍ପ ମୃଗତୃଷ୍ଣା ପାଠ କରି ଆନନ୍ଦ ଅନୁଭବ କରିଥିଲି । ମୋର କ୍ଷୁଦ୍ରଗଳ୍ପଗୁଡ଼ିକ ଯେବେ ଓଡ଼ିଶାର ସମ୍ଭ୍ରାନ୍ତ ପତ୍ରିକା 'ସତ୍ୟବାଦୀ', 'ସମାରୋହ' ଓ 'କଥା କଳିକା'ରେ ପ୍ରକାଶିତ ହେଲା ମିଠା ମିଠା ଖୁସିରେ ଉଲ୍ଲସିତ ହେଲି । ତା' ପରେ ଗଳ୍ପ ଲେଖି ଚାଲିଲି ।

ଏହି ଗଳ୍ପ ସଂକଳନରେ ଚଉଦଟି କ୍ଷୁଦ୍ରଗଳ୍ପ ସନ୍ନିବେଶିତ ହୋଇଛି । ଭାଷାର ସାବଲୀଳ ପ୍ରବାହ ଓ କାହାଣୀରେ ରହୁଥିବା ଉତ୍କଣ୍ଠାର ସମନ୍ୱୟରେ ଗଳ୍ପ ଗୁଡ଼ିକୁ ସୁନ୍ଦର ଓ ସୁଖପାଠ୍ୟ କରିବାକୁ ପ୍ରୟାସ କରିଛି । ଗଳ୍ପଗୁଡ଼ିକ ସମସ୍ୟାର ଖିଅ କାଢ଼ି ମୁଣ୍ଡ ଟେକି ଉଠନ୍ତି । କ୍ରମେ କ୍ରମେ ସମସ୍ୟା ତାର ଶାଖା ପ୍ରଶାଖା ବିସ୍ତାର କରି ପାଠକକୁ ଉଦ୍‌ବିଗ୍ନ କରିଦିଏ । ପରିଶେଷରେ ସମସ୍ୟାର ପାହାଡ଼ ବରଫ ପରି ତରଳି ଯାଏ । ପାଠକ ମନରେ ଖୁସି ଓ ସନ୍ତୋଷ ଭରିଯାଏ । ଉଦୟ ହୁଏ ଆନନ୍ଦ ଓ ଆଶ୍ୱସ୍ତିର ନୂଆ ସକାଳ । ଆଲୋକ ଓ ଅରୁଣିମାରେ ପରିବେଶ ରଙ୍ଗିନ ଓ ଉଜ୍ଜ୍ୱଳ ଦେଖାଯାଏ । ସେଥିପାଇଁ ଏ ଗଳ୍ପ ସଂକଳନଟିର ନାମ ରଖାଯାଇଛି "ସଜ ସକାଳ" । ଏହା ମୋର ପ୍ରଥମ ଗଳ୍ପ ସଂକଳନ ହୋଇଥିବାରୁ ଏ ସକାଳ ଶୁଭଙ୍କର ହେଉ, ଜଗଦୀଶ୍ୱରଙ୍କ ଚରଣ ପଙ୍କଜରେ ଏତିକି ପ୍ରାର୍ଥନା ।

ଏଥିରେ ଥିବା ସମସ୍ତ ଗଳ୍ପ ସମାରୋହ, କଥା କଳିକା, ସତ୍ୟବାଦୀ ଆଦି ଅଗ୍ରଣୀ ପତ୍ରିକାରେ ପ୍ରକାଶିତ ହୋଇଛି । ଏହି ପତ୍ରିକାର ସଂପାଦକମାନଙ୍କ ପ୍ରତି ଅଶେଷ କୃତଜ୍ଞତା ପ୍ରକାଶ କରୁଅଛି ।

ଯେଉଁ ଶୁଭାକାଂକ୍ଷୀ ଗୁରୁଜନ, ବନ୍ଧୁ, ସଂପର୍କୀୟ ଓ ପାଠକମାନେ ଗଳ୍ପଗୁଡ଼ିକୁ ପାଠ କରି ସେମାନଙ୍କ ସୁଚିନ୍ତିତ ମତାମତ ପ୍ରଦାନ କରିଛନ୍ତି ଓ ଲେଖିବାକୁ ଉତ୍ସାହିତ କରିଛନ୍ତି, ସେମାନଙ୍କୁ ଅନ୍ତରର ଗଭୀରତମ ପ୍ରଦେଶରୁ କୃତଜ୍ଞତା ଜ୍ଞାପନ କରୁଛି ।

**ମନୋଜ କୁମାର ଜେନା**

*ନିହଲପ୍ରସାଦ,*
*ଜିଲ୍ଲା-ଢେଙ୍କାନାଳ*

*୧୫୭, ଗୌରୀ ଗାର୍ଡେନ,*
*ଗୌରୀନଗର, ଲୁଇସ୍ ରୋଡ୍, ଭୁବନେଶ୍ୱର*

*ମୋ.: ୯୫୭୪୩୩୧୯୫୭*

# ସୂଚୀପତ୍ର

# ଆନନ୍ଦାଶ୍ରମ

ରବିବାରର ଅଳସ ସକାଳ । ଭିଡିମୋଡ଼ି ହୋଇ ନିଦ ଭାଙ୍ଗୁ ଭାଙ୍ଗୁ ସୁବ୍ରତ ଖବର କାଗଜର ମୁଖ୍ୟ ସ୍ତମ୍ଭ ଉପରେ ଆଖି ବୁଲାଇ ନେଉଛନ୍ତି । ଏହି ସମୟରେ ସ୍ତ୍ରୀ ସୁରଭି ଘରକୁ ପଶିଆସି କହିଲେ-ବୁଝିଲ, ମୁଁ ବାପାଙ୍କୁ କାହିଁ କେଉଁଠି ପାଉନି ।

ବିରକ୍ତିମିଶା କଣ୍ଠରେ ସୁବ୍ରତ ଚହିରି ଉଠିଲେ -ବାପା କ'ଣ ଛୋଟପିଲା ହୋଇଛନ୍ତି ? ଭଲ ଭାବରେ ଦେଖ, ସେଇଠି କୋଉଠି ଥିବେ ।

ସକାଳୁ ଉଠୁ ଉଠୁ ବାପା ଖୋଜନ୍ତି ଲେମ୍ବୁ ସରବତ୍ । ଏଇଟା ତାଙ୍କର ୫୦ ବର୍ଷର ଅଭ୍ୟାସ । ଲେମ୍ବୁ ସର୍ବତ ଦେବାରେ ଡ଼େରି ହେଲେ ସିଏ ବ୍ୟସ୍ତହୋଇ ଉଠନ୍ତି । ଆଜି ସୁରଭି ସରବତ୍ ଗ୍ଲାସ ଧରି ଖୋଜୁଛନ୍ତି ଏ ଘର, ସେ ଘର । ଅଗଣା ଓ ବାଡ଼ି । ବାପାଙ୍କୁ କେଉଁଠି ପାଉନାହାଁନ୍ତି । ଅଧ ଘଣ୍ଟାକ ପରେ ସୁରଭି ଡ୍ରଇଙ୍ଗ ରୁମ୍‌କୁ ଧସେଇ ପଶିଆସି ସୁବ୍ରତଙ୍କୁ କହିଲେ- ତୁମେ କ'ଣ ଖବର କାଗଜ ପଢୁଛ ? ସବୁଆଡ଼େ ଖୋଜି ସାରିଲିଣି, ବାପା ଯେ କେଉଁଠାରେ ନାହାଁନ୍ତି ।

ଖବରକାଗଜ ଦୁନିଆରୁ ନିଜକୁ ନିବୃତ୍ତ କରି ସୁବ୍ରତ ପରିସ୍ଥିତିର ଗମ୍ଭୀରତା ହୃଦୟଙ୍ଗମ କଲେ । ତାଙ୍କ ବାପା ଥିଲେ ଗାଆଁ ଉ.ପ୍ରା: ସ୍କୁଲର ହେଡ୍ ପଣ୍ଡିତ ହରି ସାର୍ । ସମୟାନୁବର୍ତ୍ତୀତା, ଶୃଙ୍ଖଳା ଓ କର୍ମ ନିଷ୍ଠାର ଜୀବନ୍ତ ପ୍ରତିମୂର୍ତ୍ତି । ତାଙ୍କ ବ୍ୟକ୍ତିତ୍ୱର ଆଭାରେ ଉଦ୍‌ଭାସିତ ହେଉଥାଏ ବିଦ୍ୟାଳୟର ପରିବେଶ । ଅବସର ପରେ ବାପା ଓ ବୋଉ ଗାଆଁରେ ରହୁଥିଲେ । ଗାଆଁ ଜମିବାଡ଼ି, ଗାଈଗୋରୁ, ଧାନ ଅମଳ, ହଳିଆ ମୂଲିଆଙ୍କ ଦୁନିଆରେ କିଭଳି ସକାଳରୁ ସଂନ୍ଧ୍ୟା ହୋଇଥାଏ ସେମାନଙ୍କୁ ଜଣା ପଡ଼େନି । ସୁବ୍ରତ ତାଙ୍କର ଏକମାତ୍ର ପୁତ୍ର । ଏମ୍. ଏ. ପାସ୍ କଲାପରେ ଓଡ଼ିଶା ସରକାରଙ୍କ ପଦସ୍ଥ ଅଫିସର୍ ଭାବେ ଭୁବନେଶ୍ୱରରେ ଅବସ୍ଥାପିତ । ସ୍ତ୍ରୀ ସୁରଭୀ ଖୋର୍ଦ୍ଧା ନିକଟରେ ଗୋଟିଏ ଘରୋଇ କଲେଜରେ ଅଧ୍ୟାପିକା । ଛୋଟ ପୁଅ ଓ ଝିଅ, ବୁନୁ ଓ କୁନି ।

ବୟସ ବଢ଼ିବା ପରେ ବାପା, ବୋଉଙ୍କ ଦେହ ପା' ଭଲ ରହିଲା ନାହିଁ । ସୁବ୍ରତ ଗାଁକୁ ଯାଇ ଚାଷବାସ ବନ୍ଦ କରିବାର ସମସ୍ତ ବ୍ୟବସ୍ଥା କରି ବାପା ବୋଉଙ୍କୁ ବୁଝାଇ ସୁଝାଇ ଭୁବନେଶ୍ୱର ନେଇ ଆସିଲେ । ସୁରଭିଙ୍କର ଅନାବିଳ ଭକ୍ତି ଓ ଯତ୍ନରେ ତଥା ବୁନୁ ଓ କୁନିଙ୍କର ମିଠା ମିଠା କଥା ଭିତରେ କ୍ରମେ ସେମାନେ ଆପଣାର କରିନେଲେ ଏହି ଅଜଣା ସହରକୁ ।

ତଥାପି ସହରର ଚାଲିଚଳନ, ରଙ୍ଗଢ଼ଙ୍ଗ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ ସେମାନେ । ଏଠି କେହି କାହାକୁ ଜାଣନ୍ତିନି କିମ୍ବା ଜାଣିବାକୁ ଚେଷ୍ଟା ମଧ୍ୟ କରନ୍ତିନି । ପଡ଼ୋଶୀର ଘରେ ପ୍ରଳୟ ହେଉଥିଲେ ବି ପାଖ ପଡ଼ୋଶୀ ନିର୍ବିକାର । କେହି କାହାର ସୁଖରେ ନାହାଁନ୍ତି କି ଦୁଃଖରେ ନାହାଁନ୍ତି । ଯେଝା ସୁଖରେ ଯେଝା ସୁଖୀ । ମାତ୍ର ଗାଆଁରେ ଏ ସାଇରେ ପତର ପଡ଼ିଲେ ଡ଼ବଡ଼ବ ହୋଇ ବାଜେ ସାରା ଗାଁର ଛାତିରେ । ପରନିନ୍ଦା,ପରଚର୍ଚ୍ଚା, ପରଶ୍ରୀକାତରତା ଓ ରାଜନୈତିକ କଳୁଷରେ ଉବୁଟୁବୁ ହେଉଥାଏ ଗାଁ । କିନ୍ତୁ ସେହି ପରନିନ୍ଦା, ପରଚର୍ଚ୍ଚାରେ ମଲ୍ଲୀଫୁଲିଆ ସକାଳଟା କିଭଳି ଝୁଲିଝୁଲି ଜାମୁକୋଳିଆ ନିଝୁମ ରାତିରେ ପହଞ୍ଚିଥାଏ ଜଣାପଡ଼େନା । ବାପା ବୋଉ ଅନୁଭବ କରୁଥିଲେ ସହରର ପନିପରିବା ଅମୂଲମୂଲ । ଏଠି ସବୁଠାରୁ ଶସ୍ତା ହେଉଛି ସମୟ । ସମୟ କାଟିବାର ଯେତେ ପ୍ରୟାସ କଲେବି ସମୟ ତାର ଅନ୍ତଲ ପେଟରେ ପେଟେଇ ହୋଇ ଲଦି ହୋଇ ପଡୁଥାଏ ଶାଖା ପ୍ରଶାଖା ବିସ୍ତାର କରି ।

ବୋଉ ଥିଲାବେଳେ ତା' ସାଙ୍ଗରେ ଗପସପ, କଳିଗୋଳ, ମାନ , ଅଭିମାନ କରି ସମୟ କଟେଇ ଦେଉଥିଲେ ବାପା । କିନ୍ତୁ ବୋଉର ଦେହାନ୍ତ ପରେ ନିସଙ୍ଗତାରେ ଗୁମ୍‌ସୁମ୍ ହୋଇ ବସୁଥିଲେ । ସୁବ୍ରତ, ବୋହୂ ସୁରଭି, ନାତି ବୁନୁ ଓ ନାତୁଣୀ କୁନି ତାଙ୍କ ଜୀବନରେ ରଙ୍ଗ ଭରି ଦେବାପାଇଁ କରୁଥାନ୍ତି ଅନବଦ୍ୟ ପ୍ରୟାସ । ବାପା ସବୁବେଳେ କହନ୍ତି - ମୁଁ ପୂର୍ବ ଜନ୍ମରେ ତପସ୍ୟା କରିଥିବାରୁ ଏପରି ପୁଅ ବୋହୂ ନାତି, ନାତୁଣୀ ପାଇଛି ।

କିନ୍ତୁ ବାପା ତଥାପି କାହିଁକି ନିରୁଦ୍ଦିଷ୍ଟ ?

ସୁବ୍ରତ ବାପାଙ୍କୁ ଖୋଜିବାକୁ ବାହାରିଲେ । ବାପାଙ୍କ ରୁମ୍‌ର ଆଟାଚ ବାଥରୁମ୍ ତନଖି କଲେ - କାଳେ ମୁଣ୍ଡ ବୁଲାଇ ପଡ଼ିଯାଇଥିବେ । ଅନ୍ୟ ବାଥରୁମ୍ ଦେଖିଲା ପରେ ଘର ପଛଆଡ଼ କିଚିନ ଗାର୍ଡେନ୍ ଓ ଛୋଟ ଫୁଲ ବଗିଚା ଆଡ଼େ ଆଖି ବୁଲାଇ ଆଣିଲେ । ସକାଳୁ ଠାକୁର ପୂଜା ପାଇଁ ଫୁଲ ତୋଳନ୍ତି ବାପା । କାଳେ ଫୁଲ ତୋଳୁ ତୋଳୁ ପଡ଼ିଯାଇଥିବେ । ବାପାଙ୍କୁ କେଉଁଠାରେ ନପାଇ ଘର ନିକଟରେ ଥିବା ରାସ୍ତାର ବଟିଆ ପାନ ଦୋକାନ ଆଡ଼େ ଦ୍ରୁତ ଗତିରେ ଚାଲିଲେ ସୁବ୍ରତ । ସେ ଅଞ୍ଚଳର ନଖଦର୍ପଣ ବଟିଆ । ସିଏ ପାନ ଭାଙ୍ଗୁଥିବା ବେଳେ ତା' ଚାରିପାଖର ସବୁ ଘଟଣା ଅଘଟଣ ଉପରେ ତାର ତୀକ୍ଷ୍ଣ ନଜର ଥାଏ । ବଟିଆ ନିଶ୍ଚୟ ବାପାଙ୍କ ସମ୍ବନ୍ଧରେ କିଛି ଆଶ୍ୱସ୍ତିକର ସଂବାଦ ଦେବ ବୋଲି ସୁବ୍ରତବାବୁଙ୍କର ଦୃଢ଼ ଆଶା ଓ ବିଶ୍ୱାସ । ବଟିଆ କିନ୍ତୁ ମୁହଁ ଶୁଖାଇ କରି କହିଲା-ମୁଁ ତ ଆଜି ମଉସାଙ୍କୁ ଦେଖିନି । ସକାଳ ସାତଟାରୁ ଦୋକାନ ଖୋଲି ବସିଛି । ତା ପୂର୍ବରୁ ଯଦି କ'ଣ ହୋଇଥିବ ମୁଁ କହି ପାରିବି ନାହିଁ । ଆଶଙ୍କାରେ ଜଡ଼ସଡ଼ ସୁବ୍ରତବାବୁ

ଏପଟ ସେପଟ ପଇଁତରା ମାରିବା ଆରମ୍ଭ କଲେ ।

ମଣିଷର ମନଟା ବଡ଼ ଅମାନିଆ । ତାକୁ ମନେଇବାକୁ ଯେତେ ଚେଷ୍ଟା କଲେ ବି ବୋଲ ମାନେନା । ଆଶଙ୍କାମାନଙ୍କୁ ଘଉଡ଼ାଇବାକୁ ଯେତେ ପ୍ରୟାସ କଲେବି ସେମାନେ ତାଙ୍କୁ ଅଣନିଃଶ୍ୱାସୀ କରୁଥିଲେ । ସୁବ୍ରତ ଆଶଙ୍କା କରୁଥିଲେ ହୁଏତ ସକାଳ ସାତଟା ପୂର୍ବରୁ ବାପା କେଉଁଆଡ଼େ ପଳାଇ ଯାଇଛନ୍ତି ।

ସୁବ୍ରତ ତାଙ୍କ ଭାରାକ୍ରାନ୍ତ ମନକୁ ଘୋଷାରି ଘୋଷାରି ଚାଲୁଚାଲୁ ପହଞ୍ଚିଲେ ମୁଖ୍ୟ ରାସ୍ତାରେ । ଉଦ୍‌ଭ୍ରାନ୍ତ୍ ଯୁବକମାନଙ୍କର ଦ୍ରୁତ ମଟର ସାଇକେଲ୍ ଚାଳନା ଓ ଅଟୋ ଡ୍ରାଇଭରମାନଙ୍କ ଉଦ୍ଧତ ଓ ବେପରୱା ଢ଼ଙ୍ଗରେ ଗାଡ଼ି ଚାଳନା ଦେଖି ସେ ଆହୁରି ଆତଙ୍କିତ ହୋଇ ପଡ଼ିଥିଲେ । ଯଦି ଦ୍ରୁତ ଗତିରେ ଚାଲୁଥିବା ଗାଡ଼ି ସଙ୍ଗରେ ବାପାଙ୍କର ଆକ୍ସିଡ଼େଣ୍ଟ ହୋଇଥିବ ତେବେ ହୁଏତ କୌଣସି ସହୃଦୟ ବ୍ୟକ୍ତି ଚିକିତ୍ସା ପାଇଁ ଡ଼ାକ୍ତରଖାନା ନେଇ ଯାଇଥିବେ । ବାପା ତ ମୋବାଇଲ୍ ନମ୍ବର ଆମର ଜାଣିନାହାଁନ୍ତି । ଜଣାଇବେ କିପରି ? ଜାଣିଥିଲେ ବି ଯଦି ବାପା ବେହୋସ ଅବସ୍ଥାରେ ଥିବେ ସେ ସହୃଦୟ ବ୍ୟକ୍ତି କେମିତି ଆମକୁ ସମ୍ବାଦ ଦେବେ ?

ସୁବ୍ରତବାବୁ କିଛିଦିନ ତଳେ ଭାବୁଥିଲେ ନିକଟତମ ବ୍ୟକ୍ତିମାନଙ୍କର ମୋବାଇଲ୍ ନମ୍ବର ଲେଖି ପରିଚୟ ପତ୍ର ଭଳି ବେକରେ ଝୁଲାଇ ଦେଲେ ଏଭଳି ସମସ୍ୟାର ସମାଧାନ ହୋଇପାରନ୍ତା । ଏଥର ସେଇଆ କରିବେ ଭାବି ଭାବି ସେ ଦିଶାହୀନ ରାସ୍ତା ଓ ଅନିଶ୍ଚିତ ଲକ୍ଷ୍ୟରେ ଦ୍ରୁତ ଗତିରେ ଚାଲିଥାନ୍ତି । ହଠାତ୍ ରାସ୍ତାରେ ପୁଳାଏ ରକ୍ତର ଛାପା ଦେଖି ସେ ରହିଗଲେ । ବାପାଙ୍କର ରକ୍ତର ଦାଗ ଏହା ନୁହେଁତ ? ଏ ପ୍ରଶ୍ନ ତାଙ୍କୁ ଆଲୋଡ଼ିତ କରୁଥିଲା । ଏଭଳି ପରିସ୍ଥିତିରେ କେଜାଣି କାହିଁକି ଯାବତୀୟ ଆଶଙ୍କା ମନକୁ ଗ୍ରାସ କରୁଥିଲା ।

ପାଖରେ ସାଇକେଲ ମରାମତି ଦୋକାନ କରିଥିବା ବ୍ୟକ୍ତିଙ୍କୁ ସୁବ୍ରତ ପ୍ରଶ୍ନ କରିଥିଲେ- ଏଠାରେ ରକ୍ତର ଦାଗ କେମିତି ଲାଗିଲା ? ଭାବିଲେ କିଛି ସଠିକ୍ ସଂବାଦ ଏଠାରୁ ମିଳିପାରେ । ସାଇକେଲ୍ ଦୋକାନୀ କହିଲା ଯେ ସକାଳୁ କୁକୁର ସାଙ୍ଗରେ ମଟର ସାଇକେଲ୍ ଧକ୍କା ଲାଗିବାରୁ କୁକୁରର ରକ୍ତ ମେଞ୍ଚାଏ ଲାଗି ଯାଇଛି ରାସ୍ତାରେ ।

ସୁବ୍ରତ ତାପରେ ଘରକୁ ଫେରି ଆସିଲେ । ତାଙ୍କ ବିଷାଦଗ୍ରସ୍ତ ମୁଖ ମଣ୍ଡଳ ଦେଖି ସୁରଭି, ବୁନୁ ଓ କୁନି ଠିକ୍ ବୁଝି ପାରିଥିଲେ ଯେ ସେ କିଛି ସଠିକ୍ ଖବର ପାଇ ପାରିନାହାଁନ୍ତି । ଘରେ ବସି ଫୋନ୍ କଲେ, ଦାଦାଝିଅ ଦୁଇ ଭଉଣୀଙ୍କୁ ପାଖକୁ । ସେମାନେ ବରମୁଣ୍ଡା ଓ କଳ୍ପନା ଏରିଆରେ ରୁହନ୍ତି । କାଳେ ବାପା ସେଠାକୁ ପଳାଇ ଯାଇଥିବେ । ସେମାନେ ମନା କରିବା ପରେ ସୁବ୍ରତଙ୍କ ମନ ଆହୁରି ଭାରାକ୍ରାନ୍ତ ହୋଇଯାଇଥିଲା ।

ଦୁଇ ଭଉଣୀ ଓ ଭିଣୋଇ ଖବର ପାଇ ସଙ୍ଗେ ସଙ୍ଗେ ତାଙ୍କ ଘରକୁ ଆସିଲେ ।

ନିରୁଦ୍ଦିଷ୍ଟ ବାପାଙ୍କ ସଂବାଦ  ଖବରକାଗଜ ଓ ଟିଭିରେ ଦେବାପାଇଁ ସମସ୍ତ ବ୍ୟବସ୍ଥା କରିବାକୁ  ଲାଗି ପଡ଼ିଥାନ୍ତି । ଏହି ସମୟରେ ହଠାତ୍ ବୁନୁ ଆସି କହିଲା ଯେ ଜେଜେଙ୍କ ହାତ ଲେଖା କାଗଜ କ୍ୟାଲେଣ୍ଡରରେ ଲାଗିଚି ।  ସମସ୍ତଙ୍କ ଦୃଷ୍ଟି କାନ୍ଥରେ ଟଙ୍ଗା ହୋଇଥିବା କ୍ୟାଲେଣ୍ଡର ଉପରେ ସ୍ଥିର ହୋଇଗଲା । ବାପାଙ୍କ ହାତଲେଖା କାଗଜଟି ସଯତ୍ନରେ ଷ୍ଟାପଲ୍ ହୋଇଛି କ୍ୟାଲେଣ୍ଡର ସଙ୍ଗରେ । ସୁବ୍ରତ କାଗଜ ଉପରେ ଆଖି ବୁଲାଇନେଲେ । ବାପା ଲେଖିଛନ୍ତି - ବାବୁରେ ମୁଁ ନୟାପଲ୍ଲୀର ଜରାଶ୍ରମକୁ ଯାଉଚି । ସେଠାରେ ଆଜିଠାରୁ ରହିବି । ତୁମେମାନେ ବ୍ୟସ୍ତ ହେବନାହିଁ । ଇତି ବାପା ।

ସେ କାଗଜ ଖଣ୍ଡିକ ସମସ୍ତଙ୍କର ଆଶଙ୍କାକୁ ଦୂରୀଭୂତ କରି ସୁବ୍ରତଙ୍କ ମୁଣ୍ଡରେ ଜମାଟ ବାନ୍ଧୁଥିବା ଆଶଙ୍କାର ବରଫ ପାହାଡ଼ଟିକୁ ତରଳାଇ ଦେଇଥିଲା । ଅନ୍ତତଃ ବାପା ଭଲରେ ଅଛନ୍ତି,ଏ ସମ୍ବାଦ ତାଙ୍କ ଭାରାକ୍ରାନ୍ତ ମସ୍ତିଷ୍କଟିକୁ ହାଲୁକା କରି ଦେଇଥିଲା ।

ଏବେ ଏକ ନୂତନ ସମସ୍ୟା ମୁଣ୍ଡ ଟେକି ଉଠିଲା ସୁବ୍ରତ ଓ ସୁରଭିଙ୍କ ମନ ଉପତ୍ୟକାରେ । ବାପା ଜରାଶ୍ରମରେ ରହିଲେ ସାଇ, ଭାଇ, ବଂଧୁ, ବାନ୍ଧବ କଣ କହିବେ ? ପୁଅ ବୋହୂ ହତାଦର କରିବାକୁ ହରିସାର୍ ଜରାଶ୍ରମରେ ରହିବାକୁ ନିଷ୍ପତ୍ତି ନେଲେ ବୋଲି ଗାଁ ଗଣ୍ଡା ଆଖପାଖ ସାତ ଆଠ ଖଣ୍ଡ ମୌଜାରେ ହୁରି ପଡ଼ିବ । ଗାଁ ଗହଳିର ଲୋକମାନେ ତ ସଜ ମାଛରେ ପୋକ ପକାଇବାରେ ଓସ୍ତାଦ୍ । ଏବେ ସେମାନଙ୍କୁ ସୁଯୋଗ ମିଳିଯିବ ଅପନିନ୍ଦାର ବାଇଦ ବଜାଇବାକୁ । ସୁବ୍ରତ କିଭଳି ଏ ପରିସ୍ଥିତିର ସମ୍ମୁଖୀନ ହେବେ ସେହି ଚିନ୍ତା ତାଙ୍କୁ ମ୍ରିୟମାଣ କରୁଥିଲା । ନେଡ଼ିଗୁଡ଼ କହୁଣୀକୁ ଗଡ଼ିଯିବା ପୂର୍ବରୁ ହରିବାବୁଙ୍କୁ ଜରାଶ୍ରମରୁ ଫେରାଇ ଆଣିବାପାଇଁ ସମସ୍ତେ ମିଶି ସ୍ଥିର କଲେ । ସୁରଭି  କହିଲେ -ମୁଁ କାନ୍ଦି କାନ୍ଦି ବାପାଙ୍କ ଗୋଡ଼ ହାତ ଧରି ତାଙ୍କୁ ନେଇ ଆସିବି ଘରକୁ । ଅପରାହ୍ନ  ଦୁଇଟା ବେଳେ ସମସ୍ତେ ମିଶି ବାହାରିଲେ ଜରାଶ୍ରମ ଅଭିମୁଖେ ।

ଜରାଶ୍ରମର ବିରାଟ ସାଇନ୍‌ବୋର୍ଡ୍ । କମ୍ପାଉଣ୍ଡ ୱାଲ୍ ଭିତରେ ଛୋଟ ଫଳବିଗିଚା - ଆମ୍ବ , ତାଳ, ନାରିକେଳର ମେଳଣ । ପାଖକୁ ଲାଗି ବିଭିନ୍ନ ରଙ୍ଗର ଫୁଲର ବିପଣୀ । ସେମାନେ ସେସବୁକୁ ପାରିହୋଇ ଜରାଶ୍ରମ ଗୃହର ପ୍ରଥମ କୋଠରିରେ ପହଞ୍ଚିଲେ । ଲେଖାଥିଲା ଆନନ୍ଦ ବଜାର । ବୟସ୍କ ଲୋକମାନଙ୍କ ବସିବା ପାଇଁ ଓ ଖାଇବା ପାଇଁ ଉତ୍ତମ ବ୍ୟବସ୍ଥା । ଅଳ୍ପ ତେଲ ମସଲାରେ ଆମିଷ, ନିରାମିଷ ଓ ବିନା ପିଆଜ ରସୁଣରେ ଲୋକଙ୍କ ଚାହିଦା ଅନୁସାରେ ବିଭିନ୍ନ ବ୍ୟଞ୍ଜନ ପ୍ରସ୍ତୁତ ହେଉଅଛି । ତାକୁ ଲାଗି ସ୍ୱାସ୍ଥ୍ୟ ମନ୍ଦିର । ତିନି ଚାରି ଜଣ ତରୁଣୀ ସେବିକା ନର୍ସିଂ ଟ୍ରେନିଂ ନେଲାପରେ କର୍ମରତ । ସମସ୍ତ ବୟସ୍କ ଲୋକଙ୍କର ସ୍ୱାସ୍ଥ୍ୟର ଯତ୍ନ ସେମାନଙ୍କର ଦାୟିତ୍ୱ । ପ୍ରତିଦିନ ସଂଧ୍ୟାରେ ଡ଼ାକ୍ତର ଆସନ୍ତି - ବ୍ଲଡ଼ ପ୍ରେସର୍, ପଲସ୍ ଇତ୍ୟାଦି ଚେକ୍‌ଅପ୍ କରନ୍ତି , ଔଷଧ ଲେଖନ୍ତି । ସମସ୍ତଙ୍କର

ସ୍ୱାସ୍ଥ୍ୟର ଦାୟିତ୍ୱ ନ୍ୟସ୍ତ ତାଙ୍କ ଉପରେ । ବାର୍ଦ୍ଧକ୍ୟଜନିତ ରୋଗର ସ୍ପେସିଆଲିଷ୍ଟ୍ ସେ । ପରବର୍ତ୍ତୀ କୋଠରି ଦୁଇଟିର ନାମ ବିଶ୍ରାମ ମନ୍ଦିର । ଶୋଇବାର ସୁନ୍ଦର ବ୍ୟବସ୍ଥା ଅନ୍ତେବାସୀମାନଙ୍କ ପାଇଁ । ଧୋବ ଫରଫର ବିଛଣା ଚାଦର - ପରିଷ୍କାର ପରିଛନ୍ନ । ତାକୁ ଲାଗିକରି ଜ୍ଞାନମନ୍ଦିର । ସେ କୋଠରିଟି ବୟସ୍କ ବ୍ୟକ୍ତିମାନଙ୍କ ପାଇଁ ପାଠାଗାର । ସବୁ ଖବର କାଗଜ ଓ ବିଭିନ୍ନ ବହିରେ ସଜା ହୋଇଛି କୋଠରିଟି । ପଢ଼ିବାପାଇଁ କମନୀୟ ପରିବେଶ ।

ଶେଷ କୋଠରିଟିକୁ ଅତି ଆବେଗରେ ଅନାଇଲେ ସମସ୍ତେ । ଏପର୍ଯ୍ୟନ୍ତ ହରିବାବୁଙ୍କୁ ଦେଖି ନାହାଁନ୍ତି ସେମାନେ । ନିଶ୍ଚୟ ଏହିଠାରେ ବାପା ଥିବେ ବୋଲି ଭାବି ପରିବାରର ସମସ୍ତେ ଉତ୍କଣ୍ଠାର ସହ ନିରୀକ୍ଷଣ କଲେ ସେ କୋଠରିଟିକୁ । କୋଠରିର ନାଆଁ କ୍ରୀଡ଼ାଙ୍ଗନ । ବୟସ୍କ ଲୋକମାନେ ଦଳ ଦଳ ହୋଇ ଲୁଡୁ, ତାସ୍ ଓ କ୍ୟାରମ୍ ଖେଳିବାରେ ବ୍ୟସ୍ତ ଥିଲେ । ଝରକା ପାଖରେ ବ୍ୟସ୍ତ ବାପାଙ୍କୁ ଦେଖି ଅବାକ ହୋଇଗଲେ ସୁବ୍ରତ । ବାପା ତାସ୍ ଖେଳୁଛନ୍ତି ଅତି ଆନନ୍ଦରେ । ଚିଡ଼ିଆ ରଙ୍ଗ ଥିବାରୁ ଚିଡ଼ିଆ ସାତ ଦ୍ୱାରା ନାଲି ଗୋଲିକୁ ପିଟି ବାପା ସୃଷ୍ଟି କରୁଛନ୍ତି ହଇଚଇ । ଅପୂର୍ବ ଆନନ୍ଦରେ ଆଉ ବିଜୟ ଗର୍ବରେ ଉତୁରି ପଡୁଛନ୍ତି । ହରିବାବୁଙ୍କ ଉଦାତ୍ତ କଣ୍ଠ ସ୍ୱରରେ ପ୍ରତିଧ୍ୱନିତ ହେଉଛି କୋଠରିଟି । ଗାଁରେ ସ୍କୁଲ ଚାକିରି ସରିଗଲା ପରେ ଘର ପାଖ ବରଗଛ ଚାନ୍ଦିନୀ ଉପରେ ବସି ବାପା ଏମିତି ମନଖୁସିରେ ତାସ୍ ଖେଳୁଥିଲେ ବର୍ଷ ବର୍ଷ ଧରି । ତାଙ୍କର ବିଗତ ଯୌବନର ରଙ୍ଗ ପୁଣି ଲହଡ଼ି ଖେଳୁଛି ତାଙ୍କ ତନୁ, ମନ ଓ ହୃଦୟରେ । ଆଜି ସକାଳୁ ଆସି ଏତେ ଶୀଘ୍ର ଏ ପରିବେଶ ସହିତ ପୁଣି ସାମିଲ ହୋଇଯାଇଛନ୍ତି ବାପା ।

ବୋଉ ଗଲାପରେ ବାପାଙ୍କୁ ବହୁତ ଦିନପରେ ଏମିତି ଖୁସି ମିଜାଜରେ ଦେଖି ସୁବ୍ରତ ଆନନ୍ଦିତ ହେଉଥିଲେ । ଝରକାରେ ସୁବ୍ରତଙ୍କୁ ଦେଖି ହରିବାବୁ ବାହାରକୁ ଚାଲି ଆସିଲେ । ବାହାରକୁ ଆସିଲା ବେଳେ ପଡ଼ିଲା ପ୍ରାର୍ଥନା ମନ୍ଦିର । ଧୂପ, ଦୀପ ଓ ଫୁଲର ପବିତ୍ର ଗନ୍ଧରେ ଆମୋଦିତ ପରିବେଶ । ଓଁ ନମଃ ଶିବାୟର ପବିତ୍ରଧ୍ୱନୀ ଭାସି ଆସୁଥିଲା ।

ସମସ୍ତେ ବାପାଙ୍କ ପାଦଛୁଇଁ ତାଙ୍କୁ ପ୍ରଣିପାତ କଲେ । ହରିବାବୁ ଏକ ଆବେଗମୟ ଅନୁଭବରେ ସମସ୍ତଙ୍କୁ କୋଳେଇ ନେଉଥାନ୍ତି । କଥା ହେଉ ହେଉ ସମସ୍ତେ ଆସିଗଲେ ତାଳ ଓ ନାରିକେଳର ଛୋଟ ଉଦ୍ୟାନ ପ୍ରାଙ୍ଗଣକୁ ।

ଆପଣ ଆମକୁ କିଛି ନ କହି କିଭଳି ଚାଲି ଆସିଲେ ବାପା ?- ଲୁହଭରା ଆଖିରେ ଏଥିଲା ସୁବ୍ରତଙ୍କର ପ୍ରଶ୍ନ ।

ଅତ୍ୟନ୍ତ ଭାବାବେଗ କଣ୍ଠରେ ଉତ୍ତର ଦେଲେ ହରିବାବୁ- ମୁଁ ତୁମମାନଙ୍କୁ କହିଥିଲେ ତୁମେମାନେ କଣ ଏଠିକି ଛାଡ଼ି ଥାଆନ୍ତ ମୋତେ ? ମୁଁ ଜାଣେ ତୁମେମାନେ

ମୋତେ କଦାପି ଛାଡ଼ି ନଥାନ୍ତ । ଆଜି ରବିବାର । ତୁମେମାନେ ଡ଼େରିରେ ଉଠ । ସକାଳ ସାତଟାରେ ବଟିଆ ପାନ ଦୋକାନ ଖୋଲେ । ତା' ପୂର୍ବରୁ ସକାଳ ଛଅଟାରେ ଅଟୋ ଧରି ମୁଁ ଚାଲିଆସିଲି ।

-ଆମେ କେତେ ଆଶଙ୍କା ଭିତରେ ମ୍ରିୟମାଣ ହେଲୁ ଚାରି ଘଣ୍ଟା ଧରି ।

ତୁମେମାନେ ବୋଧହୁଏ ମୋ ଚିଠିଟି ଡ଼େରିଲେ ଦେଖିଲ ବୋଲି କହି ଠୋ ଠୋ ହୋଇ ହସି ଉଠିଲେ ହରିବାବୁ । ମୁଁ ଜାଣିଛି, ତୁମେମାନେ ମୋତେ ଫେରାଇ ନେବାକୁ ଆସିଛ । ବାବୁ, ମୁଁ କିନ୍ତୁ ଫେରିବିନି । ହରିବାବୁଙ୍କ କଣ୍ଠରେ ଅଭୁତପୂର୍ବ ଦୃଢ଼ତା ।

ଦୀର୍ଘ ସାତ ବର୍ଷ ପରେ ହରିବାବୁ ଆନନ୍ଦ ଓ ଆବେଗରେ କୁରୁଳି ଉଠୁଥିବାର ଦୃଶ୍ୟ ପ୍ରଥମେ ଦେଖିଲେ ସମସ୍ତେ । ତାଙ୍କ କଣ୍ଠ ସ୍ୱରରେ ଥିଲା ଯୁବସୁଲଭ ଚପଳତା, ଆଖିରୁ ଉତୁରି ପଡୁଥିଲା ନୂଆ ଜୀବନର ସ୍ୱପ୍ନ । ସୁବ୍ରତ ଅଫିସ୍‌କୁ, ସୁରଭି କଲେଜକୁ ଆଉ ପିଲାମାନେ ସ୍କୁଲକୁ ଗଲାପରେ ବାପା କିଭଳି ନିଃସଙ୍ଗ ଜୀବନରେ ଅଣନିଃଶ୍ୱାସୀ ହୋଇଯାଉଥିବେ ସେକଥା ହୃଦୟଙ୍ଗମ କରୁଥିଲେ ସୁବ୍ରତ । ବାପା ଏଠି ଏତେ ଖୁସି ଥିବାର ଦେଖି ତାଙ୍କୁ ଘରକୁ ଫେରାଇ ନେବାକୁ ଆଉ କେହି ଅଳି-ଅର୍ଦଳି କରି ନ ଥିଲେ । ବାପାଙ୍କୁ ଘରକୁ ଫେରାଇ ନେବାର ଇଚ୍ଛାଗୁଡ଼ିକ ମଉଳି ଯାଇଥିଲା । ସୁବ୍ରତ ଭାବୁଥିଲେ ବାପାଙ୍କ ଶାନ୍ତି ଓ ଆନନ୍ଦ ପାଇଁ ସେ ଲୋକନିନ୍ଦାର ହଳାହଳକୁ ନୀଳକଣ୍ଠଙ୍କ ଭଳି ପାନ କରିବାକୁ ପ୍ରସ୍ତୁତ ।

ପିଲାମାନେ ଘରକୁ ଫେରିଲା ବେଳକୁ ହରିବାବୁ ଚିହ୍ନାଇ ଦେଇଥିଲେ ଜରାଶ୍ରମର ପ୍ରତିଷ୍ଠାତା ସାମନ୍ତରାୟବାବୁଙ୍କୁ । ସାମନ୍ତରାୟବାବୁଙ୍କୁ ସୁବ୍ରତ ଅନୁରୋଧ କଲେ - ଆପଣ ଏ ଅନୁଷ୍ଠାନର ନାମ ଜରାଶ୍ରମ ନ କରି ଏହାକୁ 'ଆନନ୍ଦାଶ୍ରମ' କଲେ ବହୁତ ଭଲ ହୁଅନ୍ତା । ସମସ୍ତେ ଏକା ସଙ୍ଗରେ ହସି ଉଠିଲେ । ସେ ହସରେ ଥିଲା ସୁବ୍ରତବାବୁଙ୍କ ପ୍ରସ୍ତାବ ପ୍ରତି ସର୍ବସମ୍ମତି ।



*(ସମାରୋହ ପତ୍ରିକାର ମାର୍ଚ୍ଚ ୨୦୧୯ ସଂଖ୍ୟାରେ ପ୍ରକାଶିତ)*

# ଅଦିନ ବସନ୍ତ

ଆଜି ରବିବାର । ଶୁଚିସ୍ମିତା ତରତର ହୋଇ ବାହାରୁଥିଲା ରବିବାର ଦିନ ମାର୍କେଟକୁ ସପ୍ତାହକ ପାଇଁ ଦରକାରୀ ପରିବା କିଣିବା ପାଇଁ । ପିଅନମାନଙ୍କ ଉପରେ ତାର ଆସ୍ଥା ପାଏନି । ସେମାନେ ଭଲ ପରିବା ବାଛି କରି ଆଣନ୍ତିନି । ଚଢ଼ା ଦରରେ ପରିବା କିଣନ୍ତି ।

ସେ ନୂଆ ହୋଇ ଢେଙ୍କାନାଳ ଟାଉନ୍‌କୁ ଆସିଛି । ତାର ମିଷ୍ଟର ତହସିଲଦାର ହୋଇ ଆସିଛନ୍ତି ପନ୍ଦର ଦିନ ହେବ । ପରିବା ହାଟରେ ପରିବା କିଣିବାର ଆନନ୍ଦ ବଡ଼ ନିଆରା । ସଜ ଡହଡହ ସବୁଜ ଛନ୍‌ଛନ୍ ପରିବା ଦେଖିଲେ ତାର ମନ ହୁଏ ସବୁଯାକ ନେଇ ତାର ଘରେ ସାଇତି ରଖିବ ।

ଦୂରରେ ଦେଖିଲା ହାଟର ଏକ କୋଣରେ ସଜ ଦେଶୀକାଙ୍କଡ଼ ଧରି ଗାଁର ଲୋକଟିଏ ଖୋଲି ଦେଇଛି ପସରା । ତାକୁ କିଣିବାକୁ ସହରୀ ଲୋକଙ୍କର ଭିତରେ ଠେଲାପେଲା । ପରିବା ଭିତରେ କାଙ୍କଡ଼ ତାର ଅତି ପ୍ରିୟ । କ୍ଷୀର ପକାଇ ରସୁଣ ଓ ଅଦା ଦେଇ ବଘାରି ଦେଲେ ସ୍ୱାମୀ ଅୟସ୍କାନ୍ତ ତାକୁ ଅତି ଆଗ୍ରହରେ ଖାଇଚାଲନ୍ତି । ମନେ ପକାନ୍ତି ତାଙ୍କ ମା ହାତରେ କାଙ୍କଡ଼ ତରକାରୀ ।

ଶୁଚି ତୀବ୍ର ବେଗରେ ଧସେଇ ପଶିଲା ଭିଡ଼ ଭିତରକୁ । ଚହଲି ଯାଇଥିଲେ ପାଖରେ ଥିବା ଜଣେ ଭଦ୍ରବ୍ୟକ୍ତି । ସରି ବୋଲି କହି ଦୁଃଖ ପ୍ରକାଶ କରିବାକୁ ଉପକ୍ରମ କଲାବେଳକୁ ସେ ଦେଖିଲା ସେ ଭଦ୍ରବ୍ୟକ୍ତି ଆଉ କେହି ନୁହଁନ୍ତି , ସୁଶାନ୍ତ ରାଉତରାୟ । ବାଣୀ ବିହାରର ପୂର୍ବତନ ସହପାଠୀ । ଉଭୟ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଛାତ୍ର । ଦୀର୍ଘ ପନ୍ଦର ବର୍ଷ ପରେ ତାକୁ ଶୁଚି ଦେଖି ହୋଇଥିଲା ନିର୍ବାକ ଆଉ ନିଷ୍ପନ୍ଦ ।

ଯନ୍ତ୍ରଣା ଦାୟକ ନୀରବତାର ଇଲାକାରୁ ବାହାରି ଆସି ସ୍ୱଭାବସୁଲଭ ଢ଼ଙ୍ଗରେ ପ୍ରଗଲ୍ଭ ସୁଶାନ୍ତ ପଚାରିଥିଲା -ଶୁଚି ତୁମେ ଏଠି ? ତମ ମିଷ୍ଟର କ'ଣ ଏଠି ଅଛନ୍ତି ? କେଉଁଠି ରହୁଛ ? କେତେଦିନ ହେଲା ଆସିଲଣି ?

ଏକାବେଳକେ ଏତେ ଗୁଡ଼େ ପ୍ରଶ୍ନ ସୁଶାନ୍ତ ଅଜାଡ଼ି ଦେଇଥିଲା ଶୁଚିସ୍ମିତା ଉପରେ ।

ଶୁଚି ସଂକ୍ଷେପରେ ଉତ୍ତର ଦେଇଥିଲା- ତହସିଲଦାର କ୍ୱାର୍ଟରରେ ରହୁଛି, ପନ୍ଦର ଦିନ ହେବ ।

ତାର ଉତ୍ତର ଶେଷ ହେବା ପୂର୍ବରୁ ସୁଶାନ୍ତ କହିଲା- ମୁଁ ତ ଦେଖିଛି ସେ ଘର । ଆସନ୍ତା ରବିବାର ଦିନ ଠିକ୍ ଘଣ୍ଟିଟା ବେଳେ ମୁଁ ତୁମ ଘରକୁ ଯିବି । ହଁ , ଖାଇବାକୁ କିଛି କରିବନି । ମୁଁ ଢ଼େଙ୍କାନାଳର ଗରମ୍ ଗରମ୍ ବରା ନେଇଯିବି । ତମେ ଖାଲି ପିଆଜ କାଟି ରଖିଥିବ । ମନଭରି ଗପିବା ।

ଶୁଚିର ସମ୍ମତି ଓ ଉତ୍ତରକୁ ଅପେକ୍ଷା ନ କରି ଜରୁରୀ କାମ ଥିବାରୁ ସୁଶାନ୍ତ ତାର ନୂଆ କାର୍‌ରେ ଦ୍ରୁତ ଗତିରେ ଚାଲିଗଲା ।

ଚାଲିଗଲା ସୁଶାନ୍ତ - କିନ୍ତୁ ଚହଲାଇଦେଲା ଶୁଚିର ମନ ଓ ହୃଦୟକୁ । ଛାଡ଼ି ଦେଇଥିଲା ପରିବା ହାଟରେ ସ୍ମୃତିର ଅସୁମାରି ପଦଚିହ୍ନ । ପରିବା କିଣି କ୍ୱାର୍ଟରକୁ ଫେରିଥିଲା ଶୁଚି ।

ମନର କାନଭାସ୍‌ରେ ଆଙ୍କି ହୋଇଯାଉଥିଲା ଅତୀତର ଚିତ୍ର । ସେ ଥାଏ ପଞ୍ଚମ ବର୍ଷ ଅର୍ଥନୀତିର ଛାତ୍ରୀ, ଆଉ ସୁଶାନ୍ତ ପଞ୍ଚମ ବର୍ଷ ପଲିଟିକାଲ ସାଇନ୍ସର ଛାତ୍ର । ବାଣୀବିହାର ମଇଦାନରେ ଗୁମୁରି ଉଠୁଥାଏ ନିର୍ବାଚନର ଝଲକ । ପ୍ରେସିଡ଼େଣ୍ଟ ଓ ଜେନେରାଲ ସେକ୍ରେଟାରୀ ପ୍ରାର୍ଥୀପାଇଁ ଜମି ଉଠୁଥିଲା ନିର୍ବାଚନ ରଣାଙ୍ଗନ । ସେଦିନ ସନ୍ଧ୍ୟାରେ ସୁଶାନ୍ତ ଲେଡ଼ିଜ ହଷ୍ଟେଲ୍‌କୁ ଆସିଥିଲା ନିର୍ବାଚନ ପ୍ରଚାର ଉଦ୍ଦେଶ୍ୟରେ । ସେ ଥିଲା ଜେନେରାଲ ସେକ୍ରେଟାରୀ ପାଇଁ ପ୍ରାର୍ଥୀ । ତାକୁ ସପୋର୍ଟ କରିବା ପାଇଁ ହଷ୍ଟେଲ ବାରଣ୍ଡାରେ ଛାତ୍ରୀମାନଙ୍କୁ କରିଥିଲା ବିନମ୍ର ନିବେଦନ । କେଜାଣି କାହିଁକି ଶୁଚିସ୍ମିତା ସୁଶାନ୍ତର ବ୍ୟକ୍ତିତ୍ୱ ଓ ତାର ବକ୍ତବ୍ୟର ଶୈଳୀରେ ପ୍ରଭାବିତ ହୋଇ ଯାଇଥିଲା । ସୁଶାନ୍ତର ନିର୍ବାଚନ ପ୍ରଚାର ପାଇଁ ଲେଡ଼ିଜମାନଙ୍କର ଯେଉଁ କୋର୍ ଟିମ୍ ଗଠନ ହୋଇଥିଲା ଶୁଚି ଥିଲା ତାର ସକ୍ରୀୟ ସଦସ୍ୟା । ହ୍ୱାଟ ଆଇ ଷ୍ଟାଣ୍ଡ ଫର ମିଟିଙ୍ଗରେ ସୁଶାନ୍ତ ଉପସ୍ଥାପିତ କରିଥିବା ଏକ ବଳିଷ୍ଠ ଭାବଗର୍ଭକ ମର୍ମସ୍ପର୍ଶୀ ଭାଷଣରେ ସେ କହିଥିଲା - ମୁଁ ନିର୍ବାଚିତ ହେଲେ ବଡ଼ଭାଇମାନଙ୍କୁ ସେଇ ସମ୍ମାନ ଦେବି ଯେଉଁ ସମ୍ମାନ ଜଗନ୍ନାଥ ବଳଭଦ୍ରଙ୍କୁ ଦେଇଥିଲେ । ମୋର ସାନଭାଇମାନଙ୍କୁ ସେହି ଭଲପାଇବା ଦେବି. ଯାହା ବଳଭଦ୍ର ଜଗନ୍ନାଥଙ୍କୁ ଦେଇଥିଲେ । ସହପାଠୀମାନଙ୍କୁ ସେହି ସ୍ନେହ ଦେବି ଯାହା କୃଷ୍ଣ ସୁଦାମାଙ୍କୁ ଦେଇଥିଲେ । ଭଉଣୀମାନଙ୍କୁ ସେହି ମମତା ଦେବି ଯାହା ଜଗନ୍ନାଥ ସୁଭଦ୍ରାଙ୍କୁ ଦେଇଥିଲେ ।

ସୁଶାନ୍ତର ଏହି ସଂଳାପ ଏଭଳି ପ୍ରଭାବଶାଳୀ ଥିଲା ଯେ ସମସ୍ତେ ସେଥିରେ

ପ୍ରଭାବିତ ହୋଇଥିଲେ ଏବଂ ସୁଶାନ୍ତ ଜେନେରାଲ ସେକ୍ରେଟାରୀ ଭାବରେ ନିର୍ବାଚିତ ହୋଇଥିଲା ।

ସୁଶାନ୍ତ ତାର ବିଜୟ ପାଇଁ କୃତଜ୍ଞତାର ସୁମନ ଅଜାଡ଼ି ଦେଇଥିଲା ଶୁଚି ଉପରେ, ତାର ଅଧ୍ୟବସାୟ ଓ ନିଷ୍ଠା ପାଇଁ । ଛାତ୍ରୀମହଲର ଭୋଟ ଯୋଗାଡ଼ କରିବାରେ ଶୁଚିର ଭୂମିକା ଥିଲା ଅତୁଳନୀୟ । ନିର୍ବାଚନ ଋତୁରେ ସେ ଦୁହିଙ୍କ ଭିତରେ ଅଙ୍କୁରୋଦ୍‌ଗମ ହେଲା ନିବିଡ଼ ସଂପର୍କର । ସଂପର୍କରୁ ଆତ୍ମୀୟତା ବଢ଼ିଲା ଆଉ ଶେଷରେ ସେ ଦୁହେଁ ଏତେ ନିକଟତର ହୋଇଗଲେ ଯେ ଜଣେ ଅନ୍ୟଜଣଙ୍କୁ ନଦେଖିଲେ ଅଣନିଃଶ୍ୱାସୀ ଅନୁଭବ କରୁଥିଲେ । ପ୍ରତି ରବିବାର କରୁଥାନ୍ତି ପ୍ରୋଗ୍ରାମ କେବେ ପୁରୀ, ତ କେବେ କୋଣାର୍କ କେବେ ତାରାତାରିଣୀ ତ କେବେ ତପ୍ତପାଣି । ଅନେକ ଆନନ୍ଦ, ନିରାନନ୍ଦ, ସ୍ୱପ୍ନ ଓ ଆଶଙ୍କାର ଚଲାପଥରେ ଚାଲୁ ଚାଲୁ ସରିଯାଇଥିଲା ବାଣୀବିହାରର ହସନ୍ତ ଓ ସ୍ୱପ୍ନିଳ ଜୀବନ । ସୁଶାନ୍ତ ନିମାପଡ଼ାର ଏକ ଘରୋଇ ମହାବିଦ୍ୟାଳୟରେ ରାଜନୀତି ବିଜ୍ଞାନ ଅଧ୍ୟାପକ ଓ ଶୁଚି ତାଙ୍କ ସମୃଦ୍ଧ ଓ ସମ୍ଭ୍ରାନ୍ତ ପରିବାରର ରଙ୍ଗିନ ଇଲାକାରେ ଏକ ଉଡ଼ନ୍ତା ପକ୍ଷୀ ।

ତାଙ୍କ ପରିବାରରେ ଝଡ଼ ବହିଗଲା ଯେତେବେଳେ ଶୁଚି ଜିଦ୍ ଧରିଲା ସୁଶାନ୍ତ ସହ ବିବାହ ପାଇଁ । ବାପା, ମା, ଭାଇ ଭଉଣୀ ସମସ୍ତେ ସ୍ତମ୍ଭୀଭୂତ ଶୁଚିର ବିଦ୍ରୋହର ପଦଧ୍ୱନିରେ । ସେ ସମୟରେ ଆସିଲା ଅୟସ୍କାନ୍ତର ପ୍ରସ୍ତାବ । ସୁନ୍ଦର, ଶିକ୍ଷିତ ଓ ଓଡ଼ିଶା ସରକାରଙ୍କ ପଦସ୍ଥ ଅଫିସର୍ । ଅୟସ୍କାନ୍ତ ସପକ୍ଷରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରି ସୁଶାନ୍ତର ପରିବାର ଓ ଚାକିରି ଉପରେ ବାଢ଼ି ଚାଲିଲେ ବଡ଼ ବଡ଼ ଅଭିଯୋଗ ଫର୍ଦ୍ଦ । ଉଡ଼ନ୍ତା ପକ୍ଷୀଙ୍କୁ କରିଦିଆଗଲା ସୁନାର ପିଞ୍ଜରା ମଧ୍ୟରେ ଆବଦ୍ଧ । ବାପା ମାଙ୍କର କେତେ ପୂଜା, ଅର୍ଚ୍ଚନା, କେତେ ଜ୍ୟୋତିଷ ଓ ବାବାମାନଙ୍କ ସହ ଆଲୋଚନା, ପର୍ଯ୍ୟାଲୋଚନାରେ କ'ଣ ହେଲା କେଜାଣି, ଉଡ଼ନ୍ତା ପକ୍ଷୀଟି ପାଲଟି ଯାଇଥିଲା ପୋଷା ଶୁଆରେ । ଅୟସ୍କାନ୍ତ ସହିତ ଅନୁଷ୍ଠିତ ହେଲା ବିବାହପର୍ବ ଖୁବ୍ ଜାକଜମକରେ, ମହା ସମାରୋହରେ । ଅର୍ନ୍ତବେଦନାରେ ଗୁମୁରି ଉଠିଥିବା ଶୁଆଟି ହସିବାକୁ ଆରମ୍ଭ କଲା ନୂଆ ପରିବେଶରେ, ନୂଆ ମଣିଷମାନଙ୍କ ମେଳରେ । ପୁରୁଣା ସ୍ମୃତିର ବାକ୍ସଟିକୁ ଚାବି ପକାଇ ଜଉମୁଦ କରି ସେ ଫିଙ୍ଗିଦେଲା ଦୟାନଦୀର ଅତଳ ଗର୍ଭରେ । ତା ସଂଗେ ଚାବିଟି ମଧ୍ୟ ।

ଏତେଦିନ ପରେ ଆଜି ସେ ବାକ୍ସଟି ଖୋଲିଯାଇଛି । ତା' ଭିତରେ ଖୁନ୍ଦି ହୋଇଥିବା ସ୍ମୃତିଗୁଡ଼ିକ ପୁଣି ରଙ୍ଗିନ୍ ଓ ରୋମାଞ୍ଚକର ହୋଇ ତାର ଆଖି ଆଗରେ ଉଦ୍‌ଭାସିତ

ହୋଉଛି । ରବିବାର କିଭଳି ଶୀଘ୍ର ପାଖେଇ ଆସିବ ସେଥିପାଇଁ ତାର ମନ ଭିତରେ କେମିତି ଏକ ବ୍ୟସ୍ତତା ପଇଁତରା ମାରୁଛି । ପ୍ରତିଦିନଟାର ପରିଧି ଅଧିକରୁ ଅଧିକ ପରିବ୍ୟାପ୍ତ ହେଲାଭଳି ତାକୁ ଜଣାପଡୁଛି ।

ଆସିଯାଇଛି ବହୁ ପ୍ରତୀକ୍ଷିତ ରବିବାରର ସକାଳ । ଅୟସ୍କାନ୍ତ ବାବୁ ଜରୁରୀ କାର୍ଯ୍ୟରେ ସକାଳୁ ସକାଳୁ ଭୁବନେଶ୍ୱର ବାହାରି ଯାଇଛନ୍ତି । ଗ୍ରୀଷ୍ମଛୁଟି ଥିବାରୁ ପିଲାମାନେ ଜିଦ୍ ଧରି ଦୁଇ ଦିନ ହେବ ମାମୁଘର କଟକକୁ ଯାଇଛନ୍ତି ଅଜା, ଆଈଙ୍କ ସହ ମଜା, ମଜଲିସ୍ କରିବାକୁ । ରବିବାର ଦିନ କାମ କରୁଥିବା ପିଅନ୍‌ର ସ୍ତ୍ରୀ ହଠାତ୍ ଅସୁସ୍ଥ ହୋଇ ପଡିଥିବାରୁ ସେ କାକୁତିମିନତି ହୋଇ  ଦିନକ ପାଇଁ ଛୁଟି ନେଇ ସକାଳୁ ସକାଳୁ ବାହାରି ଯାଇଛି । ଏତେ ବଡ଼ କ୍ୱାର୍ଟରେ ଶୁଚି ଏକା । ପରିବେଶ ଓ ପରିସ୍ଥିତି ତାକୁ କରିଦେଇଛି ଅଧିକ ସ୍ୱପ୍ନାବିଷ୍ଟ ଓ ରୋମାଞ୍ଚିତ । ତାର ମନଟା ଫ୍ରକ୍ ପିନ୍ଧି ପ୍ରଜାପତିକୁ ଧରିବା ପାଇଁ ହେଉଛି ଆନମନା । ସେ ଭୁଲିଯାଇଛି ସେ କାହାର ସ୍ତ୍ରୀ, କାହାର ବୋହୂ, କାହାର ମାଆ । ତାର ଆଖି ଆଗରେ କେବଳ ନାଚି ଉଠୁଛି ସୁଶାନ୍ତର ଆସିବାର ଦୃଶ୍ୟପଟ, ତାର ମନଖୋଲା ହସ, ତାର ପ୍ରଗଳ୍ଭ ବାର୍ତ୍ତାଳାପ । ସୁଶାନ୍ତର ସବୁଜ ରଂଗକୁ ଭାରି ପସନ୍ଦ । ସକାଳୁ ସକାଳୁ ବାଛି ବାଛି ସବୁଜ ରଂଗର ବନାରସୀ ପାଟକୁ ପ୍ରସ୍ତୁତ କରିରଖିଛି । ସବୁଜ ରଂଗର ବ୍ଲାଉଜକୁ ଟାଙ୍ଗି ଦେଇଛି ଆଲଣାରେ । ନେଲ୍‌ପଲିସ୍ ଆଣି ନଖଗୁଡିକରେ ସବୁଜ ରଂଗ ମାରି ତାକୁ ରଙ୍ଗିନ କରିଦେଇଛି । ଶୁଚିକୁ ସ୍ୱପ୍ନର ବୋଇତରେ ଭସେଇ ଭସେଇ ଆସିଛି ଅପରାହ୍ନ । ଯାହା ରୋଷେଇ କରିଥିଲା ତାକୁ ଖାଇଦେଇ ଖଟ ଉପରେ ଗଡପଡ଼ ହେଉଥିଲା ସେ । ନିଦ ଆସୁଚି, ନିଦ ଆସୁନି । ଦର ପାଚିଲା ଆଖିରେ କଞ୍ଚା କଞ୍ଚା ଇଛାଗୁଡ଼ାକ ଲହଡ଼ି ଭାଙ୍ଗୁଛନ୍ତି । ଯୌବନରେ ସୁଶାନ୍ତ ସହିତ ହଜିଯିବା ପାଇଁ ଇଛାକୁ ସେ ବିବେକ ଓ ସମାଜର ମେଘନାଦ ପାଚେରୀ ଭିତରେ ବନ୍ଦ କରି ରଖିଥିଲା ବିବାହକୁ ପ୍ରତୀକ୍ଷା କରି ।

ଅୟସ୍କାନ୍ତ କୁହନ୍ତି – ସଂଯମର ଅନ୍ୟନାମ ଜୀବନ । ରେଖାର ସଂଯମରେ ଚିତ୍ର । ଶକ୍ତିର ସଂଯମରେ ଶୌର୍ଯ୍ୟ । ଅଂଗ ଚାଳନାର ସଂଯମରେ ନୃତ୍ୟ । କାମନାର ସଂଯମରେ ପ୍ରେମ ।

ଆଜି ସେ ନୀତି ନିୟମର ମେଘନାଦ ପାଚେରି  ଭୁଶୁଡ଼ି ପଡୁଛି – ସେ ହୋଇଛି ମୁକ୍ତ ଆକାଶର ବିହଙ୍ଗ । ମନଇଛାରେ ଆକାଶରେ ଉଡ଼ିବ – ମନ ଭରି ପିଇବ ବର୍ଷାର କାଚକେନ୍ଦୁ ଜଳ ।

ଶୁଚି ଭାବୁଥିଲା- ଜୀବନ ସ୍ୱଛ ଓ ସୁନ୍ଦର । ଜ୍ୟୋତ୍ସ୍ନା ଶିଶିର ବିନ୍ଦୁରେ ପ୍ରତିଫଳିତ

ହେଲେ ଯେତେ ରମଣୀୟ, କମନୀୟ ଦେଖାଯାଏ ନର୍ଦ୍ଦମାରେ ପଡ଼ିଲେ ମଧ୍ୟ ସେତିକି ମନୋହର ଦିଶେ । ପୁଣ୍ୟ ମଧ୍ୟରେ ଜୀବନ ସୁନ୍ଦର ହୁଏ । ପାପ ମଧ୍ୟରେ ମଧ୍ୟ ଜୀବନ ସ୍ୱଚ୍ଛ ଓ ସୁନ୍ଦର ଦେଖାଯାଏ । ଦେହର କ୍ଷୁଧା ମଧ୍ୟରେ ଜୀବନର ଅନାବିଳ, ପବିତ୍ର ଉପଲବ୍ଧି ବିଦ୍ୟମାନ । ଦେହବିନା ପ୍ରେମର କଳ୍ପନା ସମ୍ଭବ ନୁହେଁ । କୁସୁମର ସୁନ୍ଦର ପାଖୁଡ଼ାକୁ ବାଦଦେଇ ସୁରଭିର କଳ୍ପନା କରାଯାଇ ପାରେନା । ମାତୃତ୍ୱର କ୍ଷୁଧା ତାର ପ୍ରସମିତ । କିନ୍ତୁ ମନର ତୃଷା ଆଉ ନାରୀତ୍ୱର କ୍ଷୁଧା ଆଜି ବି ଅଦମନୀୟ, ଅପ୍ରତିହତ ଓ ଅପରାଜେୟ ।

ଶୁଚି ଅନୁଭବ କରୁଥିଲା- ସୁଶାନ୍ତ ଏକ ରକ୍ତମାଂସଧାରୀ ଦେହ ନୁହେଁ, ସିଏ ଗୋଟିଏ ଶିହରଣଭରା ପୁଲକ, ଅନିର୍ବଚନୀୟ ଆନନ୍ଦର ଅନୁଭବ, ଅନେକ ରଙ୍ଗିନ ସ୍ୱପ୍ନର ମୂଳକ ଯାହାକୁ ଅୟସ୍କାନ୍ତଙ୍କ ଭିତରେ ଖୋଜି ଖୋଜି ସେ ଆଜି ପର୍ଯ୍ୟନ୍ତ ପାଇନି । ସୁଶାନ୍ତର ହସଟି ଏତେ ହୃଦୟସ୍ପର୍ଶୀ ତାହା ଦମକାଏ ତାଜା ହାୱା ଦେହକୁ, ମନକୁ ଛୁଇଁଲା ପରି ସମ୍ମୋହିତ କରିଦିଏ । ବୟସ ତାଙ୍କର ଚାଳିଶ କେବେଠୁଁ ଟପିଲାଣି, ତଥାପି ମଣିଷର ମନଟା ବେଳେ ବେଳେ ଅମାନିଆଁ, ଅବୋଲକରା ହୋଇଯାଏ । ସମାଜ ଆଉ ବିବେକର ବାଡ଼ବତା ମାନେନା । ମନର ଉତ୍ତାଳ ଲହରି ବିବେକର ବାଲିବନ୍ଧକୁ ଭାଙ୍ଗିଦିଏ ।

ତିନିଟା ବେଳକୁ ସବୁଜ ରଂଗର ଶାଢ଼ୀ, ବ୍ଲାଉଜ ପିନ୍ଧି ନିଜକୁ ପ୍ରସ୍ତୁତ କରିନେଲା ଶୁଚି । ସେ ଆଜି ଯେମିତି ପ୍ରତୀକ୍ଷମାଣା ରାଧା । କୃଷ୍ଣଙ୍କ ବଂଶୀର ଅପ୍ରତିହତ ସ୍ୱର କରୁଛି ତାକୁ ପ୍ରେମ ପାଗଳିନୀ । ସୁଶାନ୍ତ ଆସିଲେ ଘଣ୍ଟାଏ କି ଦୁଇ ଘଣ୍ଟା ରହିବେ । ସେ ସମୟକୁ ସେ ସଂପୂର୍ଣ୍ଣ ଉପଯୋଗ କରିବା ପାଇଁ ଅନ୍ୟ ଛୋଟିଆ କାମଗୁଡ଼ିକୁ ସାରିବାକୁ ଲାଗିଲା ।

ଦର୍ପଣ ଆଗରେ ଠିଆ ହେଲା । ବୟସର ଛାପ ତାର ଯୌବନର ରଂଗକୁ ମଳିନ କରି ଦେଇଛି, କିନ୍ତୁ ଯୌବନର ଉଦ୍ଦାମତାକୁ ନିଃଶେଷ କରି ପାରିନି । ଦରଲିଭା କାମନାର ଅଗ୍ନି କେଜାଣି କିଭଳି ହୁତୁହୁତୁ ହୋଇ ଜଳି ଉଠିଛି ଦେହରେ, ମନରେ । ସେ ଆଜି ହଜିଯିବ ସୁଶାନ୍ତର ଗଭୀର ଆଶ୍ଳେଷ ମଧ୍ୟରେ । ଦୁଇଘଣ୍ଟା ପାଇଁ ମନର ବିଜୟ ବୈଜୟନ୍ତୀ ଉଡାଇବ ବିବେକର କଂକ୍ରିଟ୍ ଛାତି ଉପରେ ଠିଆହୋଇ । ପ୍ରଣୟର ପାହାଡ଼ ଉପରେ ଠିଆ ହୋଇ ପ୍ରେମର ଅତୁଳନୀୟ ସଂଗୀତ ଗାଇବ । ପ୍ରଶମିତ କରିବ ତାର ଅତୃପ୍ତ ଇଚ୍ଛା ଓ କାମନାମାନଙ୍କୁ ପ୍ରଣୟର ସୁଗନ୍ଧରେ ଆମୋଦିତ କରି । କାନ୍ଥଘଣ୍ଟାକୁ ଅନାଇଲା ଶୁଚି । ଚାରିଟା ବାଜିବାକୁ ଯାଉଛି । ସୁଶାନ୍ତ ଭାରି ସମୟାନୁବର୍ତ୍ତୀ । ଯେତେବେଳେ ଯେଉଁଠାରେ ଦେଖା ହେବାକୁ ଥିବ, ସେ ଠିକ୍ ସମୟରେ ପହଞ୍ଚିଯାଏ, ଶୁଚିର ସବୁବେଳେ ବିଳମ୍ବ-ଅଳସେଇଟା - ମନକୁ ମନ ହସୁଥିଲା ସିଏ ।

ଗେଟ୍ ଖୋଲା ହେବାର ଶବ୍ଦ । ଶୁଚି ଦୌଡ଼ିଗଲା ଝରକା ପାଖକୁ । ହଁ , ଶୁଚିର ସବୁବେଳେ ବିଳମ୍ବ । ଅଳସେଇଟା । ମନକୁ ମନ ହସୁଥିଲା ସେ । ସତକୁ ସତ ମିନିଟ କଣ୍ଟା ୧୨ ପାଖରେ ପହଞ୍ଚିଲା ବେଳକୁ ଶୁଭିଲା ଗେଟ୍ ଖୋଲାହେବାର ଶବ୍ଦ । ହଁ, ସୁଶାନ୍ତ ଆସିଛି । ହାତରେ ତାର ବରାର ଗୋଟାଏ ବଡ଼ ପ୍ୟାକେଟ୍ । ଦୌଡ଼ିଗଲା ଡ୍ରଇଁ ରୁମ୍‌ର କବାଟକୁ ଖୋଲିବା ପାଇଁ । ସରକାରୀ କ୍ୱାର୍ଟର । ପୁରୁଣା ପିଆଶାଳ କାଠର କବାଟ । ଜଞ୍ଜିର ଲାଗିଛି କବାଟକୁ ବନ୍ଦ କରିବା ପାଇଁ । ସୁଶାନ୍ତ ଡ୍ରଇଁ ରୁମର କଲିଂ ବେଲ୍‌କୁ ଚିପୁଛି ବାରମ୍ବାର ତାର ସ୍ୱଭାବ ସୁଲଭ ଚପଳତାରେ । ସେ ଯେମିତି ଭାବପ୍ରବଣ ହୋଇଛି ଏହି ବହୁ ପ୍ରତୀକ୍ଷିତ ମୁହୂର୍ତ୍ତଗୁଡ଼ିକୁ ପ୍ରାଣଭରି ଉପଭୋଗ କରିବା ପାଇଁ । ବରାର ବାସ୍ନା ମହମହ ହୋଇ ପୁରୁଣା କବାଟର ଫାଙ୍କଦେଇ ଧସେଇ ପଶିଆସୁଛି ।

ଶୁଚିର ହାତଟି ଜଞ୍ଜିରଟିକୁ ଖୋଲିବାକୁ ଯାଉଛି, କିନ୍ତୁ ଖୋଲି ପାରୁନି । ସେ ଯେମିତି ପାଲଟି ଯାଇଛି ଏକ ମୃଣ୍ମୟ ପ୍ରତିମୂର୍ତ୍ତି । ଜଞ୍ଜିର ପାଖରେ ଅୟସ୍କାନ୍ତ ସଯତ୍ନରେ ଟାଙ୍ଗିଥିଲେ ପ୍ରଭୁ ଗଣନାଥଙ୍କର ଫଟୋଟିଏ । ଘର ଛାଡ଼ି ଗଲାବେଳେ ଗଣେଶଙ୍କୁ ନମସ୍କାର କରି ସମର୍ପିତ ଚିତ୍ତରେ ଘର ଛାଡ଼ନ୍ତି ସେ । ପ୍ରଭୁଙ୍କୁ ଶୁଚି ଅନାଇଛି ଅପଲକ ନୟନରେ । ପ୍ରଭୁ ଯେପରି ତାକୁ କହୁଛନ୍ତି- ଶୁଚି, ତତେ ମୁଁ କ'ଣ ନଦେଇଛି । ଶାନ୍ତ, ଶିଷ୍ଟ, ସୁଯୋଗ୍ୟ, ଶିକ୍ଷିତ ସ୍ୱାମୀ, ବାପା, ମା ଭଳି ସ୍ନେହପୂର୍ଣ୍ଣ ଶାଶୁ, ଶ୍ୱଶୁର । ହସଖୁସିରେ ପରିବାରରେ ଆନନ୍ଦର ଢେଉ ସୃଷ୍ଟି କରୁଥିବା ଦୁଇ ସନ୍ତାନ । କ'ଣ ପାଇଁ ତୁ ଆଜି କରୁଛୁ ବିବେକ ସହିତ ଏତେ ବଡ଼ ସାଲିସ । କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ତଳକୁ ଖସିଗଲେ ପରେ ଅନୁତାପର ଦାବାନଳରେ ଦଗ୍ଧୀଭୂତ ହେବୁ ।

ଶୁଶାନ୍ତ ପ୍ରାୟ ୧୦ ମିନିଟ୍ କଲିଂବେଲ୍ ବଜାଇବା ପରେ ସ୍ତିମିତ ପଦକ୍ଷେପରେ ଫେରୁଥିଲା । ବରା ପ୍ୟାକେଟ୍‌ର ବୋଝଟିକୁ ଟେକିବାକୁ ସେ ଯେପରି ଶକ୍ତିହୀନ ମନେକରୁଥିଲା । ଶୁଚି ସିଲିଂ ଫ୍ୟାନକୁ ଫୁଲସ୍ପିଡ୍‌ରେ ବୁଲାଇ ଦେଇ ଚିତ୍‌କାତ୍ ହୋଇ ପଡ଼ିଗଲା ବିଛଣା ଉପରେ । ସେ ଘରର ଅଳିନ୍ଦ ମଧ୍ୟରେ ଭରପୂର ହୋଇଥିବା ଅଦିନ ବସନ୍ତର ମଳୟ ବାତାୟନ ଦେଇ ଧୀରେ ଧୀରେ ବାହାରକୁ ଅପସରି ଯାଉଥିଲା ।



*('କଥା କଳିକା' ପତ୍ରିକାର ୨୦୧୮ ପୂଜା ସଂଖ୍ୟାରେ ପ୍ରକାଶିତ)*

# ମୃଗତୃଷ୍ଣା

ଗୋପାଳ ବାବୁ ଆର୍ମଚେୟାରରେ ବସି ପଢୁଛନ୍ତି ଖବରକାଗଜ । ଏହି ସମୟରେ କଲିଂବେଲ୍ ବାଜିବାରୁ ଗୋଧୂଳିଦେବୀଙ୍କୁ କବାଟ ଖୋଲିବାକୁ କହିଲେ । ଗୋଧୂଳି ଦେବୀ କବାଟ ଖୋଲିସାରି ଗୋପାଳବାବୁଙ୍କୁ କହିଲେ-ତୁମ ଯାହାକୁ କୁହ ଅକାଳ କୁଷ୍ମାଣ୍ଡ ଆମର ସେଇ ପୁଅ ସୁଶାନ୍ତ କଲିଂବେଲ୍ ବଜାଉଛି ।

ଗୋପାଳ ବାବୁଙ୍କ ଆଖିରେ ଲୁହ ଜକେଇ ଆସୁଥିଲା । ସେ କହିଲେ-ମୁଁ ବହୁତ ଅନୁତପ୍ତ ଗୋଧୂଳି । ଆଉ ସେପରି କହି ମୋର ଯନ୍ତ୍ରଣାକୁ ବଢ଼ାଅନି । ମୁଁ ସହି ପାରୁନି ।

ଦିନେ ସିଂହ ପରି ଗର୍ଜନ କରୁଥିବା ମଣିଷଟିକୁ ନୀରିହ ମେଷଶାବକ ଭଳି ତରଳି ଯାଉଥିବାର ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ ଗୋଧୂଳିଦେବୀ ।

ଗୋପାଳବାବୁ ଥାନ୍ତି ସଚିବାଳୟର ତୃତୀୟ ଶ୍ରେଣୀ କର୍ମଚାରୀ । କିନ୍ତୁ ଅଫିସ୍‌ରେ ଭାରି ଓଜନ ତାଙ୍କର । ତାଙ୍କର ଅଫିସ୍ ନୋଟ୍‌କୁ କାଟି ନିଷ୍ପତ୍ତି ନେବା ପାଇଁ ଉପରିସ୍ଥ ହାକିମମାନଙ୍କର ଭୟ । ସାଧୁତା, ସମୟାନୁବର୍ତ୍ତୀତା, କର୍ମନିଷ୍ଠାର ଅହଂକାରରେ ଉତୁରି ପଡୁଥିବା ଏକ ବ୍ୟକ୍ତିତ୍ୱ । ଧାର କରଜ କରି ବଡ଼ ଓ ମଝିଆଁ ପୁଅଙ୍କୁ ପାଠ ପଢ଼ାଇ ଜଣକୁ ଡାକ୍ତର ଆଉ ଜଣକୁ ଇଂଜିନିୟର କରାଇଛନ୍ତି । ଦୁଇ ପୁଅ ଯାକ ମେଧାବୀ ଛାତ୍ର । ସେମାନଙ୍କ ଗୌରବରେ ଗୌରାବାନ୍ୱିତ ଗୋପାଳବାବୁ । ବଡ଼ ବଡ଼ ଅଫିସରଙ୍କ ଘରେ ବାହା ଦେଇଛନ୍ତି ଦୁଇ ପୁଅଙ୍କୁ । ସାଇ ଭାଇ, ବଂଧୁବାନ୍ଧବ, ଅଫିସ୍ ଲୋକ ସେଥିପାଇଁ ସମସ୍ତେ ତାଙ୍କୁ ମୁଣ୍ଡରେ ବସାଇଥାନ୍ତି । ହେଲେ ସାନ ପୁଅ ସୁଶାନ୍ତର ପରିଚୟ ସେ କାହାକୁ ଦିଅନ୍ତିନି । ଦୁଇ ଥର ହେଲା ମାଟ୍ରିକ୍ ପରୀକ୍ଷା ଦେଲା । ହେଲେ ପାସ୍ କରିପାରିଲାନି । ଗୋପାଳବାବୁ ଗର୍ଜନ କରି କହନ୍ତି-ଏଟା ଅକାଳ କୁଷ୍ମାଣ୍ଡ । ମୋର ପରିବାରର କଳଙ୍କ । ତୃତୀୟ ଥରରେ ଯଦି ମାଟ୍ରିକ୍ ପାସ୍ କରିବନି, ତାକୁ ତେଜ୍ୟପୁତ୍ର କରିଦେବି । ଘରୁ ବାହାର କରିଦେବି । ସେ ଯାଇ ବାର ଓଳି ଶୁଣ୍ଠିପିଣ୍ଡା ହୋଇ ଭିକ ମାଗି ଚଳୁ । ଏଇଟା ନା କିଏ ସୁଶାନ୍ତ ଦେଲା ? ଏଟା ଗୋଟିଏ ଅଶାନ୍ତ ଗ୍ରହ ।

ଗୋଧୂଳିଦେବୀ ଜାଣନ୍ତି, ଗୋପାଳ ବାବୁ କାହୁଁରିଆ କାଠି । ଭାଙ୍ଗିଯିବେ ପଛେ ନଇଁବେ ନାହିଁ ।

ସୁଶାନ୍ତ ବାପାଙ୍କ ସାମ୍ନାକୁ କେବେ ଯିବାକୁ ସାହାସ କରେନି । ବାପା ଅଫିସ୍ ଗଲା ପରେ ସେ ବାହାରକୁ ବାହାରେ । ଗୋଧୂଳି ଦେବୀ ତାକୁ ବୁଝାଇ କହନ୍ତି-ବାବୁରେ ! ଏଇଥର ମନ ଦେଇ ମାଟ୍ରିକ ପରୀକ୍ଷାଟା ଦେଏ । ଯେମିତି ହେଲେ ପାସ୍ କରିଯା । ତୁ ତୋ ବାପାଙ୍କୁ ଜାଣିଛୁ । ପ୍ରଳୟ କରିଦେବେ ।

ସୁଶାନ୍ତ ଆଖି ଆଗରେ ଆସନ୍ନ ପ୍ରଳୟର ଆଭାସ ଜଳ ଜଳ କରି ଦେଖା ଯାଉଥିଲା । ସୁଶାନ୍ତ କହେ - ବୋଉ ଲୋ ! ମୁଁ କ'ଣ କରିବି ? ବହିଟାକୁ ଦେଖିଲେ ମୋ ଆଖିକୁ ନିଦ ଆସୁଛି । ଫୁଟବଲ୍‌କୁ ଦେଖିଲେ ମୋ ମନ ଆନନ୍ଦରେ ଆତ୍ମହରା ହୋଇଉଠୁଛି । ଫୁଟବଲ୍ ପଡ଼ିଆରେ ମୋର ଶତସିଂହର ପରାକ୍ରମ । ଗୋଲ୍‌କିପରକୁ ପରାସ୍ତ କରି ଗୋଲ୍‌ଟିଏ ଦେଇ ଦେଲେ ମୋ ମନରେ ଅପାର ଆନନ୍ଦ । ଫୁଟବଲ ମୋର ଜୀବନ । ତୁ କିପରି ମୋତେ କି ଜନ୍ମ ଦେଇଛୁ ? ଭଗବାନ୍ ମୋତେ କିପରି ସୃଷ୍ଟି କରିଛନ୍ତି ଯେ ବହି, ପାଠପଢ଼ା ଯେପରି ମୋର ଆଜନ୍ମ ଶତ୍ରୁ । ବହୁତ ଚେଷ୍ଟା କରୁଛି । ପାରୁନିଲୋ ବୋଉ । ମୁଁ ବାପାଙ୍କର ଅକାଳ କୁଷ୍ମାଣ୍ଡ । ପରିବାରର କଳଙ୍କ । ସାଇ ଭାଇ ବନ୍ଧୁବାନ୍ଧବରେ ମୋ ପାଇଁ ତୁମେ ମାନେ ନିନ୍ଦା ପାଉଛ । ମୁଁ କ'ଣ ଜାଣୁନି । ଦୁଇ ବଡ଼ଭାଇ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର । ବଡ଼ ଚାକିରି କରିଛନ୍ତି । ମୁଁ କାହିଁକି ଜୀବନ ଯୁଦ୍ଧରେ ହାରି ହାରି ବଞ୍ଚିଛି, ଜାଣିପାରୁନି ?

ମାଟ୍ରିକ୍ ଫଳାଫଳ ବାହାରିଛି । ଗୋଧୂଳି ଦେବୀ ସୁଶାନ୍ତର ନାଁ ଖୋଜି ଖୋଜି ପାଉନାହାଁନ୍ତି । ପାଇଲେନି । ତା ପରେ ଖୋଜିଲେ ସୁଶାନ୍ତକୁ । ତାକୁ ବି ପାଉନାହାଁନ୍ତି । ବାପା ତାକୁ ତେଜ୍ୟପୁତ୍ର କରି ଘରୁ ବିଦା କରିଦେବା ପୂର୍ବରୁ ସେ ସ୍ୱେଚ୍ଛାରେ ଘର ଛାଡ଼ି ପଳାଇଯାଇଛି । କେଉଁଠିକି ଯିବ ତାର ଠିକଣା ଜାଣିନି । କାହା ପାଖକୁ ଯିବ, ତାର ପରିଚୟ ଅଜଣା । ଶେଷରେ ଫୁଟବଲ ପଡ଼ିଆକୁ ତାର ଆଶ୍ରୟ ସ୍ଥଳଭାବି, ତାର ପ୍ୟାଣ୍ଟ, ସାର୍ଟ, ଜୋତା, ମୋଜା ଓ ଫୁଟବଲ୍‌କୁ ଧରି ଆସି ବସିଥିଲା କ୍ଲବର ଫୁଟବଲ୍ ପଡ଼ିଆ ପାଖରେ । ଗୋଲ ପୋଷ୍ଟରେ ଝୁଲାଇ ଦେଲା ବ୍ୟାଗଟି । ଗୋଲ୍ ପୋଷ୍ଟକୁ ଆଉଜି ଦେଖିଥିଲା ତାର ଅନିଶ୍ଚିତ ଭବିଷ୍ୟତକୁ । ଚାରିଆଡ଼ୁ ମାଡ଼ି ଆସୁଥିବା ଘମା ଘୋଟିଆ ଅମା ଅନ୍ଧକାରକୁ । ତାର କାନ୍ଧରେ କେହି ଜଣେ ହାତ ମାରିଦେବାରୁ ପ୍ରକୃତିସ୍ଥ ହେଲା ସୁଶାନ୍ତ । କ୍ଲବର କୋଚ୍ ହରି ଭାଇନା । ସବୁ ଶୁଣି କହିଲେ-ତୁ ଆସୁନୁ ମୋ ଘରେ ରହିବୁ । ମୁଁ ବହୁତ ଖୁସି ହେବି । ମୁଁ ଏକଲା । ଘରେ କେହି ନାହାଁନ୍ତି । ତୁ ରହିଲେ ମୋତେ ଭଲ ଲାଗିବ ।

ସୁଶାନ୍ତକୁ ଲାଗୁଥିଲା ଭଗବାନ୍ ଯେପରି ହରିଭାଇନା ହୋଇ ସାହା ହେବାକୁ ତା ପାଖକୁ ଆସିଛନ୍ତି । ତା ପାଇଁ ବୋଉ କେତେ ପୂଜା ଅର୍ଚ୍ଚନା କରେ । ଭଗବାନଙ୍କୁ କାକୁତି ମିନତି କରି ପ୍ରାର୍ଥନା କରେ ।

ବୋଉ ଛଡ଼ା ତାକୁ ଘରେ କେହି ଖୋଜି ନଥିଲେ । ଭାବିଦେଲେ ଯେ ଘରକୁ ଛାଡ଼ି ଏକ ଗ୍ରହ ଚାଲିଗଲା । ପରିବାରର ଅଭିଧାନରୁ ତୃତୀୟ ସନ୍ତାନର ପରିଚୟଟା ଲିଭିଗଲା । ବାପା ସମସ୍ତଙ୍କୁ କହିଥିଲେ-ମୋର ଦୁଇପୁଅ । ଜଣେ ଡ଼ାକ୍ତର, ଆଉ ଜଣେ ଇଂଜିନିୟର । ଦିନେ ହଠାତ୍ ସୁଶାନ୍ତ ଅତି ସନ୍ତର୍ପଣରେ ସୁଯୋଗ ଉଣ୍ଡି ରୋଷେଇ ଘରର ଝରକା ପାଖରେ ଠିଆ ହୋଇପଡ଼ିଲା । ବୋଉର ଆଖିରୁ ଝରିଗଲା ଲୁହର ଶ୍ରାବଣ । ସୁଶାନ୍ତ ଆବେଗର ସହ କହିଲା-ବୋଉଲୋ ! ଆଜି ପରା ପ୍ରଥମ ରଜ । ଆସିଛି ତୋର ଚକୁଳି ପିଠା ଖାଇବା ପାଇଁ । ଦେବୁନି ?

ଗୋଧୂଳୀ ଦେବୀଙ୍କ ଆଖିରେ ଲୁହର ଲହଡ଼ି । ତାଙ୍କର ମନହୁଏ ବର୍ଷସାରାର ଖାଦ୍ୟ ଭର୍ତ୍ତିକରି ତାକୁ ଝରକାର ରେଲିଂ ଭିତରେ ବଢ଼ାଇ ଦେବେ । ଠିଆ ଠିଆ ବୋଉ ହାତ ତିଆରି ଚକୁଳି ଖାଇ ସୁଶାନ୍ତ କହିଲା -ବୋଉଲୋ, ମୁଁ ମାଟ୍ରିକ୍ ପାସ୍ କରିଯାଇଛି ଥାର୍ଡ ଡିଭିଜନରେ ।

ଆନନ୍ଦରେ କୁରୁଳି ଉଠିଲେ ଗୋଧୂଳୀଦେବୀ । ତାକୁ କୋଳକୁ ଆଉଜେଇ ଆଣି ଖୁସିରେ ଗେଲ କରିବାକୁ ଉଦ୍ୟମ କରିଥିଲେ । ହେଲେ ଝରକାର ରେଲିଂ ସାଜିଥିଲା ପ୍ରତିବନ୍ଧକ ।

ଦୁଇ ବର୍ଷ ପରେ ପୁଣି ରଜକୁ ଆସି ସୁଶାନ୍ତ କହିଥିଲା-ମୁଁ ପ୍ରାଇଭେଟ୍‌ରେ ଆଇ.ଏ ପାସ୍ କରିଛି । ଆଉ ୨ ବର୍ଷ ପରେ ଆସି କହିଲା-ବୋଉଲୋ, ମୁଁ ବିଏ ପାସ୍ କରି ପାରିଲିନି । ଫେଲ୍ ହୋଇଗଲି ।

ଆଜାଦ୍ ହିନ୍ଦ୍ କ୍ଲବର ସେଣ୍ଟର ଫରୱାର୍ଡ଼ ଭାବରେ ଭଲ ଖେଳୁଥିଲା ସୁଶାନ୍ତ । ଖବର କାଗଜରେ ତାର ନାଁ ବାହାରିଲେ ପଡ଼ୋଶୀ ସାଧୁବାବୁଙ୍କ ଝିଅ ଗୋଧୂଳୀଦେବୀଙ୍କୁ ଦେଖାଉ ଥିଲା । ସେ ତାଙ୍କର ଖୁସିକୁ ନିଜ ଭିତରେ ସୀମିତ ରଖୁଥିଲେ । ସୁଶାନ୍ତର ମାଟ୍ରିକ୍ ପାସ୍, ଆଇ.ଏ. ପାସ୍ ଖବର କି  କ୍ଲବ ତରଫରୁ ସିଏ ଗୋଲ୍ ଦେବା  ସମ୍ବାଦ ଖବରକାଗଜରେ ବାହାରିଲେ ଏବଂ ଏସବୁ କଥା  ତା ବାପା ଆଉ ଭାଇମାନଙ୍କୁ କହିଲେ, ସେମାନେ ଚିହିରି ଉଠୁଥିଲେ-ଥାର୍ଡ ଡିଭିଜନ୍‌ରେ ପାସ୍ କରି କ'ଣ କରିବ ସିଏ ? ଶିଳ ଶିଳପୁଆତ ଗଗନେ ଉଡୁଛନ୍ତି । ଏତ ଶିମିଳି ତୁଳା । ମାଷ୍ଟର କ୍ୟାଣ୍ଟିନ୍ ଛକରେ ପାନ ଦୋକାନ କରିବ । ଫୁଟବଲ ଭଲ ଖେଳି କରିବ କ'ଣ ? ଅକାଳ କୁଷ୍ମାଣ୍ଡ । ତୁ ତାକୁ ଗେହ୍ଲା କରି ନଷ୍ଟ କରିଦେଲୁ ।

ଏ ଶବ୍ଦ ଗୁଡ଼ିକ ତୀର ଭଳି ଫୋଡି ହୋଇ ଯାଉଥିଲା ଗୋଧୂଳୀଙ୍କ ଛାତି ଭିତରେ । ତାଙ୍କ ଛାତିର କଳିଜାକୁ ଖିନ୍‌ଭିନ୍ କରି ଦେଉଥିଲା ।

ଗୋପାଳବାବୁଙ୍କ ଅବସର ସମୟ ପାଖେଇ ଆସିଛି । ଗୋପାଳବାବୁ ଭୁବନେଶ୍ୱରରେ ଘର କରି ପାରି ନାହାଁନ୍ତି କିମ୍ବା ଜାଗା ଖଣ୍ଡିଏ କିଣି ପାରି ନାହାଁନ୍ତି । ଗୋପାଳବାବୁ କହିଲେ -ବୁଝିଲ ଗୋଧୂଳୀ! ଆମେ ଡ଼ାକ୍ତରପୁଅ ପାଖରେ ରହିବା ନାଁ ଇଞ୍ଜିନିୟର ପୁଅ ପାଖରେ ? ଦୁଇଜଣ ଯାକ ଜିଦ୍ ଧରିବେ ଆମକୁ ପାଖକୁ ନେବାପାଇଁ । କ'ଣ କରିବା ?

ଗୋପାଳବାବୁ ଚିଠି ଲେଖିଲେ ଦୁଇ ପୁଅଙ୍କୁ- ମୋର ଅବସର ସମୟ ପାଖେଇଲା । ସରକାରୀ କ୍ୱାର୍ଟର ଆଉ ୩ ମାସ ଭିତରେ ଛାଡ଼ିବାକୁ ପଡ଼ିବ । ପେନ୍‌ସନ୍ ଯାହା ମିଳିବ ସେଥିରେ ମୋର ଓ ମାଆର ଔଷଧ ଖର୍ଚ୍ଚ, ଚଳିବା ଖର୍ଚ୍ଚ କୌଣସି ମତେ ଚଳିଯିବ । କିନ୍ତୁ ଘରଭଡ଼ା ଦେଇ ଭୁବନେଶ୍ୱରରେ ରହିବା ସମ୍ଭବ ନୁହେଁ । ଗାଁକୁ ତ ୧୫ ବର୍ଷ ହେଲା ଯାଇନି । ଗାଁର ଘର ମାଟିରେ ମିଶି ଯିବଣି । ପାଲଟି ଯିବଣି ଭୂତକୋଠି । ତେଣୁ ବୋଉ ଓ ମୁଁ ତୁମମାନଙ୍କ ପାଖରେ ରହି ଶେଷ ଜୀବନକୁ ଶାନ୍ତିରେ ଓ ଆନନ୍ଦରେ କଟାଇ ଦେବାକୁ ସ୍ଥିର କରିଛୁ ।

ଗୋପାଳବାବୁ ଚିଠିର ଉତ୍ତର ପାଇଁ କରିଛନ୍ତି ପ୍ରତୀକ୍ଷା । ଚିଠି ଆସିଲାନି କି ଫୋନ୍‌ଟିଏ ଆସିଲାନି । ଗୋପାଳବାବୁ ଭାବିଲେ ଚିଠି ବୋଧହୁଏ ମିସ୍ ହୋଇଗଲା । ଗୋଧୂଳୀଦେବୀଙ୍କୁ କହିଲେ-ତୁମେ ଟିକିଏ ପୁଅମାନଙ୍କ ପାଖକୁ ଫୋନ୍ କର ।

ଗୋଧୂଳୀ ଦେବୀ ବଡ଼ପୁଅକୁ ଫୋନ୍ କରି ପଚାରିଲେ-ବାବୁରେ ! ବାପାଙ୍କ ଚିଠି କଣ ପାଇଥିଲ ?

ଚିଠିପ୍ରାପ୍ତିର ସ୍ୱୀକାର କରି ବଡ଼ ପୁଅ ଅତି ଅସହାୟ ସ୍ୱରରେ କହିଥିଲେ-ତୁ ତ ତୋର ବଡ଼ ବୋହୂକୁ ଜାଣିଛୁ । ତମ ଆସିବା ଶୁଣି ମୁହଁ ଫୁଲେଇଛି । ତାଛଡ଼ା ଆମର ପିଲାମାନଙ୍କ ପାଠପଢ଼ା, ଘର ତିଆରି ଲୋନ୍ ଇନ୍‌ଷ୍ଟାଲମେଣ୍ଟ ପେମେଣ୍ଟ । ଏପରି ପରିସ୍ଥିତିରେ ..... ।

ଗୋଧୂଳୀ ଦେବୀ ଫୋନ୍ କାଟି ଦେଇଥିଲେ । ମଝିଆଁ ପୁଅ ଠାରୁ ମଧ୍ୟ ଏକା ଉତ୍ତର ପାଇଲେ । ଗୋପାଳବାବୁ ଏ ସବୁଶୁଣି ସ୍ତମ୍ଭୀଭୂତ ହେଲେ । ଭାଙ୍ଗିଗଲା ତାଙ୍କର ସ୍ୱପ୍ନର ରାଜମହଲ । ପରସ୍ତ ପରସ୍ତ ହୋଇ ଖସି ପଡୁଥିଲା ତାଙ୍କ ଅହଙ୍କାରର ପାହାଡ଼ । ଆଜି ପର୍ଯ୍ୟନ୍ତ ଦୁଇ ପୁଅକୁ ନେଇ ଗର୍ବରେ ଫୁଲି ଉଠୁଥିବା ଗୋପାଳବାବୁ ସଂକୁଚିତ ହୋଇ ଯାଇଥିଲେ । ଦୁଇ ଆଖିରେ ଜକେଇ ଆସିଥିଲା ଦୁଇ ଟୋପା ଲୁହ ।

ସବୁଠାରୁ ସୁଖୀ, ସବୁଠାରୁ ଧନୀ ମାନୀ ଭାବୁଥିବା ମଣିଷଟି ହୋଇଯାଇଥିଲା ଅସହାୟ, ଆଶ୍ରୟ ଶୂନ୍ୟ । ପରିବେଶଟିକୁ ହାଲୁକା କରିବାକୁ ଚେଷ୍ଟା କରିବାକୁ ଯାଇ

ଗୋଧୂଳୀ କହିଲେ-ବ୍ୟସ୍ତ ହୁଅନା । ଗାଁକୁ ଯିବା । ଗାଁର ଭଙ୍ଗା ଘରକୁ ସଜାଡ଼ି ସେଇଠି ରହିବା । ଜମିବାଡ଼ି, ଘର ଦେଖାଦେଖି କରି ସମୟ କଟିଯିବ ।

ଯେତେ ସହଜ ଭାବରେ ଗୋଧୂଳୀ ଦେବୀ ପ୍ରସ୍ତାବଟି ଉତ୍‌ଥାପନ କରିଥିଲେ, ଗୋପାଳବାବୁଙ୍କୁ ତାହା ସେତିକି କଠିନ ଓ ଅସମ୍ଭବ ଲାଗୁଥିଲା । ୪୦ ବର୍ଷ ହେଲା ଭୁଲିଯାଇଥିଲେ ଗାଁକୁ, ମାୟା ନଗରୀ ଭୁବନେଶ୍ୱରର ମାୟାରେ । ସେ କିଭଳି ସାମ୍ନା କରିବେ ଗାଁକୁ ? ଗାଁରେ ଇଲେକ୍ଟ୍ରିସିଟି ନାହିଁ, ଡ଼ାକ୍ତରଖାନା ନାହିଁ । ଘରନାହିଁ । ବିଲ ବାଡ଼ିକୁ କିଏ କେତେ ମାଡ଼ି ବସିଛନ୍ତି ତାର ହିସାବ କରିବାକୁ ତାଙ୍କ ପାଖରେ ସମୟ ନଥିଲା । ଗାଁ ଘରକୁ ଆଜି ପର୍ଯ୍ୟନ୍ତ ସେ ଅଣଦେଖା କରିଆସିଛନ୍ତି । ନାହିଁ,ନାହିଁର ପ୍ରତିଧ୍ୱନି ତାଙ୍କ ମସ୍ତିଷ୍କକୁ ଭାରାକ୍ରାନ୍ତ କରୁଥିଲା ।

ସେ ଗୋଧୂଳି ଦେବୀଙ୍କୁ ଧରି କାନ୍ଦିଥିଲେ । ଏତେ ବଡ଼ ସ୍ୱାଭିମାନୀ, ଅହଂକାରୀ, କ୍ରୋଧୀ ମଣିଷକୁ ଛୋଟ ପିଲାଭଳି ଅସହାୟ ଭାବରେ ପ୍ରଥମ କରି କାନ୍ଦିବାର ଦେଖି ଗୋଧୂଳୀ ଦେବୀ ମ୍ରିୟମାଣ ହେଉଥିଲେ । ସାନ୍ତ୍ୱନା ଦେଇ କହିଲେ-ବ୍ୟସ୍ତ ହୁଅନା, ଯାହା ଭାଗ୍ୟରେ ଥିବ ହେବ । ଆଉ କିଛି ଚାରା ନାହିଁ । ଜିନିଷ ପତ୍ର ବନ୍ଧାବନ୍ଧି କରି ଗାଁକୁ ଯିବାର ବ୍ୟବସ୍ଥା କରିବା ।

ଗୋପାଳବାବୁ ବଲବଲ କରି ଚାହୁଁଥିଲେ· ଆକାଶକୁ, ଛାତକୁ, ଗୋଧୂଳୀ ଦେବୀଙ୍କ ନିର୍ବିକାର ମୁଖ ମଣ୍ଡଳକୁ ।

ଆଜି ପ୍ରଥମ ରଜ । ରଜ ଚକୁଳି କରୁଛନ୍ତି ଗୋଧୂଳୀଦେବୀ । ଆଜି କଣ ସୁଶାନ୍ତ ଆସିବନି ତାର ବୋଉର ଚକୁଳି ଖାଇବା ପାଇଁ ? ଗାଁକୁ ଯିବା ପୂର୍ବରୁ ଶେଷଥର ପାଇଁ ଦେଖିଦେବେ ତାଙ୍କର ହଜି ଯାଇଥିବା ସାନପୁଅଟିକୁ । ସେ ଜୀବନସାରା ଗାଳି, ଅପମାନ, ନିନ୍ଦା ସହି ସହି ତେଜ୍ୟପୁତ୍ର ହୋଇ ଘରୁ ତଡ଼ା ଖାଇ ପର ଘର ପର ଓଳିରେ ଆଶ୍ରୟ ନେଇ ହସି ହସି ଆସୁଛି, ଝରକା ରେଲିଂ ଫାଙ୍କରୁ ଚକୁଳିଟିଏ ଖାଇବା ପାଇଁ । ସତକୁ ସତ ଆଜିବି ଆସିଛି ସୁଶାନ୍ତ । ସବୁଦିନ ପରି ମୁହଁରେ ସେମିତି ହସ ଖୁନ୍ଦି ହୋଇଛି । ଆନନ୍ଦରେ ଅଧୀର ହୋଇଥିଲେ ଗୋଧୂଳୀ ଦେବୀ । ଚକୁଳିଟିଏ ତାର ପାଟିରେ ଭର୍ତ୍ତି କରିଦେଇଥିଲେ ।

ସୁଶାନ୍ତ ପାଟିରୁ ବାହାରି ଆସିଲା-ବୋଉଲୋ, ଆଜି ମୁଁ ତୋ ପାଖକୁ କିଛି ମାଗିବାକୁ ଆସିଛି । ମତେ କଥା ଦେ, ମୁଁ ଯାହା ମାଗିବି ତୁ ମନା କରିବୁନି ଦେବାକୁ ।

ଗୋଧୂଳୀ ଦେବୀ କହିଲେ -ବାବୁରେ ତୁ ତ ଜାଣିଛୁ, ତୋ ବୋଉ କେତେ ଅସହାୟ । ସବୁ ଥାଇକି ବି ତା' ପାଖରେ କିଛି ନାହିଁ । ତୁ ଏ ଘରୁ ଏତେ ଗାଳି, ନିନ୍ଦା, ଅପମାନ ପାଇଛୁ । ଶେଷରେ ଘରୁ ତଡ଼ା ଖାଇ କେଉଁ ଗଳି କନ୍ଦିରେ ଆଲୋଡ଼ା ଅଖୋଜା

ହୋଇ ପଡି ରହୁଛୁ । ମୋର ପାଟି ଫିଟାଇବାକୁ ସାହାସ ନାହିଁ । ତୋତେ ରଜ ଚକୁଳି ଛଡ଼ା କ'ଣ କିଛି ଦେଇ ପାରିଛି ? ତୁ ଏ ଭିକାରୁଣୀ ବୋଉ ପାଖରୁ କଣ ମାଗିବାକୁ ଆସିଛୁ ?

ସୁଶାନ୍ତ ଶାନ୍ତ କଣ୍ଠରେ ଉତ୍ତର ଦେଲା -ବୋଉଲୋ, ସ୍ପୋର୍ଟସ୍ କୋଟାରେ ଫୁଟବଲ ଖେଳପାଇଁ ନାଲ୍‌କୋରେ ଚାକିରି ପାଇଛି । ନାଲ୍‌କୋ ଫୁଟବଲ୍ ଟିମ୍‌ର ମୁଁ ସେଣ୍ଟର ଫରୱାର୍ଡ଼ ହୋଇ ଖେଳିବି । ତୁମ୍‌ତୁମାରେ ମୋତେ କ୍ୱାର୍ଟର ମିଳିଛି । ବାପାତ ଅବସର ଗ୍ରହଣ କରିବେ । ପନ୍ଦର ଦିନ ଭିତରେ ସରକାରୀ କ୍ୱାର୍ଟର ଛାଡ଼ିବାକୁ ପଡ଼ିବ । ତୁ ଆଉ ବାପା ମୋ କ୍ୱାର୍ଟରରେ ରହିଲେ ମୁଁ ବହୁତ ଖୁସି ହେବି । ତୁ ମନା କରିବୁନି ବୋଉ । ମୁଁ ଚକୁଳି ପିଠା ଛଡ଼ା ତତେ କିଛି ମାଗିନି । ଆଜି ଯାହା ମାଗୁଛି ତୁ ମନା କରିବୁନି । ମୁଁ ଜାଣେ, ବଡ଼ ଦୁଇ ଭାଇଙ୍କ ପାଖରେ ତୁମେ ରହିଲେ, ବହୁତ ଆରାମ ଓ ପ୍ରାଚୁର୍ଯ୍ୟ ଭିତରେ ଦିନ କଟାଇବ । ତୁମର ଆନନ୍ଦ ଓ ସନ୍ତୋଷ ପାଇଁ ସେମାନେ ହଜାର ହଜାର ଟଙ୍କା ଖର୍ଚ୍ଚ କରିବେ । ତଥାପି..

କଇଁ କଇଁ ହୋଇ କାନ୍ଦୁଥିଲେ ଗୋଧୂଳି ଦେବୀ । ଏ ଲୁହ ଦୁଃଖର କି ଆନନ୍ଦର, ଗୋଧୂଳିଦେବୀ ବୁଝି ପାରୁନଥିଲେ । ପଛରୁ କେହି ତାଙ୍କ କାନ୍ଧରେ ହାତ ରଖିବାର ଦେଖି ପଛକୁ ଅନାଇଲା ବେଳକୁ ଠିଆ ହୋଇଛନ୍ତି ଗୋପାଳବାବୁ । ସେ ଗୋଧୂଳି ଦେବୀଙ୍କୁ କୁଣ୍ଢାଇ ଧରି କାନ୍ଦୁଛନ୍ତି । ଅନୁତାପର ଦାବାନଳରେ ଦଗ୍ଧୀଭୂତ ହେଉଥିଲେ ସିଏ । ସେମାନେ ଜିନିଷପତ୍ର ନେଇ ଯାଇଥିଲେ ସୁଶାନ୍ତ କ୍ୱାର୍ଟରକୁ । ସୁଶାନ୍ତର ସ୍ନେହ, ମମତା, ସମ୍ମାନରେ ଅଭିଭୂତ ହୋଇଥିଲେ ଦୁହେଁ । ଜୀବନ ସାରା ସେମାନଙ୍କ ଦ୍ୱାରା ନିର୍ଯାତିତ ହୋଇଥିବା ପିଲାଟି ହସ ହସ ମୁହଁରେ ସେମାନଙ୍କ ସେବା ଯତ୍ନ କରି ଚାଲିଥିଲା ।

ଗୋପାଳବାବୁ କହିଲେ- ଗୋଧୂଳୀ !ବାବୁକୁ ଟିକେ ଭଲ କରି ଖାଇବାକୁ ଦିଅ । ଫୁଟବଲ ଖେଳିବାକୁ ପଡ଼ିଆକୁ ଯିବ ସିଏ ।

ଗୋପାଳ ବାବୁ ପ୍ରଥମଥର ପାଇଁ ସୁଶାନ୍ତକୁ ଅକାଳକୁଷ୍ମାଣ୍ଡ ପରିବର୍ତ୍ତେ ବାବୁ ବୋଲି ସମ୍ବୋଧନ କରୁଥିଲେ ।

ଗୋଧୂଳୀଦେବୀଙ୍କ ମନରେ ସାହସ ଓ ଦେହରେ ଶକ୍ତି ସଂଚରି ଯାଉଥିଲା । ଆଜି ପର୍ଯ୍ୟନ୍ତ ଡରି, ମରି, ଥରି ରହିଥିବା ନାରୀଟି ଭିତରେ ଭରି ଉଠୁଥିଲା ମା' ଦୁର୍ଗାଙ୍କ ଅପ୍ରତିହତ ଶକ୍ତି । ରାଗରେ ତମ ତମ ହୋଇ କହିଲେ-ଆଜି କଣ ଲଙ୍କାରେ ହରି ଶବ୍ଦ ? ତୁମ ତୁଣ୍ଡରେ "ବାବୁ" ଶବ୍ଦ ଭାରି ଅଖାଡୁଆ ଶୁଭୁଛି । ଯାହାକୁ ଦେଖିଲେ ଘୃଣା ଆଉ ରାଗରେ ତୁମ ତାଳୁରୁ ତଳିପା ପର୍ଯ୍ୟନ୍ତ ଚିହିରି ଉଠୁଥିଲା, ତା ପାଇଁ କାହିଁ ଏତେ ଦରଦ ?

ବିଚରା ପିଲାଟା ବାର ଓଳି ଶୁଣ୍ଢିପିଣ୍ଡା ହୋଇ ଗାଳି ମନ୍ଦ ସହି ତାର ପିଲାଦିନ ଓ ଯୁବାବସ୍ଥାକୁ ଖିନ୍‌ଭିନ୍ କରି ଦେଲା । ଥରୁଟିଏ ବି ଜୀବନରେ ତୁମ ଠାରୁ ପଦେ ଭଲ କଥା ଶୁଣିନି । ଜନ୍ମ କଲା ପୁଅକୁ କାହିଁକି ଏତେ ଘୃଣା, ଏତେ ନିର୍ଯାତନା ? ଦଶ ବର୍ଷ ହେଲା ପିଲାଟା କେଉଁଠି ରହିଲା, କ'ଣ ଖାଇଲା, ବଞ୍ଚିଛିକି ମରିଛି କେବେ ତ ଥରେ ପଚାରିନ ? ଆଜି କାହିଁକି ସ୍ନେହ ଉଚ୍ଛୁଳି ପଡୁଛି ? ତମେ ଭାବୁଥିଲ, ପାଠ ପଢୁଆ ତୁମମାନେ ହିଁ ସବୁ ପାରିବେ । ଯିଏ ନ ପଢ଼ିଲା, ସିଏ ଅପଦାର୍ଥ, ପୋଡ଼ା ଅଂଗାର । ସୁଶାନ୍ତ ଆଖି ଲୁହକୁ ଓଠରେ ପିଇ କେତେ କୋହକୁ ଛାତି ତଳେ ଜାକି ରଖି ନିଜ ଶିଙ୍ଗରେ ମାଟି ଉଠେଇ ନିଜ ଗୋଡ଼ରେ ନିଜେ ଠିଆ ହୋଇଛି । ସୁଶାନ୍ତ ସିନା ବେଶି ପାଠ ପଢ଼ିଲାନି । କିନ୍ତୁ ତୁମ ଡାକ୍ତର ଆଉ ଇଂଜିନିୟର ପୁଅ ଯାହାଙ୍କୁ ମୁଣ୍ଡରେ ବସେଇଥିଲ, ତାଙ୍କ ଠାରୁ ଅଧିକ ଭଲ ମଣିଷ ସୁଶାନ୍ତ ।

ଆଜି ପର୍ଯ୍ୟନ୍ତ ଗୋଧୂଳିଦେବୀ ଗୋପାଳବାବୁଙ୍କ କଥାରେ ବସ୍ ଉଠ୍ ହେଉଥିଲେ । ସତେ ଯେପରି ଖେଳନା କଣ୍ଢେଇଟିଏ । ଛାତି ତଳେ ତିରିଶ ବର୍ଷ ଧରି ଲୁଚେଇ ରଖିଥିବା ବ୍ୟଥା ଓ ବେଦନା ଆଜି ଉଦ୍‌ଗୀରଣ ହେଉଥିଲା ଆଗ୍ନେୟଗିରିର ଲାଭା ପରି । ତାଙ୍କର ବାକ୍ୟବାଣ ଖଣ୍ଡାଧାର ପରି ଗୋପାଳବାବୁଙ୍କ ସର୍ବାଙ୍ଗରେ ଗଳି ଯାଉଥିଲା । ଗୋଧୂଳିଦେବୀ ଜୀବନ ସାରା ଗୋପାଳବାବୁଙ୍କ ଗାଳିର ଗୁଳିରେ କ୍ଷତାକ୍ତ ଓ ରକ୍ତାକ୍ତ ହୋଇ ନିରବ ରହିଥିଲେ । ସେ ସବୁବେଳେ ଭୟରେ ଜଡ଼ସଡ଼ ହୋଇ ଜୀବନ ବିତାଇ ଦେଲେ । ଆଜି ପୁଅର ଘର ଚଉହଦୀରେ ତାଙ୍କ ମନ ଓ ଜିହ୍ୱାର ଅଖଣ୍ଡ ସ୍ୱାଧୀନତା । ଫଟା ଦରସିଆଁ ଛାତି ତଳେ ଆଜି ପର୍ଯ୍ୟନ୍ତ ଜଳୁଥିବା ନିଆଁ ହୁଳା ଗୁଡ଼ିକୁ ଗୋପାଳବାବୁଙ୍କ ଆଡ଼କୁ ମନଭଳି ନିକ୍ଷେପ କରୁଥିଲେ ।

ଗୋପାଳବାବୁ ଥିଲେ ନିର୍ବାକ, ନିରୁତ୍ତର, ଅନୁତପ୍ତ । ସୋଫା ଉପରେ ବସି ଗୋଧୂଳିଙ୍କର ମା' ଦୁର୍ଗାଙ୍କ ରୂପକୁ ଅପଲକ ନୟନରେ ଅନାଇ ରହିଥିଲେ । ଆଖିରୁ ଝରି ଯାଉଥିଲା, ଲୋତକର ଧାରା । ଆତ୍ମଗ୍ଳାନି ଆଉ ଅନୁତାପର ଲୋତକ ।

ଗୋଧୂଳିଦେବୀ ଦଶଭୂଜାଙ୍କ ଭଳି ବିଜୟ ଗର୍ବରେ ଉଲ୍ଲସିତ ଅନୁଭବ କରୁଥିଲେ । ଦୀର୍ଘ ତିରିଶ ବର୍ଷ ପରେ ଗୋପାଳବାବୁଙ୍କ ଛାତି ତଳେ ଡେଣା ମେଲେଇ ବସିଥିବା ମିଛ ଅହଂକାରର ମହିଷାସୁରକୁ ଆଜି ସଂପୂର୍ଣ୍ଣ ନିପାତ କରିଦେଇଛନ୍ତି । ତାଙ୍କ ମୁହଁରୁ ଝରି ପଡୁଥିଲା ଚେନାଏ ଆଶ୍ୱସ୍ତିର ହସ ।



('ଫୁଲ ବଉଳବେଣୀ' ପତ୍ରିକାର ୨୦୧୮ ପୂଜା ସଂଖ୍ୟାରେ ପ୍ରକାଶିତ)

# କୁହୁଡ଼ି

ଗଲା ରବିବାର ଦିନ ସାଗରବାବୁଙ୍କ ଘରକୁ ଝିଅ ସୁମି ଆସି ଏକ ଚାଞ୍ଚଲ୍ୟକର ଖବର ଦେଇଗଲା । ସାଗର ବାବୁ ଓ ସ୍ତ୍ରୀ ସ୍ୱର୍ଣ୍ଣପ୍ରଭା ସ୍ତବ୍ଧ ହୋଇଯାଇଥିଲେ । ସେମାନେ ସେଇଦିନଠାରୁ ବିଚଳିତ ଓ ଆତଙ୍କିତ । ଭାରାକ୍ରାନ୍ତ ମସ୍ତିଷ୍କକୁ ନେଇ ଦେହଟାକୁ ଘୋଷାରି ଘୋଷାରି ଚାଲୁଥିଲେ । ସାଗର ହସ ଖୁସି ମିଜାଜ୍‌ର । ସେ ହସୁଥିଲେ ବି ସେହସ ଉହାଡରେ ଲୁଚକାଳି ଖେଳୁଥିଲା ଏକ କରୁଣରାଗିଣୀ ।

ସାଗର ଶତପଥୀ ରାଜ୍ୟ ସରକାରଙ୍କ ଅବସରପ୍ରାପ୍ତ ପଦସ୍ଥ ଅଫିସର୍ । ଦୁଇ ବର୍ଷ ହେବ ଚାକିରିରୁ ଅବସର ନେଇଛନ୍ତି । ବରମୁଣ୍ଡାରେ ଏକ ଫ୍ଲାଟ୍ କିଣି ସେଠାରେ ରହୁଛନ୍ତି । ସାଙ୍ଗରେ ସ୍ତ୍ରୀ ସ୍ୱର୍ଣ୍ଣପ୍ରଭା ଦେବୀ । ଗୋଟିଏ ଝିଅ, ସୁମି । ଗୋଟିଏ ପୁଅ,ସଂଗ୍ରାମ । ତାଙ୍କ ଗାଁ ହେଉଛି ସାଲେପୁର ନିକଟସ୍ଥ ସତ୍ୟଭାମାପୁର ।

ସୁମିର ଜନ୍ମର ଦଶବର୍ଷ ପରେ ସ୍ୱର୍ଣ୍ଣପ୍ରଭାଙ୍କର ବହୁ ପୂଜା, ଅର୍ଚ୍ଚନା ଓ ମାନସିକ ପରେ ସଂଗ୍ରାମର ଜନ୍ମ । ସୁମିର ବାହାଘର ପରେ ସଂଗ୍ରାମ ତାଙ୍କର ଏକଇର ବଳା ବିଶିକେଶନ । ସ୍ନେହ ମମତାର ଆଞ୍ଜୁଳା ଆଞ୍ଜୁଳା ଜ୍ୟୋସ୍ନାରେ ସର୍ବଦା ଉଦ୍‌ଭାସିତ କରୁଥାନ୍ତି ସଂଗ୍ରାମକୁ । ବହୁ ପ୍ରତୀକ୍ଷାପରେ ଜଗଦୀଶ୍ୱରଙ୍କ ଅପାର କରୁଣାର ଏକ ପ୍ରତିଫଳନ ଘଟିଛି ।

ସୁମିର ବାହାଘର ପାଞ୍ଚବର୍ଷ ହେବ ହୋଇ ଯାଇଛି । ସିଏ ରହୁଛି ଚନ୍ଦ୍ରଶେଖରପୁରରେ ତାର ଶାଶୁଘରେ । ସ୍ୱାମୀ ପୂର୍ତ୍ତବିଭାଗରେ ଆସିଷ୍ଟାଣ୍ଟ ଇଂଜିନିୟର । ପୁଅ ସଂଗ୍ରାମ ଇନ୍‌ଫୋସିସ୍‌ରେ ସଫ୍ଟୱେୟାର୍ ଇଂଜିନିୟର ଭାବରେ ଭୁବନେଶ୍ୱରରେ ଅବସ୍ଥାପିତ । ସୁଖ ଓ ଶାନ୍ତିର ଏକ ଅତୁଳନୀୟ ସଂସାର ।

ସ୍ୱର୍ଣ୍ଣପ୍ରଭା ଦେବୀ ଜଣେ ରକ୍ଷଣଶୀଳା ଭଦ୍ରମହିଳା । ଆଧ୍ୟାତ୍ମିକ ଦୁନିଆ ଭିତରେ ସେ ସବୁବେଳେ ବ୍ୟସ୍ତ । ପୂଜା, ପ୍ରାର୍ଥନା ତାଙ୍କର ଅତିପ୍ରିୟ । ଭଗବତ୍ ଗୀତା, ଭାଗବତ, ପୁରାଣ ପ୍ରଭୃତି ଧର୍ମ ପୁସ୍ତକ ପଢ଼ିବାରେ ଅସୀମ ଆଗ୍ରହ । ସହରର ଘରେ ରହୁଥିବା ସ୍ତ୍ରୀଲୋକମାନେ ସମୟର ପ୍ରାଚୁର୍ଯ୍ୟ ଭିତରେ ଉବୁଟୁବୁ ହେଉଥିବାବେଳେ ତାଙ୍କ ପାଇଁ ସମୟର ଘୋର ଅଭାବ ।

ସୁମିର ପଡୋଶୀଙ୍କର ଝିଅ ଇନ୍‌ଫୋସିସ୍‌ରେ ଚାକିରି କରେ । ସଂଗ୍ରାମ ତାର ସହକର୍ମୀ । ସେ ସୁମିକୁ କହିଛି ଯେ ସଂଗ୍ରାମ ଏକ ଖ୍ରୀଷ୍ଟିୟାନ୍ ଝିଅକୁ ଭଲ ପାଉଛି । ସେ ଯେକୌଣସି ସମୟରେ ତାକୁ ରେଜେଷ୍ଟ୍ରି ମ୍ୟାରେଜ୍ କରି ଦେଇପାରେ । ସୁମି ସେମାନଙ୍କୁ ଏସବୁ ବିଷୟ ସ୍ପଷ୍ଟ ଜଣାଇଦେବା ପରେ ସାଗରବାବୁ ଓ ସ୍ୱର୍ଣ୍ଣପ୍ରଭା ଆତଙ୍କିତ । ଆସନ୍ନ ଆଶଙ୍କାରେ ଆନ୍ଦୋଳିତ, ଆଲୋଡ଼ିତ ।

ସୁମି ମାଆକୁ ତାଗିଦ୍ କରି କହିଛି ନେଡ଼ିଗୁଡ଼ କହୁଣୀକୁ ବହିଯିବା ପୂର୍ବରୁ କିଛି ଗୋଟିଏ ବ୍ୟବସ୍ଥା କର । ମୁଁ ଜଣେ ଖଣ୍ଡାୟତ ପିଲାକୁ ଭଲ ପାଉଥିଲି ବୋଲି ତୁ ଘରେ ପ୍ରଳୟ କରିଦେଲୁ । ମୋତେ ୪ ମାସ କାଳ ଘରେ ଚାରିକାନ୍ଥ ଭିତରେ ଆବଦ୍ଧ ରଖି ଅନ୍ୟ ଜାଗାରେ ବାହା କରିଦେଲ । ଅନ୍ୟ ଜାତି କଥା ଛାଡ଼ । ଇଏତ ଗୋଟାଏ ଅନ୍ୟ ଧର୍ମର । ପଞ୍ଜାବୀ କି ଜୈନ ହୋଇଥିଲେ ଚଳିଥାନ୍ତା । ଏତ ପୂରା ଖ୍ରୀଷ୍ଟିୟାନ । ଏବେ ତୋ ଗେହ୍ଲାପୁଅକୁ ସମ୍ଭାଳେ ।

ସ୍ୱର୍ଣ୍ଣପ୍ରଭା ଥିଲେ ନିର୍ବାକ ଓ ନିରୁତ୍ତର । ସୁମିର ମୁହଁରୁ ନିଗିଡ଼ି ପଡୁଥିବା ଶବ୍ଦଗୁଡ଼ିକ ତୁଣୀରରୁ ତୀବ୍ର ଗତିରେ ଆସୁଥିବା ଶରଭଳି ତାଙ୍କ ବକ୍ଷଦେଶକୁ କ୍ଷତବିକ୍ଷତ କରୁଥିଲା । ମୁହଁ ଖୋଲି ସୁମିକୁ କହିଲେ - ମା ଏକଥା କାହାକୁ କହିବୁନି । ବନ୍ଧୁବାନ୍ଧବ, ସାଇଭାଇ ଗାଁ ଲୋକଙ୍କ କାନରେ ପଡ଼ିଲେ ଖାଲି ପଡ଼ିବ, ଉଠିବ ।

ଏସବୁ ଘଟଣା ସାଗରବାବୁଙ୍କୁ କହିଲାବେଳେ ସ୍ୱର୍ଣ୍ଣପ୍ରଭାଙ୍କ ଆଖି ଛଳଛଳ ହୋଇଯାଉଥିଲା । ସ୍ୱର୍ଣ୍ଣପ୍ରଭାଙ୍କ ଆଖିରେ ଲୁହ ଦେଖିଲେ ବିବ୍ରତ ହୋଇପଡ଼ନ୍ତି ସାଗରବାବୁ । ସେ ଭିତରୁ ଭାଙ୍ଗି ପଡୁଥିଲେବି ବିଚଳିତ ନ ହେବା ପାଇଁ ପରାମର୍ଶ ଦେଲେ-ସତ୍ୟ କଣ, ତାହା ଭଲ ଭାବରେ ନ ଜାଣି କାହିଁକି ବ୍ୟସ୍ତ ହେଉଛ ? ସଂଗ୍ରାମ ଟ୍ରେନିଂ ପାଇଁ ବାଙ୍ଗାଲୋର ଯାଇଛି । ଆସୁ, ତାକୁ ପଚାରିବା । ସଂଗ୍ରାମଟା ଆମର ଭଲପିଲା । ଏମିତି କାମ କରିବ, ମୋର କାଇଁ ବିଶ୍ୱାସ ହେଉନି । - ଏ ଥିଲା ସାଗର ବାବୁଙ୍କର ଆଶ୍ୱାସନାପୂର୍ଣ୍ଣ ବାଣୀ ।

ସ୍ୱର୍ଣ୍ଣପ୍ରଭା ଆଶଙ୍କାର ଖରସ୍ରୋତା ତଟିନୀରେ ଭାସିଯାଉଥିବା ବେଳେ ସାଗରଙ୍କର ଦୁଇ ପଦ କଥା ଭରି ଦେଇଥିଲା ଆଶ୍ୱସ୍ତି ।

ସଂଗ୍ରାମ ଥିଲା ଶାନ୍ତ, ଶିଷ୍ଟ, ନମ୍ର ଆଉ ମେଧାବୀ, ବିଶ୍ୱବିଦ୍ୟାଳୟର କୃତୀଛାତ୍ର । ମାଛିକୁ ମ କହେନା । ହଲିଲା ପାଣିକୁ ଗୋଡ଼ ବଢ଼ାଏନା । ଏତେ ବଡ଼ ପିଲା ହେଲାଣି - ମାଆ, ମାଆ କହି ସ୍ୱର୍ଣ୍ଣପ୍ରଭାଙ୍କ ଚାରିକଡେ ପଇଁତରା ମାରୁଥିବ । ଯାହା ଦରମା ପାଇବ, ତାର ଦୁଇ ତୃତୀୟାଂଶ ବାପାଙ୍କ ହାତରେ ଧରାଇଦେବ । ମା'କୁ କହିବ– ମା ଲୋ ବାପା

ତାଙ୍କର ଯାହା ଇଚ୍ଛା ଖର୍ଚ୍ଚ କରନ୍ତୁ । ତୁ କିଛି କହିବୁନି । ତୋର ଯାହା ଦରକାର, କହିବୁ, ମୁଁ ଦେବି ।

ସଂଗ୍ରାମକୁ ନେଇ ବାପା, ମାଆଙ୍କର ଭାରି ଗର୍ବ । ପଡୋଶୀ ମିଶ୍ରବାବୁଙ୍କ ପୁଅ ପଞ୍ଜାବୀ ଝିଅକୁ ବାହା ହେଲାବେଳେ ସେମାନେ କହିଥିଲେ - ଆମ ସଂଗ୍ରାମଟା ନିଆରା । ସେ କେବେ ଏମିତି କିଛି କରିବନି, ଯାହା ଆମ ମନରେ ଦୁଃଖ ଦେବ । ବାପା ମାଆଙ୍କର କଥା ତାର ବେଦର ଗାର ।

ଏକଥା କହିଲାବେଳେ ସେମାନଙ୍କ କଣ୍ଠସ୍ୱରରୁ ଉତୁରି ପଡୁଥିଲା ଅହଙ୍କାରର ପ୍ରତିଧ୍ୱନି ।

ଦୁଇଦିନ ପରେ ଘରକୁ ଆସିଥିଲେ ସାଗରବାବୁଙ୍କର ଦାଦା ପୁଅ ଭାଇ ସୁମନ । ଭୁବନେଶ୍ୱରର ଚନ୍ଦ୍ରଶେଖରପୁରରେ ସେ ଜଣେ ପ୍ରତିଷ୍ଠିତ ବ୍ୟବସାୟୀ । କଥା ପ୍ରସଙ୍ଗରେ କହିଲେ-ହଁ, ଭାଇ ମୁଁ ମାସେ ଦୁଇ ମାସ ହେବ ସଂଗ୍ରାମକୁ ଗୋଟେ ଝିଅ ସଙ୍ଗରେ ବୁଲିବାର ଦେଖୁଛି । କେତେବେଳେ ପାର୍କରେ, କେତେବେଳେ ମଲ୍‌ରେ କେତେବେଳେ ହୋଟେଲ୍‌ରେ । ଚାରି ପାଞ୍ଚଥର ଦେଖିଲିଣି ମଟର ସାଇକେଲରେ ତାକୁ ନେଇ ଯିବାର । ଅବାଧ ମିଳାମିଶା । ସେ ଝିଅଟି କିଏ ?

-ସଂଗ୍ରାମକୁ ପଚାରିବି ସେ ବିଷୟରେ । ସେ ବାଙ୍ଗାଲୋର ଟ୍ରେନିଂ ପାଇଁ ଯାଇଛି । ଆସୁ ।

ଏତିକି କହି କଥାର ମୋଡ଼ ବଦଳାଇଲେ ସାଗରବାବୁ । ଅନ୍ୟ ବିଷୟ କଥା ହେଉଥିଲେ ହେଁ ସୁମନଙ୍କର ବକ୍ତବ୍ୟ ମନ ଓ ହୃଦୟରେ ପ୍ରତିଧ୍ୱନିତ ହୋଇ ତାଙ୍କୁ ବିଚଳିତ କରୁଥିଲା । ସୁମନଙ୍କର ଏହି ବକ୍ତବ୍ୟକୁ ସ୍ୱର୍ଣ୍ଣପ୍ରଭାଙ୍କ ଠାରୁ ଲୁଚାଇ ରଖିଥିଲେ ।

ସାଗରବାବୁଙ୍କ ଚିନ୍ତା ଦ୍ୱିଗୁଣିତ ହେଲା । ସ୍ୱର୍ଣ୍ଣପ୍ରଭା ଦେବୀଙ୍କ ବିଷୟ ଭାବି ସେ ଅତ୍ୟନ୍ତ ଆଶଙ୍କିତ ହେଉଥିଲେ ।

ସ୍ୱର୍ଣ୍ଣପ୍ରଭା ବୋହୂ ପାଇଁ କେତେ ଜାତି ପାଟଶାଢ଼ି, ବିଭିନ୍ନ ସୁନା ଅଳଙ୍କାର କିଣି ସାଇତି ରଖିଛନ୍ତି । ମନରେ ତାଙ୍କର ଗୁମୁରି ଉଠେ କେତେ ସୁନେଲି ସ୍ୱପ୍ନ । ବୋହୂ ଆସିଲେ ତାଙ୍କ ହାତକୁ ହାତ ଲଗାଇ କାମ ଉଶ୍ୱାସ କରିଦେବ । ବୋହୂ ଠାକୁର ବାସନ ମାଜିଲେ ସେ ଠାକୁରଙ୍କୁ ଚନ୍ଦନ ପାଣିରେ ଗାଧୋଇ ଦେବେ । ବୋହୂ ଘଣ୍ଟି ବଜାଇଲେ ସେ ଶଙ୍ଖ ଫୁଙ୍କିବେ । ତା କଅଁଳ ହାତକୁ ଧରି ଶିଖାଇଦେବେ ତାଙ୍କ ଆଭିଜାତ୍ୟ ସଂପନ୍ନ ପରିବାରର ସଂସ୍କାର । ସକାଳୁ ବ୍ରାହ୍ମ ମୁହୂର୍ତ୍ତରେ ଗାଧୋଇବା, ଗୀତା ଭାଗବତ ପଢ଼ିବା ଓ ବିଭିନ୍ନ ପୂଜା

ପଦ୍ଧତି ଶିଖେଇଦେବେ । ବାହାଘର ଅଷ୍ଟମଙ୍ଗୁଳି ପରେ ବୋହୂକୁ ନେଇଯିବେ ଗାଁକୁ । ଚିହ୍ନାଇ ଦେବେ ଇଶାଣ କୋଣ, ପରିବାରର ଇଷ୍ଟ ଦେବୀ । କୁଆଁରପୁନେଇଁରେ ତାଙ୍କ ପରିବାରର ମୁଖ୍ୟ ପୂଜା ମା' ଲକ୍ଷ୍ମୀଙ୍କର ପୂଜା । ସୁନ୍ଦର ଆକର୍ଷଣୀୟ ମେଢ଼ । ଦେବୀ ବିଭିନ୍ନ ସ୍ୱର୍ଣ୍ଣ ଅଳଙ୍କାରରେ କିପରି ଝଲସୁଥାନ୍ତି । ତିନିଦିନ ଧରି ଯାତ୍ରା ହୁଏ ତାଙ୍କ ସାମ୍ନାରେ ମହାସମାରୋହରେ । ପୂଜାରେ ମା'ଲକ୍ଷ୍ମୀଙ୍କୁ ତାଙ୍କ ବୋହୂ ବନ୍ଦାପନା କରିବ ଭକ୍ତିପୂତ ହୃଦୟରେ । ବନାରସୀ ପାଟ ଓ ସ୍ୱର୍ଣ୍ଣାଳଙ୍କାରରେ ଝଲସୁଥିବ ତାଙ୍କ ବୋହୂ । ସାଇ ଭାଇ ପରିବାର ଓ ଗାଆଁ ଲୋକମାନଙ୍କର ଆଖିମାନେ ସ୍ଥିର ହୋଇଯିବେ ସୁନାନାକି ବୋହୂର ସ୍ୱର୍ଣ୍ଣାଭ ମୁଖମଣ୍ଡଳରେ । ଭାବିଲା ବେଳେ ସ୍ୱର୍ଣ୍ଣପ୍ରଭାଙ୍କ ମୁଖମଣ୍ଡଳରୁ ଆଞ୍ଜୁଳା ଆଞ୍ଜୁଳା ଜ୍ୟୋସ୍ନା ଝରି ପଡୁଥାଏ । ଉକୁଟି ଉଠେ ସ୍ମିତ ହାସ୍ୟଟିଏ । ସେ ଜଡ଼ସଡ଼ ହୋଇଯାନ୍ତି ସୁନେଲି ସ୍ୱପ୍ନର ଭିଜାପଣରେ । ଆନନ୍ଦ ବିଧୁର ଭାବାବେଗର ପୁଲକ ସଞ୍ଚରିଯାଏ ତାଙ୍କ ଭିତରେ ।

ସ୍ୱର୍ଣ୍ଣପ୍ରଭା ଧର୍ମପ୍ରାଣା ମହିଳା । ରାତି ୪ଟାରୁ ଉଠି ଗାଧୋଇ ପାଧୋଇ ଠାକୁରଙ୍କର ସ୍ନାନ ଓ ପୂଜା ସମାପନ କରନ୍ତି । ହୃଦୟ ଆନନ୍ଦ ଓ ସନ୍ତୋଷରେ ହୁଏ ଗଦଗଦ । ଧୂପଦୀପ ଝୁଣାର ପବିତ୍ର ସୁଗନ୍ଧରେ ଆମୋଦିତ ହୁଏ ପରିବେଶ । ପ୍ରାର୍ଥନାର ଶୁଦ୍ଧ, ପୂତ, ପବିତ୍ର ଧ୍ୱନିରେ ଅନୁରଣିତ ହୁଏ ପୂଜାଘର । ଯେତେ ଜରୁରୀ କାର୍ଯ୍ୟ ଥିଲେବି ପୂଜା କାମରେ କେବେ ସାଲିସ୍ କରନ୍ତିନି ସ୍ୱର୍ଣ୍ଣ ।

ସ୍ୱର୍ଣ୍ଣଙ୍କ ପାଇଁ ସାଗରଙ୍କ ମନ ଭିତରଟା କୋରି ହୋଇଯାଉଥିଲା । ସ୍ୱର୍ଣ୍ଣପ୍ରଭା କାଉଁରିଆ କାଠି । ଭାଙ୍ଗିଯିବେ ପଛେ, ନଇଁବେ ନାହିଁ । ତାଙ୍କ ଘର, ଦ୍ୱାର, ବୈଠକଘର ଓ ଶୋଇବାଘର ସବୁଠି ଦେବାଦେବୀଙ୍କ ଫଟୋଚିତ୍ର । ଘର ଭିତରେ ମନ୍ଦିରର ପରିବେଶ । ଖ୍ରୀଷ୍ଟିୟାନ ଝିଅଟା ବୋହୂ ହେଲେ ସେ କେବେ ତାକୁ ପୂରାଇଦେବେନି ତାଙ୍କ ହାତଗଢ଼ା ଏହି ମନ୍ଦିରକୁ । ଘରେ ସୃଷ୍ଟି କରିବେ ପ୍ରଳୟ । ଆଖିରୁ ବହିଯିବ ଅସରନ୍ତି ଲୁହର ତଟିନୀ ।

କିନ୍ତୁ ସାଗର ବଡ଼ ଅଗଡ଼ଧାତୁଆ । ଉଠନ୍ତି ସକାଳ ସାତଟାରେ, ନିଦ ଭଲକରି ପାକଳ ହେଲା ପରେ । ଈଶ୍ୱରଙ୍କ ପ୍ରତି ତାଙ୍କର ଅଗାଧ ବିଶ୍ୱାସ ଥିଲେବି ଓ ତାଙ୍କ ମନ ଜଗଦୀଶ୍ୱରଙ୍କ ପଦ ପଙ୍କଜରେ ସମର୍ପିତ ହୋଇଥିଲେବି ତାଙ୍କ ଅମାନିଆ ଅଳସୁଆ ଶରୀରଟା ବୋଲ ମାନେନା । ସେ ଭାବନ୍ତି, ଧର୍ମପ୍ରାଣା ସ୍ୱର୍ଣ୍ଣପ୍ରଭାଙ୍କର ପୂଜାର୍ଚ୍ଚନା ଯୋଗୁଁ ଈଶ୍ୱର ତାଙ୍କୁ ବିପଦ ଆପଦ ଓ ସଙ୍କଟରୁ ରକ୍ଷା କରନ୍ତି ।

ସାଗରବାବୁଙ୍କ ମନ ଲବଣୀ ଭଳି ନମନୀୟ । ସେ ବାସ୍ତବତା ସହିତ ସାଲିସ୍

କରନ୍ତି ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ । ସେ ମନକୁ ବୁଝାଇ ଦେଇଥିଲେ । ଯାହା ହେଲେତ ପୁଅ । ପୁଣି ଗୋଟିଏ । ଯଦି ଜିଦ୍ ଧରିବ, ସେ ତା ଇଚ୍ଛାରେ ବାହା ହେଉ । ପ୍ରତିବନ୍ଧକ ସୃଷ୍ଟି କଲେ ସେ ବରଂ ଆମକୁ ଛାଡ଼ିଦେବ । କିନ୍ତୁ ତାକୁ ଛାଡ଼ିବନି । ବିବାହରେ ଅନ୍ତରାୟ ସୃଷ୍ଟି କଲେ କାଳେ କିଛି ଅଘଟଣ ଘଟାଇବ ସେହି ଚିନ୍ତାରେ ମ୍ରିୟମାଣ ହେଉଥିଲେ ସାଗର ।

ସ୍ୱର୍ଣ୍ଣ ସବୁଦିନ ପରି ଅପରାହ୍ନ ୪ଟା ବେଳେ ସେଦିନ ବୁଲି ଯାଇଥିଲେ ଘର ନିକଟସ୍ଥ ପାର୍କକୁ । ବିଭିନ୍ନ ପଡୋଶୀ ଘରର ମହିଳା ମଧ୍ୟ ତାଙ୍କ ସାଙ୍ଗରେ ବୁଲନ୍ତି । ଅସରା ଗପର ପେଡ଼ି ଖୋଲିଯାଏ ଆପେ ଆପେ । ଯେତେ ଗପିଲେ ବି ସରେନା ସେ ଗପ । ସେମାନଙ୍କୁ ଲାଗେ ଯେମିତି ଆହୁରି ରହିଗଲା କହିବାକୁ । ତାରି ଭିତରକୁ ଗୁରୁଣ୍ଡି ଗୁରୁଣ୍ଡି ପଶିଆସେ ପର ନିନ୍ଦା, ପର ଚର୍ଚ୍ଚା । ସ୍ୱର୍ଣ୍ଣ ସବୁ ଶୁଣନ୍ତି । କିଛି କହନ୍ତିନି । ମୁହଁରେ ଖେଳୁଥାଏ କେରାଏ ମଲ୍ଲୀଫୁଲିଆ ଶୁଭ୍ର ହସ । ପଡୋଶୀ ଧଳ ବାବୁଙ୍କ ସ୍ତ୍ରୀ ତାଙ୍କୁ ପାର୍କର ଏକ ପାର୍ଶ୍ୱକୁ ଡାକିନେଇ ଫିସ୍ ଫିସ୍ କଣ୍ଠରେ କହିଲେ- ମୋ ସାନପୁଅ ଏଇ ମାସେ ହେଲା ଇନ୍‌ଫୋସିସରେ ଚାକିରି କରୁଛି । ସିଏ କହୁଥିଲା, ସଂଗ୍ରାମ ଭାଇ ଗୋଟେ ଖ୍ରୀଷ୍ଟିୟାନ ଝିଅକୁ ଭଲପାଉଛି । ତାକୁ ଧରି ପୁରୀ, କୋଣାର୍କ, ଚିଲିକା ସବୁ ଆଡେ ଯାଉଛି । ଖ୍ରୀଷ୍ଟିୟାନ୍ ଝିଅକୁ ତମେ କଣ ବୋହୂ କରିବ ?

ଧଳ ବାବୁଙ୍କ ସ୍ତ୍ରୀର କଥାଗୁଡ଼ାକ ଖଣ୍ଡା ଧାର ପରି ସ୍ୱର୍ଣ୍ଣଙ୍କ ଦେହରେ ଗଳିଯାଉଥିଲା ।

ସ୍ୱର୍ଣ୍ଣ ଚିରାଚରିତ ଢ଼ଙ୍ଗରେ କିଛି ନ କହି ଟିକେ ହସି ଦେଇଥିଲେ । ହସ ଆଢୁଆଳରେ ଲୁଚି ରହିଥିଲା ଯନ୍ତ୍ରଣା ଓ କାରୁଣ୍ୟର କଳା ମେଘ । ଆଉ କଥା ନ ବଢ଼ାଇ କହିଲେ - ମୁଁ ଘରକୁ ଯାଉଛି । ସଂଗ୍ରାମର ବାପା ଭୋକରେ ଆଉଟୁ ପାଉଟୁ ହେଉଥିବେ ।

ସେ ସିନା ଚାଲି ଆସିଲେ ଅଶ୍ୱସ୍ତିକର ପ୍ରଶ୍ନ ଓ ପରିବେଶରୁ ମୁକ୍ତି ପାଇବା ପାଇଁ, କିନ୍ତୁ ଧଳବାବୁଙ୍କ ସ୍ତ୍ରୀଙ୍କ ଫିସ୍ ଫିସ୍ ଶବ୍ଦଗୁଡ଼ା ତାଙ୍କ କାନ ପାଖରେ ଗୁଞ୍ଜରିତ ହେଉଥିଲା । ଜୀବନଟା ମୁହୂର୍ତ୍ତକ ପାଇଁ ଲାଗିଥିଲା ଦୁର୍ବିସହ । ତାଙ୍କୁ ସେ ଭଲ ଭାବରେ ଜାଣନ୍ତି । ତାଙ୍କ ପେଟରେ କଥା ରହେନା । ମସଲାଦିଆ କଥା ପାଇଲେ କାହାକୁ କହିବ ନାହିଁ ବୋଲି ତାଗିଦ୍ କରି ଫିସ୍ ଫିସ୍ କରି ସମସ୍ତଙ୍କୁ କହନ୍ତି । ସେ ଭାବୁଥିଲେ - କଥା ଏବେ ଦାଣ୍ଡରେ ପଡ଼ି ହାଟରେ ଗଡ଼ିଲାଣି । ଲୁଚାଇ ଲାଭ କଣ ? ଲୋକଙ୍କ ପାଟି ବନ୍ଦ କରିବା କଣ ସମ୍ଭବ ।

ସ୍ୱର୍ଣ୍ଣ ଭାଙ୍ଗି ପଡୁଥିଲେ । ଆଖି ତାଙ୍କର ଲୁହରେ ଛଳ ଛଳ । ସ୍ୱପ୍ନର ରାଜମହଲ ପରସ୍ତ ପରସ୍ତ ହୋଇ ଭାଙ୍ଗି ପଡୁଥିଲା ଆଖିର ସାମ୍ନାରେ । ସନ୍ଧ୍ୟାରେ ସ୍ୱର୍ଣ୍ଣ ଜିଦ୍ କଲେ ସାଗରଙ୍କ ପାଖରେ-ସଂଗ୍ରାମକୁ ଫୋନ୍ କର, ବର୍ତ୍ତମାନ ।

ସାଗର ଫୋନ୍‌ରେ ଭଲ ମନ୍ଦ ପଚାରି ସାରିବା ପରେ ବାଷ୍ପାକୁଳ କଣ୍ଠରେ ପଚାରିଲେ-ମୁଁ ଶୁଣିଲି, ତୁ ଜଣେ ଖ୍ରୀଷ୍ଟିୟାନ୍ ଝିଅ ସହିତ ମାର୍କେଟ୍, ମଲ୍, ପୁରୀ, କୋଣାର୍କ ଆଦି ବୁଲୁଛୁ । ଏହା କ'ଣ ସତ୍ୟ ?

- ହଁ ବାପା, ତାହା ସତ । ସେ ମୋର ଗାର୍ଲ ଫ୍ରେଣ୍ଡ । ସେ ଝିଅର ନାଁ ଆଞ୍ଜେଲିନା । ବହୁତ ଭଲ ଝିଅ । ଶାନ୍ତ ଶିଷ୍ଟ, ନମ୍ର । ଆମରି ଅଫିସ୍‌ରେ ମୋର ସହକର୍ମୀ । ତାର ବାପା, ମା ବହୁତ ଭଲ ଲୋକ ।

ସଂଗ୍ରାମ ଆଞ୍ଜେଲିନା ଓ ତାର ପରିବାର ସପକ୍ଷରେ ଏକ ସାରଗର୍ଭକ ଭାଷଣ ଦେବା ଆରମ୍ଭ କରିବା ବେଳକୁ ସାଗର ବାବୁ ଫୋନ୍ କାଟି ଦେଇଥିଲେ ।

ସାଗର ଓ ସ୍ୱର୍ଣ୍ଣଙ୍କ ପାଦ ତଳୁ ମାଟି ଖସି ଯାଉଥିଲା । ସୋଫା ଉପରେ ଦୁହେଁ ପ୍ରାୟ ଏକ ଘଣ୍ଟା ବସିଥିଲେ ନିରବରେ । ନିରବତାର ଭାଷାରେ ପରସ୍ପରକୁ କହି ଯାଉଥିଲେ ଅନେକ କଥା । ସେମାନଙ୍କର କାଲିର ସ୍ୱପ୍ନ ଆଉ ଆଜିର ନିଛକ ବାସ୍ତବତା ସେମାନଙ୍କ ହୃଦୟ ତନ୍ତ୍ରୀକୁ ଖିନ୍‌ଭିନ୍ କରୁଥିଲା ।

ସାଗର ବାବୁ ଗାର୍ଲଫ୍ରେଣ୍ଡର ସଂଜ୍ଞା ଖୋଜି ପାଉନଥିଲେ । ଆଜିର ଅଭିଧାନର ସେ ଶବ୍ଦର ଅର୍ଥ ତାଙ୍କୁ ବିଚଳିତ କରୁଥିଲା । ଗାର୍ଲଫ୍ରେଣ୍ଡ ସ୍ତ୍ରୀର ପ୍ରଥମ ପରିଚୟ ଭଳି ତାଙ୍କୁ ମନେ ହେଉଥିଲା ।

ସେ ମନେ ପକାଉଥିଲେ - ସ୍ୱର୍ଣ୍ଣ ଯେତେବେଳେ କଟକର ତଳ ତେଲେଙ୍ଗାବଜାରେ ଥିବା ତାଙ୍କ ଘରକୁ ଯାଆନ୍ତି, ସେଠାରୁ ଫେରିଲାବେଳେ ସେ ଗୋଟିଏ ରିକ୍ସାରରେ ସାଗରଙ୍କ ସହ ବସିବାକୁ ଅମଙ୍ଗ ହୁଅନ୍ତି । ସାଗରଙ୍କୁ ପ୍ରାୟ ଅଧକିଲୋମିଟର ବାଟ ରିକ୍ସା ପଛେ ପଛେ ପାଦରେ ଚାଲିବାକୁ ପଡେ । ସ୍ୱର୍ଣ୍ଣ ରିକ୍ସାର କନା ଟେକି ଯେତେବେଳେ ଭଲ କରି ନୀରିକ୍ଷଣ କରନ୍ତି ଯେ ତାଙ୍କ ବାପା, ଭାଇ ଭାଉଜ ଆଉ ଜମା ଦେଖାଯାଉ ନାହାଁନ୍ତି, ସେତେବେଳେ ସାଗରଙ୍କୁ ରିକ୍ସାରେ ପାଖରେ ବସିବାକୁ କହନ୍ତି । ବାହାଘରର ପ୍ରଥମ ଛଅମାସ ଦିନରେ ସ୍ୱର୍ଣ୍ଣଙ୍କ ସାଙ୍ଗରେ ପଦୁଟିଏ କଥା ହେବାର ସୁଯୋଗ ମିଳେନା । ବିବାହିତ ଦମ୍ପତିଙ୍କ ପାଇଁ ଏତେ କଟକଣା ଥିଲା ।

ଏବେ ଅବିବାହିତ ପୁଅଝିଅଙ୍କ ଅବାଧ ମିଳାମିଶା ତାଙ୍କୁ ଦୁର୍ବୋଧ୍ୟ ଲାଗୁଥିଲା । ବଦଳି

ଯାଇଛି ସମୟ । ବଦଳି ଯାଇଛି ମୂଲ୍ୟବୋଧ । ବଦଳି ଯାଇଛି ସଂପର୍କର ସଂଜ୍ଞା । ଆଧୁନିକ ଅଭିଧାନରେ ଗାର୍ଲଫ୍ରେଣ୍ଡ ଆଉ ବୟଫ୍ରେଣ୍ଡ ଭଳି ନୂଆ ନୂଆ ଶବ୍ଦ ତାଙ୍କର ସ୍ଥାନ ସଂରକ୍ଷଣ କରିଛନ୍ତି । ବାହା ନ ହୋଇ ଦୁହେଁ ଦୁହିଙ୍କର ଦିନର ସାଥୀ ଓ ରାତିର ସ୍ୱପ୍ନ ହୋଇ ଜୀବନର ସବୁଠାରୁ ତରଳ ଆଉ ଢ଼ଳ ଢ଼ଳ ସମୟତକ କଟାଇ ଚାଲିଛନ୍ତି ।

ତାଙ୍କ ସମୟରେ ବି ପ୍ରେମ ଥିଲା । ଆଦ୍ୟ ଯୌବନର ମଳୟ ଛୁଇଁଲେ ତନୁ ମନ ପୁଲକିତ ହୁଏ । ମନରେ ଡେଣା ଲାଗେ, ଆପେ ଆପେ ପଢ଼ି ହୋଇଯାଏ କେତେ ଅପଢ଼ା ପାଠ । ସବୁ ମାନସିକ ସଂଯମତାର ଇଲାକା ଡେଇଁ ପଶିଆସେ ଭାବପ୍ରବଣତାର ମଳୟ । ସେତେବେଳେ କେଉଁ ବହି ଭିତରେ କାଗଜରେ ଲେଖା ହୋଇଥିବା କେତୋଟି ଶବ୍ଦ ଥିଲା ପ୍ରେମର ବାର୍ତ୍ତାବହ । ସଲ୍ଲଜ ନିରବ ଚାହାଣୀରେ ଗତିଶୀଳ ଥିଲା ଅସରନ୍ତି ଗୋପନ କଥା । କାଗଜ ଖଣ୍ଡିକ ଦୁର୍ଯୋଗକୁ ବାପା, ଦାଦାଙ୍କ ହାତରେ ପଡ଼ିଗଲେ ସୃଷ୍ଟି ହେଉଥିଲା ମହାପ୍ରଳୟ । ଅଙ୍କୁରୋଦମ୍ ହେଉଥିବା ପ୍ରେମର କ୍ଷୁଦ୍ରକାୟ ଦ୍ରୁମଟି ପ୍ରଳୟର ବାତାବର୍ତ୍ତରେ ହଜାଉଥିଲା ତାର ସତ୍ତା ।

ସାଗରବାବୁ ଓ ସ୍ୱର୍ଣ୍ଣପ୍ରଭା ଏଇ ସିଦ୍ଧାନ୍ତରେ ଉପନୀତ ହେଲେଯେ ସେମାନଙ୍କ ଇଚ୍ଛା ବିରୁଦ୍ଧରେ ସଂଗ୍ରାମ ଆଞ୍ଜେଲିନାକୁ ଖୁବ୍ ଶୀଘ୍ର ବିବାହ କରିବାକୁ ଯାଉଛି । ସାଗରବାବୁ ଭାବୁଥିଲେ ଆଞ୍ଜେଲିନାକୁ ବାହା ହୋଇ ଯଦି ସଂଗ୍ରାମ ଖୁସି ହେବ, ତାହେଲେ ସେ କାହିଁକି ବାଧା ଦେବେ । ବାଧା ଦେଲେବି ସେ କ'ଣ ଏ ବାହାଘର ରୋକିପାରିବେ ? ଖାଲି ଲୋକହସା ହେବେ । ଲୋକେ ସହାନଭୂତିର ପ୍ରବଞ୍ଚନାମୟ ଶବ୍ଦ କହି କଟା ଘା'ରେ ଚୂନ ମାରିବେ । ଲୋକ ତ ଦେଖେଇ ଶିଖେଇ କହିବେ, ସଂଗ୍ରାମଟା ଏତେ ଭଲ ପିଲା, ଶେଷକୁ ଏଇଆ କଲା । ବେଦନାକୁ ଛାତିରେ ଜାକି ଧରି ମୁହଁରେ କୃତ୍ରିମ ହସ ଖେଳାଇ ପୁଅ ବୋହୂଙ୍କୁ ସେମାନଙ୍କୁ ଆପଣେଇବାକୁ ପଡିବ । ସାଇ ପଡିଶା, ଭାଇ କୁଟୁମ୍ବଙ୍କ ଆଗରେ ଅଭିନୟ କରିବାକୁ ପଡିବ ଯେ ସେମାନେ ଏ ବାହାଘରରେ ଖୁସି । ସୁନ୍ଦର, ନମ୍ର, ଶିକ୍ଷିତ ଓ ଉଚ୍ଚବେତନ ପାଉଥିବା ବୋହୂ । ଭାଗ୍ୟରେ ଥିଲେ ମିଳେ । ଜିଭଟାକୁ ଭିଡ଼ି ମୋଡ଼ି ଏ ଶବ୍ଦଗୁଡ଼ାକୁ ଉଚ୍ଚାରଣ କରିବାକୁ ପଡିବ । ଯାହା ଅନିବାର୍ଯ୍ୟ, ତାକୁ ହସହସ ବଦନରେ ଗ୍ରହଣ କରିବାକୁ ଉଦ୍ୟମ କରିବା ବୁଦ୍ଧିମାନର କାର୍ଯ୍ୟ । ଭାବପ୍ରବଣତାରେ ଭାସି ନ ଯାଇ ବରଂ ଭାବାବେଗର ସୁଅରେ ବନ୍ଧଟିଏ ବାନ୍ଧିବାକୁ ପଡ଼ିବ । ନ ହେଲେ ଜୀବନ ହୋଇଉଠିବ ଦୁର୍ବିସହ, ଯନ୍ତ୍ରଣା ଜର୍ଜରିତ । ଯାହା ଅବଶ୍ୟମ୍ଭାବୀ, ତାହା ସହିତ ସାଲିସ୍ କରିବାହିଁ ଜୀବନ ।

ସାଗରବାବୁ ଏ ଭଳି ପରାମର୍ଶ ଦେବାକୁ ଆରମ୍ଭ କରୁ କରୁ ଗର୍ଜି ଉଠିଥିଲେ ସ୍ୱର୍ଣ୍ଣ । ସତେ ଯେପରି ଦଶଭୂଜା ମା' ଦୁର୍ଗା । ଆଜି ପର୍ଯ୍ୟନ୍ତ ସେ ସ୍ୱର୍ଣ୍ଣଙ୍କର ଶାନ୍ତ, ସରଳ, ମମତାମୟୀ, ବିଭୁ ପ୍ରେମ ପାଗଳିନୀ ନରୀମୂର୍ତ୍ତିଟି ଦେଖିଥିଲେ । ଆଜି ତାଙ୍କର ଅନ୍ୟରୂପ

ଦେଖି ସେ ଅବାକ୍ ହୋଇଗଲେ । ଆଖିରେ ଖେଳୁଛି କ୍ରୋଧର ଲେଲିହାନ ଶିଖା ଆଉ ଯନ୍ତ୍ରଣାର ଲୋତକ । ଦେଖି ଆସିଥିବା ସ୍ୱପ୍ନର କଳିକାଗୁଡ଼ିକ ପ୍ରସ୍ଫୁଟିତ ହେବା ପୂର୍ବରୁ ବୃନ୍ତଚ୍ୟୁତ ହେଉଥିଲେ ।

ନାଁ, ଏକ ଖ୍ରୀଷ୍ଟିୟାନ ଝିଅ ମୋ ବୋହୂ ହୋଇ ପାରିବନି । ସେ ମୋ ଘରେ ପଶି ପାରିବନି, ଠାକୁର ଘର ତ ଦୂରର କଥା । ସେ ସଂଗ୍ରାମର ସ୍ତ୍ରୀ ହୋଇପାରେ । କିନ୍ତୁ ମୋର ବୋହୂ ନୁହେଁ । ପୁଅ ପାଇଁ ମୁଁ ମୋର ପ୍ରାଣ ପ୍ରିୟ ଠାକୁର, ଇଷ୍ଟଦେବୀ, ମା' ଲକ୍ଷ୍ମୀ, ଘରର ସଂସ୍କାର ଆଉ ପୂର୍ବପୁରୁଷଙ୍କୁ ବଳି ଚଢ଼େଇ ପାରିବନି । ମୁଁ ଭୁଲିଯିବି ସଂଗ୍ରାମକୁ ସବୁଦିନ ପାଇଁ । ମୋ ପାଟିରେ ତା ନାଁ ଧରିବିନି । – ସ୍ୱର୍ଣ୍ଣଙ୍କର କଣ୍ଠରେ ଥିଲା ଅନମନୀୟ ଦୃଢ଼ତା ।

ଯେଉଁ ନାରୀ ମମତାର ସ୍ରୋତସ୍ୱିନୀ, ତା' ଭିତରେ ମଧ୍ୟ ଏଭଳି ଘୃଣା ଓ ବିଦ୍ୱେଷର ପାହାଡ଼ ମୁଣ୍ଡ ଟେକି ପାରେ, ସାଗର ତାହା କଳ୍ପନା କରିପାରୁ ନ ଥିଲେ ।

ସ୍ୱର୍ଣ୍ଣପ୍ରଭା ଆଉ କିଛି କହିବା ଆଗରୁ ଫୋନ୍‌ର ଶବ୍ଦ ଶୁଣି ସାଗର ଫୋନ୍ ଉଠାଇଲେ ।

– ହାଲୋ । ଆଜ୍ଞା ନମସ୍କାର । ମୁଁ ଆଞ୍ଜେଲିନାର ବାପା । ଜନ୍ ଫର୍ଣ୍ଣାଡିସ୍ । ଆଞ୍ଜେଲିନା ଆପଣଙ୍କ ପୁଅ ସଂଗ୍ରାମର ସହକର୍ମୀ । କାଲି ଆପଣ ଘରେ ଅଛନ୍ତି ତ ?

– ହଁ, ଅଛି ।

– ଆପଣଙ୍କ ଘରକୁ କାଲିଯିବି ଦିନ ୧୦ ଟାରୁ ୧୨ଟା ମଧ୍ୟରେ ।

– ନମସ୍କାର ।

ସାଗରବାବୁ ଓ ସ୍ୱର୍ଣ୍ଣଙ୍କର ମୁଣ୍ଡ ଉପରେ ଜମାଟ ବାନ୍ଧୁଥିବା ବରଫର ପାହାଡ଼ ତାର କାୟା ବିସ୍ତାର କରି ଚାଲିଛି ।

ଫର୍ଣ୍ଣାଡିସ୍ ବାବୁ ବାହାଘର ବିଷୟରେ କଥା ହେବାକୁ ଆସୁଛନ୍ତି ନିଶ୍ଚୟ ।– ସାଗରବାବୁଙ୍କ ପାଟିରୁ ଉତୁରି ପଡିଲା ।

– ତୁମେ ତାଙ୍କୁ ମୁହେଁ ମୁହେଁ କହିଦେବ ଏ ବାହାଘର ହୋଇପାରିବନି । ଆମେ ନୈଷ୍ଠିକ ବ୍ରାହ୍ମଣ । ଖ୍ରୀଷ୍ଟିୟାନ୍ ଝିଅ ଆମ ବୋହୂ ହୋଇପାରିବନି ।– ସ୍ୱର୍ଣ୍ଣଙ୍କ କଣ୍ଠରେ ଅଗ୍ନିବର୍ଷୀ ବାଣୀ ।

ପରଦିନ ଶୀତୁଆ ସକାଳ । କୁହୁଡ଼ିରେ ଭର୍ତ୍ତି ହୋଇଛି ରାସ୍ତା, ପରିବେଶ । ଶୀତଳ ପବନ ସାଙ୍ଗରେ ଖୋଲା ଝରକା ଦେଇ ଘର ଭିତରକୁ ପଶି ଆସୁଛି ମେଞ୍ଚା ମେଞ୍ଚା କୁହୁଡ଼ିର ଧୂଆଁ ।

ଦଶଟା ବେଳକୁ କଲିଂ ବେଲ୍ ବାଜିଲା । କାମବାଲି ଆସିଛି ବୋଲି ଭାବି ସ୍ୱର୍ଣ୍ଣ କବାଟ ଖୋଲିଲେ । ସାମ୍ନାରେ ଗୋରା ତକ୍ ତକ୍ ଜଣେ ପ୍ରୌଢ଼ । ସାଙ୍ଗରେ ଏକ ସୁନ୍ଦର, ତନୁପାତେଳୀ ଝିଅ । ଦେହରେ ସାଲଓ୍ୱାର୍ ପଞ୍ଜାବୀ । ମୁହଁରେ ଖିଲି ଖିଲି ହସ ଫକ୍ ଫକ୍ ହୋଇ ଡେଉଁଛନ୍ତି । ପୋଟଳଚିରା ଆଖିରେ ସ୍ୱପ୍ନର ଲହଡ଼ି । ସଜଫୁଟା ଗୋଲାପପରି ମୁହଁଟି ପଛଆଡ଼େ ନାଚିନାଚି ଖେଳୁଥିଲା କଳା କେଶର ଝରଣା । ଓଠରେ ଦୁଷ୍ଟାମୀର ପାତଳା, ମୁଲାୟମ ହସ ।

ସ୍ୱର୍ଣ୍ଣ ଅନୁମାନ କରି ନେଇ କିଛି ନ କହି ତର ତର ହୋଇ ପଶିଗଲେ ଠାକୁର ଘରକୁ । ଜଗଦୀଶ୍ୱରଙ୍କର ପଦପଙ୍କଜରେ କରୁଥାନ୍ତି ଅଳି ଲୁହ ଛଳ ଛଳ ଆଖିରେ । ଆସନ୍ନ ସଙ୍କଟରୁ ରକ୍ଷା କରିବା ପାଇଁ ।

ସାଗରବାବୁ ସେମାନଙ୍କୁ ସୋଫାରେ ବସିବାକୁ କହିଲେ । ଶବ୍ଦଗୁଡ଼ିକୁ ପେଲିପାଲି ପାଟିର ବାହାରକୁ ଫିଙ୍ଗି ଦେବାକୁ ଚେଷ୍ଟା କରୁଥାନ୍ତି ।

ଘରେ କିଛି ସମୟର ନିରବତା । ଅଶ୍ୱସ୍ତିକର ସେ ନିରବତାର ରଙ୍ଗ ଓ ଭାଷା । ସାଗରବାବୁ ଅବିଚଳିତ ଦେଖା ଯାଉଥିଲେବି ତାଙ୍କ ଭିତରେ ବହୁଥିଲା ଅବିଶ୍ରାନ୍ତ ଝଡ଼ । ସ୍ୱର୍ଣ୍ଣ ଠାକୁର ଘର କବାଟ ଫାଙ୍କରୁ ଚାହୁଁଥିଲେ ଶ୍ୱେତ ନାଗୁଣୀ ଆଞ୍ଜେଲିନାକୁ । ତାଙ୍କ ମନରେ ବେଦନା ଆଉ ବିଦ୍ୱେଷ, ଭୟ, ଆଶଙ୍କା ସବୁ ଫେଣ୍ଟାଫେଣ୍ଟି ହେଉଥିଲେ । ତାଙ୍କର ଦୁଇକାନ ଓ ଦୁଇ ଆଖି ଅତି ବିକଳରେ ପ୍ରସାରିତ ହୋଇ ପହଁରି ଚାଲିଥିଲେ ଡ୍ରଇଁ ରୁମ୍‌ରେ ।

ଡ୍ରଇଁ ରୁମର ସୋଫା ଉପରେ ବସିପଡ଼ିଲେ ଜନ୍ । କହିଲେ – ମୁଁ ଜନ୍ ଫର୍ଣ୍ଣାଡିସ । ଏ ମୋର ଝିଅ ଆଞ୍ଜେଲିନା । ଇନ୍‌ଫୋସିସ୍‌ରେ ଚାକିରି କରେ । ଆପଣଙ୍କ ପୁଅ ସଂଗ୍ରାମର ସହକର୍ମୀ ।

ତାପରେ ଏକ ବିବାହ ନିମନ୍ତ୍ରଣ ପତ୍ରରେ ଲେଖିଲେ ସାଗରଙ୍କ ପୂରା ନାମ । ଆଞ୍ଜେଲିନା ଆସ୍ତେ ଆସ୍ତେ ଇସାରା କରି ଦେଉଥିଲା ସାଗରଙ୍କ ନାମ । ସାଗରଙ୍କ ହାତକୁ କାର୍ଡଟି ବଢ଼ାଇ ଦେଇ ଜନ୍ କହିଲେ – ଆଉ ୧୫ ଦିନ ପରେ ହୋଟେଲ୍ ମେ ଫେୟାରରେ ମୋ ଏଇ ଝିଅର ବାହାଘର । ଆପଣମାନେ ନିଶ୍ଚୟ ଆସିବେ ।

– ବାହାଘର !– ଆଶ୍ଚର୍ଯ୍ୟ ଓ ଭୟମିଶା ସ୍ୱରରେ ବାହାରି ଆସିଲା ସାଗରଙ୍କର କଣ୍ଠରୁ ।

– କାହା ସାଙ୍ଗରେ ଆପଣଙ୍କ ଝିଅର ବାହାଘର ? – ସାଗରଙ୍କ ମୁହଁରେ ଆଶଙ୍କାର ଝଡ଼ ।

- ଆର୍ଣ୍ଣୋଲ୍ଡ, ମେକାନିକାଲ୍ ଇଂଜିନିୟର । ହାଇଦ୍ରାବାଦ୍‌ରେ ଏଲ୍ ଏଣ୍ଡ ଟିରେ ଚାକିରି କରୁଛି ।

- ବହୁତ ଭଲ ହେଲା ! -ଆଶ୍ୱସ୍ତିର ଏକ ଦୀର୍ଘଶ୍ୱାସ ବାହାରି ଆସିଲା ସାଗରଙ୍କ ହୃଦୟର ଅନ୍ଦର ମହଲରୁ ।

ଆଞ୍ଜେଲିନା କହିଲା - ମଉସା, ଆପଣ ମାଉସୀଙ୍କୁ ନେଇ ନିଶ୍ଚୟ ଆସିବେ । ସଂଗ୍ରାମ କହୁଥିଲେ ଆପଣମାନେ ନିରାମିଷାସୀ । ପିଆଜ ରସୁଣ ଖାଆନ୍ତିନି । ବିନା ପିଆଜ ରସୁଣ ପାଇଁ ଆମର ସ୍ୱତନ୍ତ୍ର କାଉଣ୍ଟର୍ ରହିବ । ସଂଗ୍ରାମଙ୍କ ସାଙ୍ଗରେ କଥା ହୋଇଥିଲି ଟେଲିଫୋନ୍‌ରେ । ସେ ଆଉ ପାଞ୍ଚଦିନ ପରେ ଭୁବନେଶ୍ୱର ଫେରିବେ । ସେ ଆସିଲେ ଆମେ ବାହାଘର ପାଇଁ ସପିଙ୍ଗ୍ କରିବୁ । ବାପା ଏ ସବୁ କାମ ପାରନ୍ତିନି । ଆମେତ ଦୁଇ ଭଉଣୀ । ସବୁ କାମ ପାଇଁ ସଂଗ୍ରାମଙ୍କ ଉପରେ ଡିପେଣ୍ଡ କରିବୁ । ସଂଗ୍ରାମ ଭାରି ଏଣ୍ଟରପ୍ରାଇଜିଂ । ସବୁ ଭଲରେ ମ୍ୟାନେଜ୍ କରିନେବେ ।

ଠାକୁରଘରୁ ଦୌଡ଼ି ଆସିଲେ ସ୍ୱର୍ଣ୍ଣପ୍ରଭା । ଆନନ୍ଦର ଆତିଶଯ୍ୟରେ କୋଳେଇ ନେଲେ ଆଞ୍ଜେଲିନାକୁ । ମମତାର ଢ଼େଉ ବନ୍ଧ ଉଛୁଳି ଓଦା କରିଦେଉଥିଲା ଆଞ୍ଜେଲିନାକୁ । ମୁଣ୍ଡ ଉପରେ ଜମି ଉଠିଥିବା ବରଫ ପାହାଡ଼ଟି ଦ୍ରୁତ ଗତିରେ ତରଳି ଯାଉଥିଲା ! କ୍ଷଣକ ଆଗରୁ ଯାହା ପାଇଁ ଥିଲା ଘୃଣା ଓ ବିଦ୍ୱେଷର ପାହାଡ଼ ତା ପାଇଁ କଳକଳ ହୋଇ ବହିଯାଉଛି ସ୍ନେହ ଓ ଶୁଭେଚ୍ଛାର ପାହାଡ଼ି ଝରଣା । ବହୁ ଦିନ ପରେ ମନ ଖୋଲି ହସୁଥିଲେ ସ୍ୱର୍ଣ୍ଣପ୍ରଭା । ସେ ହସରୁ ଝରି ପଡୁଥିଲା ସ୍ୱର୍ଣ୍ଣାଭ ଖୁସିର ଧାରା ।

ସ୍ୱର୍ଣ୍ଣପ୍ରଭା ଠାକୁର ଘରେ ପ୍ରଭୁଙ୍କ ପାଖରେ କୃତଜ୍ଞତାରେ ବତୁରି ଯାଉଥିଲେ । ଲୋଟି ପଡିଥିଲେ ଈଶ୍ୱରଙ୍କ ପଦପଙ୍କଜରେ ।

ଦୁହିଁଙ୍କର ଥୁଣ୍ଟାମନରେ ପତ୍ର କଅଁଳିବାକୁ ଆରମ୍ଭ କରିଥିଲା ।

ଜନ୍ ବାବୁ ଆଉ ଆଞ୍ଜେଲିନା ଚାଲିଗଲାପରେ ସାଗର ଆନନ୍ଦର ଆତିଶଯ୍ୟରେ ଫାଟି ପଡୁଥିଲେ । ତାଙ୍କ ମନ ଆକାଶରେ ଉଠିଥିବା ଅବିଶ୍ରାନ୍ତ ଝଡ଼ ହୋଇଥିଲା ଶାନ୍ତ । ଉଦିତ ହୋଇଥିଲେ ଅରୁଣିମାରେ ଝଲସୁଥିବା ସୂର୍ଯ୍ୟ । ସେ ଖୋଜୁଥିଲେ ଆଧୁନିକ ଦୁନିଆର ନବୀନ ଅଭିଧାନରେ ନୂଆ ନୂଆ ସଂପର୍କର ସଂଜ୍ଞା ଓ ପରିଭାଷା, ରୂପ ଓ ରଂଗ, ରସ ଓ ଛନ୍ଦ ।

ତାଙ୍କ ଘର ଓ ପରିବେଶକୁ ଧସେଇ ପଶିଥିବା ଶୀତ ସକାଳର କୁହୁଡ଼ି ଝରକା ଫାଙ୍କରୁ ଆସୁଥିବା ସୂର୍ଯ୍ୟକିରଣର ସ୍ପର୍ଶରେ ଦ୍ରୁତ ବେଗରେ ଅପସରି ଯାଉଥିଲେ ।



*(‘ସମାରୋହ’ ପତ୍ରିକାର ୨୦୧୮ ନଭେମ୍ବର ସଂଖ୍ୟାରେ ପ୍ରକାଶିତ)*

# ଆଉ ଜଣେ କୁନ୍ତୀ

ରାନୁର ଅସମ୍ଭବ ଜିଦ୍ ଆଗରେ ତାର ମା ସୁଷମାଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଛି । ସରଳ, ନମ୍ରଭାଷୀ ଝିଅଟାର ଅଭୂତପୂର୍ବ ପରିବର୍ତ୍ତନ । ଜିଦ୍‌ରେ ଅଚଳ, ଅଟଳ । ଆଜି ପର୍ଯ୍ୟନ୍ତ ବାପା, ମାଆଙ୍କ କଥାକୁ ବିନା ଦ୍ୱିଧାରେ ମାନି ଯାଉଥିବା ଝିଅଟି ଆଜି ହୋଇଛି ଅମାନିଆ ।

ଲୁହ ଛଳଛଳ ଆଖିରେ ସୁଷମା କହି ଚାଲିଛନ୍ତି - ମାଆଲୋ ! ଆମ ଆଡକୁ ଟିକେ ଅନା । କେତେ ସ୍ନେହ, ଜେଜେ, ଜେଜେମା, ଅଜା, ଆଈ, ମାମୁ ମାଇଁଙ୍କର । ସମସ୍ତେ ତୋ ବାହାଘର ଦେଖିବାକୁ କେତେ ଆଶା କରି ଅନାଇଛନ୍ତି । ତୁ ସେ ଖ୍ରୀଷ୍ଟିୟାନ୍ ପିଲାଟିକୁ ବାହା ହେଲେ ସମସ୍ତେ ଭାଙ୍ଗି ପଡିବେ । ତୁ ତ ତୋ ବାପାଙ୍କୁ ଜାଣିଛୁ । ତାଙ୍କ ପ୍ରାଣକୁ ବହୁତ ଆଘାତ ଲାଗିବ ।

ରାନୁ ନିରବ, ନିସ୍ପନ୍ଦ ଓ ନିର୍ବାକ । ଗୃହର ଚତୁର୍ଦ୍ଦିଗରେ ଯେପରି କାଳର କଷାଘାତରେ କାରୁଣ୍ୟର କଳା ବାଦଲ - ସେ ପିଲାଟା ଛୋଟ ପ୍ରାଇଭେଟ୍ କଂପାନୀରେ କ୍ଲର୍କ; କେତେ ବା ଦରମା ? ଜାଣି ଜାଣି ତୋର ଭବିଷ୍ୟତ ଜୀବନକୁ ଅନିଶ୍ଚିତାର ଧୂଆଁ ଭିତରକୁ ଠେଲି ଦେନା । ଆମେ ଆଭିଜାତ୍ୟ ସଂପନ୍ନ ନୈଷ୍ଠିକ ବ୍ରାହ୍ମଣ । ଅନ୍ୟ ଧର୍ମର ପିଲାର ତୋ ସହିତ ବାହାଘର ହେଲେ ଆମେ ସାଇ ଭାଇ ବନ୍ଧୁବାନ୍ଧବରେ କିଭଳି ମୁହଁ ଦେଖେଇବୁ ? ଲଜ୍ଜ୍ୟାରେ ଆମ ମୁଣ୍ଡ ନଇଁଯିବ । ଆଖିରୁ ବହି ଚାଲିବ ଲୁହର ଝରଣା ।

ରାନୁ ଶିଳ୍ପପତି ରାଧାମୋହନ ଷଡଙ୍ଗୀଙ୍କର ବଡ଼ ଝିଅ । ଆଇ.ଟି.ଆର ଇଞ୍ଜିନିୟରିଂ କଲେଜରେ ଶିକ୍ଷା ସମାପ୍ତ କରି କଲିକତାରେ ଟି.ସି.ଏସ୍‌ରେ ଚାକିରି କରିଛି । ସଲ୍ଟଲେକ୍‌ରେ ପେଇଂ ଗେଷ୍ଟ ହୋଇ ରହୁଥିବା ସମୟରେ ସୁରେଶ ମାଥ୍ୟୁସ ସହିତ ଦେଖା ହୋଇଥିଲା । ମର୍ଣ୍ଣିଂୱାକ୍ ସମୟରେ ପରିଚୟ । ସଂପର୍କରୁ ଆତ୍ମୀୟତା । ମାଥ୍ୟୁସର ସୁନ୍ଦର ଚେହେରା, ବଳିଷ୍ଠ ବ୍ୟକ୍ତିତ୍ୱ, କଥା କୁହା ଆଖି, ବକ୍ତବ୍ୟ ଉପସ୍ଥାପନାର ଶୈଳୀରେ ମୁଗ୍ଧ ହୋଇଥିଲା ରାନୁ । ତା ଠାରୁ ଶିଖିଲା ପ୍ରେମର ସଜ୍ଞା, ପ୍ରେମର ପରିଭାଷା, ଜୀବନର ରୂପ, ରଂଗ, ରସ ଓ ଛନ୍ଦ । ସେ ପଢ଼ିଲା ଅପଢ଼ା ପାଠ, ଦେଖିଲା ଏକ ନୂଆ ସ୍ୱପ୍ନିଳ ଦୁନିଆର ରଂଗିନ୍ ଇଲାକା, ଶୁଣିଲା ବଂଶୀର ହୃଦୟସ୍ପର୍ଶି ସ୍ୱନ । ମାଥ୍ୟୁସ ସହିତ ବିବାହ ବନ୍ଧନରେ ବାନ୍ଧିହେବା ପାଇଁ କଲା ଆଗ୍ନେୟ ଶପଥ ।

କଲିକତାରୁ ପୂଜାଛୁଟୀରେ ଘରକୁ ଆସିବା ପରେ ତାକୁ ଛାଡି ନାହାଁନ୍ତି ରାଧାମୋହନ ଓ ସୁଷମା । ପ୍ରାୟ ଏକ ମାସ ଧରି ଜାରି ରଖିଥିଲେ ନିରବିଛିନ୍ନ ପ୍ରଚେଷ୍ଟା । ରାନୁର ପଥର ପରି ମନକୁ ତରଳାଇବା ପାଇଁ । ଶେଷରେ ରାନୁ ସୁଷମାଙ୍କୁ ଡାକି କହିଲା- ବୋଉଲୋ ! ତୁ ଯେଉଁଠି ବାହାଘର କରିବୁ, ମୁଁ ସେଇଠି ବାହାହେବି ।

ଆନନ୍ଦର ଆତିଶଯ୍ୟରେ ସୁଷମାଙ୍କ ମୁହଁରେ ଉକୁଟି ଉଠିଲା ହସ । ଅନେକ ଦିନ ପରେ ।

- କିନ୍ତୁ ଗୋଟିଏ ସର୍ତ୍ତରେ । - ଦୃଢ଼ ଆବେଗ ଭରା କଣ୍ଠରେ କହିଲା ରାନୁ ।

- ତୁ ଯାହା ସର୍ତ୍ତ କହିବୁ, ଆମେ ରାଜି । ତୁ ଆମ କଥା ରଖିଛୁ । ଆମେ ତୋ କଥା ନିଶ୍ଚୟ ରଖିବୁ ।

ବୋଉଲୋ ! ମୁଁ ଚାହେଁ, ମୋ ଗର୍ଭରେ ଅଙ୍କୁରୋଦଗମ୍ ହୋଇଥିବା ଭୃଣଟି ପଲ୍ଲବିତ ହୋଇ ଦୁନିଆର ଆଲୋକ ଦେଖୁ ।-ଲୁହ ଛଳ ଛଳ ଆଖିରେ ଏକା ନିଶ୍ୱାସରେ କହିଦେଲା ରାନୁ । ଆଗନ୍ତୁକ ଶିଶୁଟି ତାର ପ୍ରଥମ ପ୍ରେମର ସ୍ମୃତି । ପ୍ରଥମ ପ୍ରେମ ଅନିର୍ବାଣ ଦୀପଶିଖା । ଅଖଣ୍ଡ ଜ୍ୟୋତି ପରି ଶେଷ ପର୍ଯ୍ୟନ୍ତ ପ୍ରଜ୍ୱଳିତ ହେଉଥାଏ ।

ସୁଷମାଙ୍କ ପାଦ ତଳୁ ମାଟି ଖସି ଖସି ଯାଉଥିଲା । ମନ ଆକାଶଟି ବିଜୁଳି ଓ ଘଡ଼ଘଡିର ପ୍ରଚଣ୍ଡ ଶବ୍ଦରେ ପ୍ରକଂପିତ ହେଉଥିଲା । ଅଜାଣତରେ ଆଖିରୁ ଖସି ଆସୁଥିଲା ଦୁଇଟୋପା ଲୁହ ।

ନିର୍ବାକ ନିସ୍ପନ୍ଦ ସୁଷମା କିଛି ସମୟ ପରେ ପ୍ରକୃତିସ୍ଥ ହୋଇ କହିଲେ - ଆମେ ତୋ ସର୍ତ୍ତରେ ରାଜି । ଏହାକୁ ସଂପୂର୍ଣ୍ଣ ଗୋପନ ରଖିବାକୁ ପଡିବ । କାନ୍ଥ, ବାଡ଼ର ବି କାନ ଅଛି ।

ରାତ୍ରିର ନିଭୃତ ପ୍ରହରରେ ରାନୁର ଭୟଙ୍କର ଓ ହୃଦୟ ବିଦାରକ ସର୍ତ୍ତ ସମ୍ବନ୍ଧରେ ସୁଷମା ରାଧାମୋହନଙ୍କୁ ଫିସ୍ ଫିସ୍ କରି କହିଦେଲେ । ସେ ଅସ୍ପଷ୍ଟ ଫିସ୍ ଫିସ୍ କଥା ରାଧାମୋହନଙ୍କୁ ଲାଗୁଥିଲା ଯେପରି ବଜ୍ରର ପ୍ରଚଣ୍ଡ ନିର୍ଘୋଷ ଭୂସ୍ଖଳନ ଜନିତ ଚାପରେ ବସୁଧା ଦୋହଲି ଗଲାପରି ତାଙ୍କ ସମସ୍ତ ଦେହଟା ଅସନ୍ତୁଳିତ ହୋଇଗଲା । ସେ ଭାଙ୍ଗି ପଡୁଥିବା ବେଳେ ସୁଷମା କହିଲେ- ବ୍ୟସ୍ତ ହୁଅନା, ସମସ୍ୟା ଆସିଛି । ତାର ସମାଧାନ ହେବ । ଭୁବନେଶ୍ୱର ବହୁ ଦୂରରେ ଶିଶୁଟିର ଜନ୍ମର ବନ୍ଦୋବସ୍ତ କରି ତାକୁ କେଉଁ ଏକ ଅନାଥାଶ୍ରମରେ ରଖିଦେବା । କେହି ଜାଣିବେନି । କାନକୁ ଦିକାନ ହେବନି । ତାପରେ ରାନୁକୁ ଯୋଗ୍ୟ, ମନଲାଖି ପାତ୍ର ସଂଗରେ ବାହାଘର କରିଦେବା ।

ସୁଷମାଙ୍କର ଅସୀମ ଧୈର୍ଯ୍ୟ ବୁଦ୍ଧିମତ୍ତା, ପ୍ରତିକୂଳ ପରିସ୍ଥିତି ସହିତ ଲଢ଼େଇ କରିବାର ସାହସକୁ ରାଧାମୋହନ ମନେ ମନେ ପ୍ରଶଂସା କରୁଥିଲେ । ସୁଷମା ଉଚ୍ଚ ଶିକ୍ଷିତା ନୁହଁନ୍ତି । ଶିକ୍ଷା ହୁଏତ ମଣିଷକୁ ପୁସ୍ତକଗତ ଜ୍ଞାନ ଦେଇପାରେ । ଦେଇ ପାରେନା ପ୍ରଜ୍ଞା, ଧୈର୍ଯ୍ୟ, ସମ୍ବେଦନଶୀଳତା । ତାହା ଜନ୍ମଗତ । ମାଆ ଷଠିଙ୍କର ଅମୂଲ୍ୟ ଉପହାର ।

ସୁଷମା ଓ ରାଧାମୋହନ ରାଜଧାନୀର ଉପକଣ୍ଠରେ ଥିବା ଅନାଥାଶ୍ରମକୁ ବୁଲିଯାଇଥିଲେ । ନାଁ ତାର 'ଆଦୃତା' । ଗୋଠ ପାଟଣାରୁ ଡେରାସ ଫାର୍ମ ଆଡକୁ ଗଲେ ବାଟରେ ବଡ଼ ଅଟ୍ଟାଳିକା । ନିଃସହାୟ ଶିଶୁମାନଙ୍କ ପାଇଁ ଏକ କମନୀୟ ଆଶ୍ରମ । ମରି ମରି ବଞ୍ଚୁଥିବା ଶିଶୁମାନଙ୍କ ପାଇଁ ଜୀବନର ଆଲୋକ ଶିଖା । ସହରର ନିକଟରେ ନୁହେଁ- କିମ୍ବା ଦୂରରେ ନୁହେଁ । ସେମାନେ ସ୍ଥିର କଲେଯେ ଏହାହିଁ ଆଗନ୍ତୁକ ଶିଶୁଟି ପାଇଁ ପ୍ରକୃଷ୍ଟ ଆଶ୍ରୟ ସ୍ଥଳ ।

ସୁଷମାର ପ୍ରିୟ ବାନ୍ଧବୀ ସୁକାନ୍ତିର ଚେନାଇ ବାସଭବନରେ ଅଶାନ୍ତ ନିରବତାକୁ ଭଙ୍ଗ କରି ଜନ୍ମ ନେଲା କନ୍ୟା ରତ୍ନଟିଏ । ରାନୁର କୋଳରେ କଅଁଳିଆ ସୂର୍ଯ୍ୟଙ୍କ ପରି ନାଲି ଟୁକୁଟୁକୁ କଅଁଳା ପିତୁଳାଟିଏ । ରାନୁର ଓଠରେ କଅଁଳ ମୁଲାୟମ ଧାରେ ହସ । ଆଖି କୋଣରେ ଦୁଇବୁନ୍ଦା କାକର-କଣା । ପହିଲି କିରଣର ନରମ ସ୍ପର୍ଶରେ ପାଲଟି ଯାଇଥିଲା ବହୁବର୍ଣ୍ଣା ମୁକ୍ତା ।

ପରିକଳ୍ପିତ ଯୋଜନା ଅନୁସାରେ ନିଶାର୍ଦ୍ଧର ଫ୍ଲାଇଟରେ ରାଧାମୋହନ ସୁଷମା ଓ ରାନୁ କୁନି ଝିଅଟିକୁ  ନେଇ ଭୁବନେଶ୍ୱର ଏୟାରପୋର୍ଟରେ ପହଞ୍ଚିଲେ । ଲୁହ ଡବ ଡବ ଆଖିରେ ରାନୁ ଯାଇଥିଲା ଘରକୁ । ରାଧା ମୋହନ ଓ ସୁଷମା ପହଞ୍ଚିଲେ 'ଆଦୃତା' ଅନାଥାଶ୍ରମରେ ।

ରାସ୍ତା କଡ଼ ଅମରି ବୁଦା ଭିତରେ ପରିତ୍ୟକ୍ତ ଶିଶୁଟିକୁ ଦେଖି ନେଇ ଆସିଲୁ ଆପଣଙ୍କ ପାଖକୁ-ବାଷ୍ପାକୁଳ କଣ୍ଠରେ କହିଦେଲେ ରାଧାମୋହନ । ତିକ୍ତ ସତ୍ୟକୁ ତାହାମିଛ ଓ ତାହା ମିଛକୁ ସତ୍ୟ ବୋଲି ଉପସ୍ଥାପିତ କଲାବେଳେ ତାଙ୍କ କଣ୍ଠ ରୁଦ୍ଧ ହୋଇଯାଇଥିଲା ।

ହସ ହସ ମୁହଁରେ ପ୍ରୀତି ଦିଦି କୋଳେଇ ନେଲେ ଶିଶୁଟିକୁ । ପ୍ରୀତି ଦିଦି ଆଶ୍ରମର ପରିଚାଳିକା । ପରକୁ ଆପଣାର କରିବା ପାଇଁ ସମ୍ବେଦନଶୀଳତା ତାଙ୍କ ହୃଦୟରେ ଲହଡ଼ି ଭାଙ୍ଗୁଥିଲା ।

ଝିଅଟିର ନାଁ କଣ ଦେବା  ?- ପ୍ରୀତି ଦିଦିଙ୍କର ପ୍ରଶ୍ନ ।

"ଆଦୃତା"-  ଆପଣଙ୍କର ଆଶ୍ରମ ନାଁ ଆଦୃତା । ତାର ନାମ ହେବ ଆଦୃତା ।

ବହୁତ ଭଲ ସଂଯୋଗ ।ସୁଷମାଙ୍କର କଣ୍ଠରୁ ଅଜାଣତରେ ନିଗିଡ଼ି ପଡିଲା ଉତ୍ତର ।

ସୁଷମା ଏକଥା କହିଲାବେଳେ କହିଲା ବେଳେ ରାଧାମୋହନ ନିଜ ଆବେଗକୁ ରୋକିବାକୁ ଯଥା ସମ୍ଭବ ପ୍ରୟାସ କରୁଥିଲେ ।

କିଛିଦିନ ପରେ ମହାସମାରୋହରେ ରାନୁର ବାହାଘର ହୋଇଥିଲା ଡଃ ଅୟସ୍କାନ୍ତଙ୍କ ସହିତ । ନୟାପଲ୍ଲୀର ଜଣେ ଜଣାଶୁଣା ମେଡିସିନ୍ ସ୍ପେସିଆଲିଷ୍ଟ । ପୁରୁଣା ସ୍ମୃତିର କବର ଉପରେ ରାନୁ ଗଢ଼ିଥିଲା ଅଟ୍ଟାଳିକା । ନୂଆ ଜୀବନର, ନୂଆ ସ୍ୱପ୍ନର, ନୂଆ ଜଞ୍ଜାଳର । ଦୁଇ ପୁଅ ଟୁଲୁ ଓ କୁଲୁର ଜଞ୍ଜାଳ ଭିତରେ ସମୟ ଦ୍ରୁତ ଗତିରେ ଆଗେଇ ଚାଲିଥିଲା । ସେମାନଙ୍କ ପାଇଁ ରୋଷେଇ ବାସ ସେମାନଙ୍କ ପାଠପଢ଼ା, ଠିକ୍ ସମୟରେ ସ୍କୁଲ ପଠାଇବା ଦାୟିତ୍ୱ ନ୍ୟସ୍ତ ଥିଲା ତା' ଉପରେ ।

ଅୟସ୍କାନ୍ତ ସକାଳୁ ରାତି ପର୍ଯ୍ୟନ୍ତ ତାଙ୍କ କ୍ଲିନିକ୍‌ରେ ବ୍ୟସ୍ତ । ଖରାବେଳେ ଦୁଇ ଘଣ୍ଟା ପାଇଁ ଘରକୁ ଆସନ୍ତି । ଖାଇସାରି ଘଣ୍ଟାଏ ବିଶ୍ରାମ ନେଇ ଯାଆନ୍ତି । ଘର ଓ ପିଲାମାନଙ୍କ ବିଷୟରେ ଇଚ୍ଛା ଥିଲେବି ସେଥିପାଇଁ ସମୟ ଦେଇ ପାରନ୍ତିନି ।

ମଝିରେ ମଝିରେ ସମୟ ପାଇଲେ ରାନୁ ପାଗଳୀ ଭଳି ଦୌଡ଼ିଯାଏ ଆଦୃତାକୁ ଦେଖିବାକୁ । ଦୂରରୁ ଥରେ ଦେଖିଦେଲେ ତାର ଉତ୍ତପ୍ତ ପ୍ରାଣରେ ଯେପରି ଶୀତଳ ଜଳ ଝରି ପଡେ ।

ରାତ୍ରିର ନିଭୃତ ପ୍ରହରରେ ରାନୁର ସ୍ମୃତିର ପରିଧି ଭିତରକୁ ଧସେଇ ପଶି ଆସେ ଆଦୃତା । ତାର ସୁନ୍ଦର, ଅଥଚ ଉଦାସ ମୁହଁଟି ଢ଼ଳଢ଼ଳ ହୋଇ ନାଚି ଉଠେ ଆଖିର ସାମ୍ନାରେ । ଉତୁରି ଉଠେ ପଞ୍ଜରାଭେଦୀ ଦୀର୍ଘଶ୍ୱାସ । କୋରି ହୋଇଯାଏ ଛାତିର ଓଦା ଛଳ ଛଳ ଚଟାଣ ।

କେତେବେଳେ ଆପ୍‌ଲର ଝୁଡ଼ି ନେଇ ପହଞ୍ଚିଯାଏ ଆଶ୍ରମରେ । ଆଦୃତା ଆପ୍‌ଲଟିଏ ଖାଇଲା ବେଳେ ତା ଆଖିରୁ ଝରିପଡେ ଲୁହ । ସେ ମନଭରି ଖାଇଲାବେଳେ ପୂରିଯାଏ ତାର ପେଟ ।

ଆଦୃତା ଅନାଥାଶ୍ରମରେ ଖାଉଛି, ପିନ୍ଧୁଛି, ପିଲାଙ୍କ ସାଙ୍ଗରେ ଖେଳୁଛି । ତାର ହସକୁରା ଓଠ ତଳେ ରାନୁ ଦେଖିପାରେ କାନ୍ଦୁରା ମୁହଁଟିଏ । ତାର କ'ଣ ମନ ହେଉ ନଥିବ ମା' କୋଳରେ ନେସି ହୋଇଯିବାକୁ ? ଅଳି ଅର୍ଦ୍ଦଳିରେ ମାଆର ଛାତିକୁ ଓଦା ଜଡ଼ସଡ଼ କରି ଦେବାକୁ ?

ରାତ୍ରିର ବହଳ ଅନ୍ଧାର ଭିତରେ ଯେତେବେଳେ ଘଡ଼ଘଡ଼ି ସିଂହ ରଡି କରେ,

ଗଗନ, ପବନ ପ୍ରକଂପିତ ହୁଏ, ଆଦୃତା ଭୟରେ ଶିହିରି ଉଠୁଥିବ । ଖୋଜୁଥିବ ମାଆର ଉଷୁମ କୋଳ । ଷ୍ଟିଲ୍ ଖଟଟି ଉପରେ ଏକୁଟିଆ, ନିଃସଙ୍ଗ । ବଢ଼େଇ ଦେଉଥିବ ହାତ କାହାର କୋମଳ ସ୍ପର୍ଶ ଟିକିଏ ପାଇଁ ।  ବଢ଼େଇ ଦେଉଥିବା ହାତ କୁଙ୍କୁରି କାଙ୍କୁରି ହୋଇ ଫେରି ଆସୁଥିବ ତାରି ପାଖକୁ । ଶୂନ୍ୟତାର ଇଲାକା ଭିତରେ ତା ଆଖିରୁ ବହିଯାଉଥିବ ଅମାନିଆ ଲୁହ, ଝରଝର ହୋଇ । ଏହି ଭାବନାରେ ରାନୁର ଆଖି ଲୁହ ଛଳଛଳ ହୋଇଯାଏ । ଅପରାଧବୋଧର ଯନ୍ତ୍ରଣାରେ ତା ଛାତି ଫାଟିଯିବା ଭଳି ତାକୁ ବୋଧହୁଏ ।

ଦୁଇ ପୁଅ ଟୁଲୁ ଓ ଜୁଲୁ ସାଇ ଇଣ୍ଟରନେସନାଲ୍ ରେସିଡେନ୍‌ସିଆଲ୍ ସ୍କୁଲରେ ରହିବା ପରେ ରାନୁକୁ ଘେରି ଯାଇଥିଲା ନିଃସଙ୍ଗତାର ଅନ୍ଧାର । ସେହି ଅନ୍ଧାର ଭିତରେ ଆଲୁଅର ରୋଷଣୀ ଜାଳି ତା ଆଖି ସାମ୍ନାକୁ ଆଦୃତା ଆସେ ଏକ ଚିତ୍ରିତା ପ୍ରଜାପତି ପରି ।

ରାନୁ ମନ ହୁଏ, ଆଦୃତାକୁ ରାଣୀ ଭଳି ସଜାଇ କୋଳରେ ଆଉଜେଇ ନିଅନ୍ତା । ସଜଫୁଟା ଗୋଲାପ ପରି ମୁହଁ ପଛରେ କୃଷ୍ଣ କେଶର କମନୀୟ ଝରଣା । ବିଭିନ୍ନ ରଙ୍ଗର ରିବନ୍ ବାନ୍ଧି ଦିଅନ୍ତା ସେ ଉଡନ୍ତା କେଶରେ ।

ବେଳେବେଳେ ମନ ହୁଏ ମନର ନିଭୃତ କୋଣରେ ଗୁମୁରି ଉଠୁଥିବା ଗୋପନ କଥାକୁ ଅୟସ୍କାନ୍ତ ଆଗରେ ଖୋଲି ଦେବ । ଆଦୃତାକୁ ଅନାଥାଶ୍ରମରୁ ଆଣି ତାକୁ ବଡ଼ ଝିଅ ଆସନରେ ବସାଇବ ।

ଏବେ ସେ ବୁଝି ପାରୁଥିଲା ମହାଭାରତର କୁନ୍ତୀଙ୍କ ଦୁର୍ବିସହ ଯନ୍ତ୍ରଣା । ନାରୀ ନିଜର ସନ୍ତାନକୁ ପାଖରେ ପାଇ ମଧ୍ୟ ତାକୁ ସନ୍ତାନ ବୋଲି ସ୍ୱୀକାର ନ କରିବାରେ କି ଭୀଷଣ ଅପରାଧ ବୋଧ । ତାକୁ ନରମ ଛାତିରେ କୋଳେଇ ନପାରିବାରେ କି ଅନିର୍ବଚନୀୟ ମାନସିକ ଉଦ୍‌ବେଳନ ।

ସେ ବୁଝିପାରୁଥିଲା କାହିଁକି କର୍ଣ୍ଣଙ୍କୁ ଦେଖିଦେଲେ କୁନ୍ତୀଙ୍କ ଆଖିରୁ ଝରିଯାଏ ଶ୍ରାବଣର ବାରିଧାରା । ଛାତି ଫଟେଇ ଉତୁରି ଉଠେ ଅମାନିଆ କୋହ । ନିଗିଡ଼ି ପଡେ ପଞ୍ଜରା ଭେଦୀ ଦୀର୍ଘଶ୍ୱାସ ।

ସୁଷମା ସେଦିନ ଆସିଥିଲେ ରାନୁର ଘରକୁ । କଥା ପ୍ରସଙ୍ଗରେ କହୁ କହୁ ରାନୁ କହିଲା - ବୋଉଲୋ ! ଆଦୃତା ଏତେ ପାଖରେ ଥାଇ ମଧ୍ୟ ମୋ ଠାରୁ ଏତେ ଦୂରରେ । ମୁଁ  ସହି ପାରୁନି । ହୃଦୟ କାନ୍ଦୁଛି । ଭାବୁଛି ଅୟସ୍କାନ୍ତଙ୍କୁ  ସବୁ ସତକଥା କହି ଆଦୃତାକୁ ଘରକୁ ନେଇ ଆସିବି ।

ସୁଷମାଙ୍କ ମୁଣ୍ଡ ଉପରେ ଆକାଶ ଛିଣ୍ଡିପଡିବାର ଅନୁଭବ । କହିଲେ - ନା

ମାଆ ! ଏପରି କର ନା । ତୋ ମୁଣ୍ଡ କ'ଣ ଖରାପ ହୋଇଗଲାଣି ? ପରିସ୍ଥିତିକୁ ନବୁଝି ଆଖି ବୁଜି କିଛି କରିଦେଲେ ପ୍ରଳୟ ହୋଇଯିବ । ଟିକେ ଧୈର୍ଯ୍ୟ ରଖ ।

ରାନୁର ମୁଣ୍ଡବାଳକୁ ସାଉଁଳେଇ ସାଉଁଳେଇ କହିଲେ - ମା ଲୋ, ସତ କଥା ଜାଣିଲେ ଅୟସ୍କାନ୍ତ କିଭଳି ପ୍ରତିକ୍ରିୟା ପ୍ରକାଶ କରିବେ, ଆମେ ଜାଣିନେ । ପୁଅ ପିଲା, ଥରେ ଅବିଶ୍ୱାସର ବିଷ ମୁଣ୍ଡରେ ପଶିଗଲେ, ଝଡ଼ ମାଡ଼ି ଆସିବ । ତୋ ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ । ସେ ବିଶ୍ୱାସର ବଟବୃକ୍ଷଟି ଭାଙ୍ଗି ପଡିଲେ ସେ ଭାଙ୍ଗି ପଡିବେ । ଛାତିରେ ପଥର ରଖି କଥାଟିକୁ ଜୀବନ ସାରା ଗୋପନ ରଖିବାଟା ଭଲ ହେବ ।

ନିଶ୍ଚିତ ସୁନେଲି ଭବିଷ୍ୟତକୁ ହାତ ପାଆନ୍ତାରେ ପାଇ ତାକୁ ନ ହରେଇବା ପାଇଁ ଝିଅକୁ ପ୍ରବର୍ତ୍ତେଇ ଥିଲେ । ଯଥା ସମୟରେ ଆଦୃତାକୁ ଅନାଥାଶ୍ରମରୁ ଆଣି ତାକୁ ଭଲ ଜାଗାରେ ବାହାଘର କରିଦେବା ପାଇଁ ପ୍ରତିଶ୍ରୁତି ଦେଲେ ସୁଷମା ।

ରାନୁର ମନରେ ଫୁଟି ଉଠୁଥିବା ସୁନ୍ଦର, ସୁରଭିତ କଳିଟି ପ୍ରସ୍ଫୁଟିତ ହେବା ଆଗରୁ ବୃନ୍ତଚ୍ୟୁତ ହେଲା ।

ନାରୀ ଜୀବନର ଅନେକ ଅକୁହା କଥା ତା ମନର ନିଭୃତ ନିଳୟରେ ସାଇତି ରଖିଥାଏ । ତାକୁ ଖୋଲିଦେଲେ ପ୍ରଳୟ । ଗୋପନ ରଖିଲେ ଅସହ୍ୟ ଅର୍ନ୍ତବେଦନା । ଜୀବନର ଗତିପଥକୁ ଯଥା ସମ୍ଭବ ସହଜ, ସୁଗମ କରିବା ପାଇଁ ସେ ଦ୍ୱିତୀୟ ପଥକୁ ବାଛିନିଏ ।

ମାଆ ମନ । ଥୟ ଧରୁନି । ଆକୁଳ ହେଉଛି ତାର ରକ୍ତ ମାଂସରେ ଗଢ଼ା ନୟନ ପିତୁଳାଟିକୁ କୋଳରେ ଜାକି ଧରିବାକୁ । ଆଦୃତାକୁ ଘରକୁ ଆଣିବା ପାଇଁ ମନରେ ଉଙ୍କି ମାରୁଛି ଆଶାର ଆଲୋକ । ସେଦିନ କହୁ କହୁ କହିଦେଲା ଅୟସ୍କାନ୍ତକୁ- ତୁମେତ ସକାଳୁ ରାତି ପର୍ଯ୍ୟନ୍ତ କ୍ଲିନିକ୍‌ରେ ବ୍ୟସ୍ତ । ଟୁଲୁ ଆଉ ଜୁଲୁ ବୋଡିଙ୍ଗ୍ ସ୍କୁଲରେ । ଭାବୁଥିଲି, ଅନାଥାଶ୍ରମରୁ ଝିଅଟିଏ ଆଣି ରଖିବା ପାଇଁ ଘରେ । ମୋତେ ଦିନ ଯାକ ଭାରି ଏକା ଏକା ଲାଗୁଛି ।

ବିରକ୍ତ ହୋଇ ଚିହିରି ଉଠିଲେ ଅୟସ୍କାନ୍ତ - ତୁମ ମୁଣ୍ଡ ଫୁଣ୍ଡ ଠିକ୍ ଅଛିତ ? ବାହାର ଝିଅଟିଏ ଘରେ ରଖିଲେ କେତେ ରିସ୍କ ଅଛି, କେବେ ଚିନ୍ତା କରିଛ ? ସେ ଆସିଲେ ପଡୋଶୀ, ବନ୍ଧୁବାନ୍ଧବ ସମସ୍ତେ ପ୍ରଶ୍ନ କରିବେ । ସେ କିଏ, କେଉଁଠୁ ଆସିଲା ? କ'ଣ ତାର ଜାତି, ଧର୍ମ ଆଉ ଗୋତ୍ର ? ମୁଁ ଏତେ ପ୍ରଶ୍ନର ଉତ୍ତର ଦେଇ ପାରିବି ନାହିଁ ।

ପର ଝିଅ । ସୁବିଧା ଅସୁବିଧା ହେଲେ ଲୋକେ ଆମକୁ ଦାୟୀ କରିବେ ।

ମୋର ବନ୍ଧୁ ଦାମବାବୁଙ୍କ ଘରେ ଝିଅଟିଏ ରହି କାମ ଦାମ କରୁଥିଲା । ପାଠ ପଢ଼ାପଢ଼ି ମଧ୍ୟ କରୁଥିଲା । କେତେକ ଇର୍ଷା ପରାୟଣ ପଡୋଶୀ ପୋଲିସ୍ ପାଖରେ ଅଭିଯୋଗ କଲେ ଯେ ସେମାନେ ଶିଶୁଟିକୁ ନର୍ଯାତନା ଦେଉଛନ୍ତି । କେତେ କଷ୍ଟରେ ଦାମବାବୁ ମୁକୁଳିଲେ ସେ ଯନ୍ତାରୁ । ତେଣୁ ସେ ସବୁ ଉଦ୍‌ଭଟ୍ ଚିନ୍ତା ମୁଣ୍ଡରୁ ଶୀଘ୍ର ଦୂର କର ।

ରାନୁର ମନ ଆକାଶରେ ଉଦିତ ସୂର୍ଯ୍ୟଟି ମୁହୂର୍ତ୍ତକ ପରେ ଅସ୍ତମିତ ହୋଇଗଲା ।

ସେଦିନ ରାନୁର ମନ ଭିତରେ ଆନନ୍ଦ ଲହଡି ମାରିଲା ଯେତେବେଳେ ଅୟସ୍କାନ୍ତ ତାଙ୍କ ମା'ଙ୍କର ଶ୍ରାଦ୍ଧୋତ୍ସବ ଅବସରରେ 'ଆଦୃତା' ଅନାଥାଶ୍ରମର ଝିଅଙ୍କୁ ଖାଇବାକୁ ଦେବାକୁ ପ୍ରସ୍ତାବ ଦେଲେ । ତାର ଗୋଡ଼ ତଳେ ଲାଗିଲାନି । ସେ ବହୁତ ଥର ଆଶ୍ରମକୁ ଏକଲା ଯାଇଛି । ଆଜି ଅୟସ୍କାନ୍ତ ସାଙ୍ଗରେ ଯିବାର ସୁଯୋଗ ପାଇ ଏକ ନିଆରା ଆନନ୍ଦରେ ସେ ଆତ୍ମହରା ହେଉଥିଲା । ଆଶ୍ରମର ପ୍ରାୟ ୫୦ ଜଣ ଝିଅ, ତାର ଓ ଅୟସ୍କାନ୍ତର ବନ୍ଧୁବାନ୍ଧବ ମିଶି ପ୍ରାୟ ୫୦ ଜଣ ହେବେ । ଏହିପରି ଶହେ ଜଣଙ୍କ ପାଇଁ ବ୍ରେକ୍‌ଫାଷ୍ଟ ଓ ଲଞ୍ଚ୍‌ର ବ୍ୟବସ୍ଥା କରାହେଲା । ଆଶ୍ରମର ପରିଚାଳିକା ସବୁ ସୁଚାରୁରୂପେ ବ୍ୟବସ୍ଥା କରିବା ପାଇଁ ପ୍ରତିଶ୍ରୁତି ଦେଲେ ।

ଅୟସ୍କାନ୍ତଙ୍କ କାର୍ ଚାଲିଥାଏ "ଆଦୃତା" ଅନାଥାଶ୍ରମ ଅଭିମୁଖେ । ରାସ୍ତାରେ ଘାସର ସବୁଜ ପ୍ରାନ୍ତର, ନୀଳ ଦିଗବଳୟ । ଭୂମି ଓ ଭୂମାର ମିଳନ କ୍ଷେତ୍ର । ପକ୍ଷୀଙ୍କ କଳରବ । ଅନୁପମ ପ୍ରାକୃତିକ ସୌନ୍ଦର୍ଯ୍ୟ ଅୟସ୍କାନ୍ତଙ୍କୁ ମନ୍ତ୍ରମୋହିତ କରୁଥାଏ । ଆଶ୍ରମରେ ପହଞ୍ଚିଲା ପରେ ଅୟସ୍କାନ୍ତ ଓ ରାନୁକୁ ଆଶ୍ରମର ପରିଚାଳିକା ପ୍ରୀତି ଦିଦି ସମ୍ଭାଷଣ ଜଣାଇ ଡାକି ନେଲେ ଅତିଥି ଗୃହକୁ ।

ଆଦୃତା ଓ ତାର ବାନ୍ଧବୀ ଦୁଇ ଗ୍ଲାସ ପାଣି ଆଣି ଟି ପୟ ଉପରେ ରଖିଦେଲେ । ସଂଯୋଗ କ୍ରମେ ଆଦୃତା ପାଣିଗ୍ଲାସଟିକୁ ଅୟସ୍କାନ୍ତଙ୍କ ହାତକୁ ବଢ଼ାଇଦେଇ ପଚାରିଲା- ଅଙ୍କଲ୍ ! ଆପଣଙ୍କ ପାଇଁ ଜଳଖିଆ କ'ଣ ଆଣିବି ?

- ଆଜି ମୋର ମାଆର ଶ୍ରାଦ୍ଧ, କେବଳ ଫଳ ଖାଇବି ।

ଆଦୃତା ବିଭିନ୍ନ ଫଳ କାଟି ଅତି ଶ୍ରଦ୍ଧା ଓ ସମ୍ମାନର ସହ ଫଳ ପ୍ଲେଟ୍‌ଟି ବଢ଼ାଇଦେଲା ।

- ଅଙ୍କଲ୍, ଆପଣ ସବୁ ଖାଇବେ । କିଛି ଫେରାଇବେନି । ଆମର ତ କେହି ବାପା, ମା' ନାହାଁନ୍ତି । ଆପଣ ଆମର ବାପା, ମା' । ଆପଣ ଭଲ କରି ଖାଇଲେ, ଆମକୁ ବହୁତ ଭଲ ଲାଗିବ ।

ଆଦୃତାର ଆଖିରୁ ଝରି ପଡୁଥିଲା ସ୍ନେହ ସୌହାର୍ଦ୍ଦ୍ୟର ଜ୍ୟୋତ୍ସ୍ନା । ତାର ସ୍ମିତ ହାସ୍ୟରୁ ବହିଚାଲିଥିଲା କଳକଳ ନାଦିନୀ ପାହାଡ଼ି ଝରଣା ।

ଅୟସ୍କାନ୍ତଙ୍କର ଆଖି ଲାଖିଯାଇଥିଲା ଆଦୃତାର ଆଖିରେ । ନିଃସହାୟ, ନିଷ୍ପାପ ଶିଶୁଟିର ସ୍ନେହ, ମମତା ତରଳାଇ ଦେଉଥିଲା ତାଙ୍କ ମନ ଓ ହୃଦୟକୁ ।

- ମା' ତୁମ ନାମ କଣ ?

- ଆଦୃତା ।

- ତୁମର ହବି କ'ଣ ?

- ଗୀତ ଗାଇବା ।

- ଗୋଟିଏ ଗୀତ ଗାଅ ।

ଆଦୃତାର ମିଠା କଣ୍ଠରୁ ଝରି ପଡ଼ିଲା ହୃଦୟସ୍ପର୍ଶୀ ସଂଗୀତ- ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡାଇବ ହେ ।

ଆଦୃତାର ସଜଫୁଟା ଗୋଲାପ ପରି ମୁହଁ, ପୋଟଳ ଚିରା ଆଖି, ଓଠରେ ଲାଖିଥିବା ଧାରେ ପତଳା ହସ, କଣ୍ଠରେ ସଂଗୀତର ନମ୍ର ନିର୍ଝରିଣୀ ।

ଅୟସ୍କାନ୍ତ ରୋଗୀ ଓ ରୋଗର ଦୁନିଆ ଭିତରୁ ବାହାରି ଆସି ଦେଖୁଥିଲେ ନୂଆ ଦୁନିଆର ଆଲୋକ, ତାର କୋମଳ ସ୍ପର୍ଶ । ତାଙ୍କ ଆଖି କୋଣରେ ଜକେଇ ଆସୁଥିଲା ଦୁଇ ଟୋପା ଲୁହ । ରୋଗୀର ଯନ୍ତ୍ରଣାରେ ସର୍ବଦା ନିର୍ବିକାର ଥିବା ଅୟସ୍କାନ୍ତଙ୍କ ମନ ଓ ହୃଦୟରେ ଢେ଼ଉ ଭାଙ୍ଗୁଥିଲା ଭାବାବେଗ ।

ବନ୍ଧୁବାନ୍ଧବ, ସମସ୍ତ ଅତିଥି ଓ ଆଶ୍ରମର ଅନ୍ତେବାସୀ ମଧ୍ୟାହ୍ନ ଭୋଜନ ସମାପ୍ତ କଲେ । ଆଶ୍ରମର ପରିଚାଳିକା ଅୟସ୍କାନ୍ତଙ୍କୁ ବୁଲାଇଲେ ଆଶ୍ରମର କୋଣ, ଅନୁକୋଣ । ନିଃସହାୟ ଝିଅମାନଙ୍କ ଜୀବନଶୈଳୀ, ଜୀବନ ଚର୍ଯ୍ୟା ଓ ଜୀବନ ସଂଗ୍ରାମକୁ ଦେଖି ଅୟସ୍କାନ୍ତ ହୋଇଥିଲେ ଆନମନା । ପରିଶେଷରେ ଅୟସ୍କାନ୍ତ ଓ ରାନୁ ଘରକୁ ଫେରିବାକୁ ଗେଟ୍ ପାଖରେ ଥିବା କାର୍ ପାଖକୁ ଗଲେ । ଆଶ୍ରମର ପରିଚାଳିକା ପ୍ରୀତି ଦିଦି ସେମାନଙ୍କ ସଂଗରେ ବାଟେଇ ଦେବା ପାଇଁ କାର ପାଖକୁ ଗଲେ ଓ କୃତଜ୍ଞତା ଜ୍ଞାପନ କଲେ । ଅୟସ୍କାନ୍ତ ଗାଡ଼ିରେ ବସିବା ପୂର୍ବରୁ ଫାଟକ ପାଖରେ ଥିବା କଦମ୍ବ ଗଛର ଛାଇକୁ ପ୍ରୀତି ଦିଦିଙ୍କୁ ଡାକିଲେ । ସାଙ୍ଗରେ ଥାଏ ରାନୁ । ରାନୁ ଓ ପ୍ରୀତି ଦିଦି ଭାବୁଥିଲେ ଆଶ୍ରମର ଝିଅମାନଙ୍କ ପାଇଁ କିଛି ମୋଟା ଟଙ୍କାର ଅର୍ଥ ବୋଧହୁଏ ପ୍ରଦାନ କରିବେ ଅୟସ୍କାନ୍ତ ।

ଅୟସ୍କାନ୍ତ ବାଷ୍ପାରୁଦ୍ଧ କଣ୍ଠରେ ପ୍ରୀତି ଦିଦିଙ୍କୁ କହିଲେ - ମୁଁ ଆଦୃତାକୁ ପୋଷ୍ୟ

କନ୍ୟା ଭାବରେ ନେବାକୁ ଚାହେଁ । ଯାହା ଆଇନ ଦୃଷ୍ଟିରୁ ଆବଶ୍ୟକ, ସବୁ କାଗଜ ପତ୍ର ପ୍ରସ୍ତୁତ କର । ଆସନ୍ତା ମାସ ପ୍ରଥମ ସପ୍ତାହରେ ଆମେ ଆସି ଆଦୃତାକୁ ଆମ ଘରକୁ ନେଇଯିବୁ ।

ସ୍ତମ୍ଭୀଭୂତ ହୋଇଥିଲା ରାନୁ । କାର୍‌ରେ ଘରକୁ ଫେରିଲା ବେଳେ ତାର ମନ ହେଉଥିଲା ଆଖିର ଲୁହରେ ଧୋଇଦେବ ଅୟସ୍କାନ୍ତଙ୍କ ପଦ ଯୁଗଳକୁ । ତାଙ୍କର ଗମ୍ଭୀର ମୁଖମଣ୍ଡଳ ଆଢୁଆଳରେ ଲୁଚିଥିବା ସମ୍ବେଦନଶୀଳ, ଦେବୋପମ ବ୍ୟକ୍ତିତ୍ୱକୁ ମନେ ମନେ ପ୍ରଣିପାତ କରୁଥିଲା । ରାନୁର ମୁଖମଣ୍ଡଳରୁ ଝରି ପଡୁଥିଲା ଖୁସି ଓ ସନ୍ତୋଷର ଆଞ୍ଜୁଳା ଆଞ୍ଜୁଳା ଜ୍ୟୋସ୍ନା ।



*('ସମାରୋହ' ପତ୍ରିକାର ୨୦୧୮ ନଭେମ୍ବର ସଂଖ୍ୟାରେ ପ୍ରକାଶିତ)*

# ବାପାଙ୍କର ବାହାଘର

"ଜେଜେ, ମୋ ବାପାଙ୍କ ବାହାଘର ଆସନ୍ତା ରବିବାର ଦିନ ହେବ । ନିଶ୍ଚୟ ଆସିବ । ମଜା କରିବା, ଗୁପ୍‌ଚୁପ୍, ପାନିପୁରି ମନଭରି ଖାଇବା" - ମହେଶ୍ୱରବାବୁଙ୍କ ନାତି ଟୁଲା ଫୋନ୍‌ରେ ଅତି ଅବିଚଳିତ କଣ୍ଠରେ କହୁଥିଲା ।

ମହେଶ୍ୱର ବାବୁଙ୍କ ଗୋଟିଏ ବୋଲି ପୁଅ ସୁମନ୍ତ । ତାର ପୁଅର ନାମ ଟୁଲା । ଦ୍ୱିତୀୟ ଶ୍ରେଣୀରେ ପଢ଼େ । ଭାରି ଚାଲାକ୍ । ପିଲା ସିନା ଛୋଟ, ବଡ଼ ଲୋକଙ୍କ ଭଳି କଥାବାର୍ତ୍ତା । ବିସ୍ମୟ ବାଳକ । ମହେଶ୍ୱରବାବୁ ଅବସରପ୍ରାପ୍ତ ଶିକ୍ଷକ । ଗାଁରେ ରହନ୍ତି । ଗାଁ ସୁଜନପୁର ଭୁବନେଶ୍ୱର ଠାରୁ ୫୦ କିଲୋମିଟର ଦୂର । ମହେଶ୍ୱରବାବୁ ଏ କଥା ଶୁଣି ଆଶଙ୍କାରେ ଝାଉଁଳି ପଡ଼ିଲେ ।

କହିଲେ - ଏହା କ'ଣ ସତ ?

- ହଁ, ଜେଜେ ହୋଟେଲ୍ ଠିକ୍ ସରିଛି । କଣ କଣ ଆଇଟମ୍ ହେବ ବାପା ଠିକ୍ କରିସାରିଲେଣି । ଯୋଉ ଲୋକ ରୋଷେଇ କରି ଖାଇବାକୁ ଦେବ, କାଲି ଆସି ଆଡ୍‌ଭାନ୍ସ ନେଇଗଲା । ଡେକୋରେସନ୍ ବାଲା ଆମ ଘରକୁ ଆଜି ସକାଳେ ଆସିଥିଲା । କିପରି ସଜାଇବ, ବାପାଙ୍କୁ ଆଲ୍‌ବମ୍‌ରୁ ଚିତ୍ର ଦେଖାଉଥିଲା ।

- ଆଉ ତୋ ବୋଉ ?

- ତା କଥା କୁହନା । ମାସେ ହେଲା ବାପାଙ୍କ ସଙ୍ଗେ ଭୀଷଣ କଳି । ମୁହଁଟାକୁ ଫୁଲେଇଛି । ରାଗରେ ତମତମ୍ । ପାଟିରେ ବାଡ଼ବତା ନାହିଁ ।

ମହେଶ୍ୱରବାବୁ ଦୁମ୍ କରି ସୋଫାରେ ବସି ପଡ଼ିଲେ । ହଠାତ୍ ମୁଣ୍ଡଟାକୁ ଚିନ୍ତାର ପାହାଡ଼ ମାଡ଼ି ବସିଲା । ସ୍ତ୍ରୀଙ୍କୁ ଡାକି କହିଲେ- ବୁଝିଲ ସୌଦାମିନୀ, ତୁମ ଗେହ୍ଲା ପୁଅ ସୁମନ୍ତ ଆଉ ଥରେ ବାହା ହେଉଛି । ଯୁଗ କ'ଣ ହେଲା । ଘରେ ସ୍ତ୍ରୀ, ପିଲା । ପୁଣି ବାହା ହେବାକୁ ମନ ।

- ତୁମେ କେମିତି ଜାଣିଲ ?

- ମୁଁ ଟୁଲା ସାଙ୍ଗରେ ଏଇନେ କଥା ହେଲି । ସେ ସବୁ ଅନର୍ଗଳ କହିଦେଲା ।

ଟୁଲାଟା ସବୁବେଳେ ସତ କହେ । ନିର୍ମଳ ତାର ମନ, ନିଷ୍କପଟ ତା ହୃଦୟ ।

ଟୁଲା ଉପରେ ମହେଶ୍ୱରଙ୍କ ଭାରି ଭରସା । ତାଙ୍କ ବିଷୟରେ ଓ ତାର ଜେଜେମା ବିଷୟରେ ତା ବାପା ମାଆ କଣ କଥାବାର୍ତ୍ତା ହୁଅନ୍ତି, ତାର ଅବିକଳ ନକଲ ଅବିଳମ୍ବେ ତାର ଜେଜେଙ୍କୁ ଜଣାଇ ଦିଏ । ନିରୋଳା ସତ ଡଗଡଗ ହୋଇ କହିଦିଏ । ପାଟିରେ ବାଟୁଳି ବାଜେନା ।

ମହେଶ୍ୱରବାବୁ ସତର୍କ ସୂଚନା ପାଇ ତାଙ୍କ ଯୋଜନାର ନକ୍ସା ପ୍ରସ୍ତୁତ କରନ୍ତି । ତେଣୁ ପୁଅ ଓ ବୋହୂଙ୍କର ଅତି ପ୍ରିୟ । ସେମାନଙ୍କ ଭିତରେ ଜେନେରେସନ୍ ଗ୍ୟାପ୍‌ର ସମସ୍ୟା ନଥାଏ । ପୁଅ ବୋହୂଙ୍କର ମନ ଜାଣି ସେ ସୁନ୍ଦର ଅଭିନୟ କରନ୍ତି । ଘର ଓ ପରିବାରର ଶାନ୍ତି ପାଇଁ ଏହା ଯେ ଅନିବାର୍ଯ୍ୟ, ସେ ଅଙ୍ଗେ ଅଙ୍ଗେ ଅନୁଭବ କରିଥିଲେ । ସେ କାହାକୁ ଅପେକ୍ଷା କରନ୍ତିନି କିମ୍ବା କାହାର ଉପେକ୍ଷା ପାଇଁ ଅଭିମାନ କରନ୍ତିନି । କାହାଠାରୁ ସେ ଆଶା କରନ୍ତିନି କିମ୍ବା କାହା ସହିତ ତୁଳନା କରନ୍ତିନି । ପରିସ୍ଥିତି ସହିତ ସାଲିସ୍ କରିବାରେ ଓସ୍ତାଦ୍ । ନମନୀୟ ବ୍ୟକ୍ତିତ୍ୱ । ସେ ଗାଁରେ ଓ ପୁଅ ବୋହୂ ଭୁବନେଶ୍ୱରରେ । କିନ୍ତୁ ବୁଝାମଣା ଅତୁଳନୀୟ । ବୋହୂ ମୌସୁମୀ କହେ- ଶ୍ୱଶୁର ମୋର ଅନ୍ତର୍ଯ୍ୟାମୀ । ମନ କଥା ଜାଣନ୍ତି । ମନ କଥା ବୁଝନ୍ତି ।

ଏହା ପଛରେ ଯେ ଟୁଲାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ସେମାନେ ଜାଣନ୍ତିନି ।

ଛ' ମାସ ତଳର ଘଟଣା । ମହେଶ୍ୱରବାବୁ ସସ୍ତ୍ରୀକ ଭୁବନେଶ୍ୱର ଯିବା ପାଇଁ ପ୍ରସ୍ତୁତ ହୋଇଥିଲେ । ସୁମନ୍ତ ସୌଜନ୍ୟ ଦୃଷ୍ଟିରୁ ମନା କରି ପାରିନଥିଲା । ତାଙ୍କ ଆଣ୍ଠୁରେ ବ୍ୟଥା ହେଉଥିବାରୁ ସେ ଭୁବନେଶ୍ୱର ଡାକ୍ତରଙ୍କୁ ଦେଖାଇବାକୁ ଇଚ୍ଛା କରୁଥିଲେ ।

ଟୁଲା ଫୋନ୍‌ରେ କହିଲା - ଜେଜେ, ଏବେ ଆସନା । ମାଉସୀ କଲିକତାରୁ ତାର ପିଲାମାନଙ୍କୁ ନେଇ କାଲି ଆମ ଘରକୁ ଆସୁଛି । ପନ୍ଦରଦିନ ରହିବ ।

ମହେଶ୍ୱରବାବୁ ଟୁଲାଠାରୁ ଶୁଣି ଆସିବାର ଯୋଜନା ବନ୍ଦ୍ କଲେ । ସେଦିନ ସୁମନ୍ତ ଓ ମୌସୁମୀ ଆନନ୍ଦରେ ଗଦଗଦ ହୋଇ ଫୋନ୍‌ରେ ତାଙ୍କ ସଙ୍ଗେ କଥା ହେଲେ । ସେମାନଙ୍କ କଣ୍ଠରୁ କୃତଜ୍ଞତାର ଅମୃତ ଅବାରିତ ଭାବରେ ଝରି ପଡୁଥିଲା ।

ଟୁଲା ତାଙ୍କର ଅତି ବିଶ୍ୱସ୍ତ ଗୁପ୍ତଚର । ନିର୍ଭୁଲ ଭାବରେ ଗୋଟିଚାଳନା କରିବା ପାଇଁ ଠିକ୍ ସମୟରେ ସବୁ ଖୋରାକ୍ ଯୋଗାଇଦିଏ ।

ମହେଶ୍ୱର ବାବୁ ଭାବୁଥିଲେ, ଟୁଲା ଯେଉଁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଦେଇଛି, ତାକୁ ଉପଯୋଗ କରି ଉଚିତ୍ ପଦକ୍ଷେପ ନେବାକୁ ପଡ଼ିବ । ଏ ବାହାଘର ବନ୍ଦ୍ କରିବାକୁ

ପଡ଼ିବ । ଘଟଣାଟିକୁ ଗୁପ୍ତ ରଖି ସତର୍କତାର ସହ ଆଗେଇବାକୁ ପଡ଼ିବ ।

ସୌଦାମିନୀ ଧାନଉଁସା ହାଣ୍ଡି ପରି ମୁହଁ କରି କହିଲେ - ମୁଁ ଜାଣିଥିଲି ଏଇଆ ହେବ । ଆମ ଗାଁ ମଧୁ ସ୍ୱାଇଁ ଝିଅ କାମିନୀ ଏବେ ଭୁବନେଶ୍ୱରରେ ଚାକିରି କରିଛି । ସେ ଏ ପର୍ଯ୍ୟନ୍ତ ବାହା ହେଇନି । ସୁମନ୍ତ ତାକୁ ବାହାହେବ ବୋଲି ଜିଦ୍ କରିଥିଲା । ତାକୁ କେତେ ବୁଝେଇଲା ପରେ ବହୁ କଷ୍ଟରେ ମୌସୁମୀକୁ ବାହା ହେବାକୁ ରାଜି ହେଲା । ଏବେ କାମିନୀକୁ ବାହା ହେବାକୁ ବସିଛି । ଭୁବନେଶ୍ୱରର ଦେଖା ଚାହାଁ ହେବାରୁ ପୁରୁଣା ସଂପର୍କ ପୁଣି ଉତୁରି ଉଠିଲା । ମୁଁ ଯାହା ଭାବୁଥିଲି, ତାହା ସତ ହେବାକୁ ଯାଉଛି ।

ମହେଶ୍ୱରବାବୁ ଭାବୁଥିଲେ, ପ୍ରଥମ ପ୍ରେମ ହେଉଛି ଅନିର୍ବାଣ ଦୀପଶିଖା । ସବୁଦିନ ପାଇଁ ଦୀପ୍ତିମନ୍ତ ଶିଖା ବିସ୍ତାର କରି ଜଳୁଥାଏ । ଏ ବୟସରେ ବି ନିଶବ୍ଦ ରଜନୀରେ ତାଙ୍କ ପ୍ରଥମ ପ୍ରେମ ଏରୁଣ୍ଡି ବନ୍ଧ ଡେଇଁ ଧସେଇ ପଶିଆସେ । ତାଙ୍କ ଦେହ ଓ ମନ ହଲ୍‌ଚଲ୍ ହୋଇଯାଏ । ହଜି ଯାଇଥିବା ତାରୁଣ୍ୟ ପଲ୍ଲବିତ ହୋଇ ଶାଖା ପ୍ରଶାଖା ବିସ୍ତାର କରି ମୁହୂର୍ତ୍ତକ ମଧ୍ୟରେ ମହାଦ୍ରୁମରେ ପରିଣତ ହୁଏ । ସୁମନ୍ତଟାତ ପିଲା ଲୋକ । ତାଙ୍କରି ରକ୍ତ ତା ଭିତରେ ଖେଳୁଛି । ତା ଭିତରେ ଯୁବ ସୁଲଭ ଉଦ୍ଦାମତା ଲହଡ଼ି ଭାଙ୍ଗୁଛି । ଭୁବନେଶ୍ୱରରେ କାମିନୀ ସଂସ୍ପର୍ଶରେ ଆସିବା ପରେ ତା ମନଟା ଅମାନିଆ ହୋଇଯାଇଛି । ମାନୁ ନାହିଁ ସମାଜର ବାଡ଼ବତା, ବିବେକର ଦଂଶନ, ଲୋକ ନିନ୍ଦାର ନାଲିଆଖି । କାମିନୀର କମନୀୟ ଦେହର କାମନାରେ ସେ ବାହାଘରର ଦୁଃସାହସିକ ନିଷ୍ପତ୍ତି ନେଇଛି ।

ସୁମନ୍ତ ସାତ ବର୍ଷ ହେବ କଲିକତାରେ ଏକ କଂପାନୀରେ ଚାକିରି କରୁଥିଲା । ଏବେ ବର୍ଷେ ହେବ ଭୁବନେଶ୍ୱରକୁ ବଦଳି ହୋଇ ଆସିଛି । ତାର ସ୍ତ୍ରୀ ମୌସୁମୀ ଚନ୍ଦ୍ରଶେଖରପୁର ସେଣ୍ଟ ଜାଭିୟର୍ସ ହାଇସ୍କୁଲରେ ଶିକ୍ଷୟିତ୍ରୀ ।

ସୁମନ୍ତ ସାତବର୍ଷ କଲିକତାରେ ଏକୁଟିଆ ରହିଥିବା ବେଳେ ମହେଶ୍ୱରବାବୁ ସର୍ବଦା ଚିନ୍ତିତ ରହୁଥିଲେ । ତାର ପେଟ ରୋଗ, ଅଲ୍‌ସରର ପ୍ରାଥମିକ ଅବସ୍ଥା । ଇଚ୍ଛା ଥିଲେ ବି ଚାକିରି ଯୋଗୁଁ ମୌସୁମୀ ଭୁବନେଶ୍ୱର ଛାଡ଼ି ଯାଇ ପାରେନା । ସୁମନ୍ତ କେମିତି ଖାଇବ, କେମିତି ଚଳିବ, ଏହି ଭାବନା ମହେଶ୍ୱର ବାବୁଙ୍କ ମନକୁ ଆନ୍ଦୋଳିତ କରୁଥିଲା । ସୁମନ୍ତ ଭୁବନେଶ୍ୱର ଆସିବା ପରେ ସେ ଆଶ୍ୱସ୍ତ ହୋଇଥିଲେ । କିନ୍ତୁ ଆଜି ଇଏ କ'ଣ ହେବାକୁ ଯାଉଛି ? ମୌସୁମୀ ପରି ସର୍ବ ଗୁଣ ସଂପନ୍ନା, ଶିକ୍ଷିତା, ସୁନ୍ଦରୀ ସ୍ତ୍ରୀ ପାଖରେ ଥାଉଁ ଥାଉଁ ସୁମନ୍ତ ଇଏ କ'ଣ କରିବାକୁ ଯାଉଛି ।

ମହେଶ୍ୱର ବାବୁ ଭାବୁଥିଲେ, ଆଜି ବଦଳି ଯାଇଛି ସମୟ । ବଦଳି ଯାଇଛି

ମୂଲ୍ୟବୋଧ । ବାହା ନ ହୋଇ ମଧ୍ୟ ପୁରୁଷ ଓ ସ୍ତ୍ରୀ ଗୋଟିଏ ଛାତ ତଳେ ବର୍ଷ ବର୍ଷ ଧରି ରହୁଛନ୍ତି ବିନା ଦ୍ୱିଧାରେ, ବିନା ସଙ୍କୋଚରେ । ସମାଜର କଟାକ୍ଷ ସେମାନଙ୍କୁ ଆହତ କରୁନାହିଁ । ବିବେକର ବୃଶ୍ଚିକ ଦଂଶନ ସେମାନଙ୍କ ଦେହସୁହା ହୋଇଗଲାଣି । ସମାଜ ଓ ବିବେକର ବାଡ଼ବତା ଭାଙ୍ଗି ବର୍ତ୍ତମାନକୁ ଉପଭୋଗ କରିବାର ସହଜ, ସରଳ ରାସ୍ତାକୁ ସେମାନେ ଆପଣେଇ ନେଇଛନ୍ତି ।

ଯାହା ହେଲେବି ସୁମନ୍ତର ବାହାଘର ରୋକିବାକୁ ପଡ଼ିବ । ଏ ଖବର ଡିବିଡିବି ହୋଇ ଗାଁ ସାରା ଓ ଆଖପାଖ ସାତ ଆଠ ଖଣ୍ଡ ମୌଜାରେ ବ୍ୟାପିଯିବ । ସାଇ, ଭାଇ, ବନ୍ଧୁ ବାନ୍ଧବରେ ସେ କେମିତି ମୁହଁ ଦେଖେଇବେ । ସିଏ ଜଣେ ନୀତିନିଷ୍ଠ ଓ ଆଦର୍ଶ ବ୍ୟକ୍ତି ଭାବରେ ଆଖପାଖ ଗାଁମାନଙ୍କରେ ସୁନାମ ଅର୍ଜନ କରିଛନ୍ତି । ଏହି ସବୁ ଭାବି ସେ ଚିନ୍ତାରେ ମ୍ରିୟମାଣ ହେଉଥିଲେ ।

ତାଛଡ଼ା ଆଜି କାଲି ଦୁନିଆରେ ଗୋଟିଏ ସ୍ତ୍ରୀକୁ ନେଇ ସଂସାର ଚଳାଇବା କାଠିକର ପାଠ । ଦୁଇସ୍ତ୍ରୀକୁ ନେଇ ସୁମନ୍ତ କେମିତି ଚଳାଇବ ସଂସାର ? ତାର ଯନ୍ତ୍ରଣା ଓ ବେଦନା କୂଳଲଂଘି ତାକୁ ଅସ୍ତବ୍ୟସ୍ତ କରିଦେବ । ଦୁଇ ପରସ୍ପର ବିରୋଧୀ ବିପରୀତ ମେରୁ ଭିତରେ ସନ୍ତୁଳନ ରକ୍ଷା କରୁ କରୁ ତା ନିଜର ସନ୍ତୁଳନ ଦୋହଲିଯିବ ।

ନାତି ଟୁଲା କଥା ଭାବିଲାବେଳକୁ ତାଙ୍କ ଆଖି ଓଦା ଓଦା ହୋଇଆସିଲା । ବାହାଘର ପରେ ସୁମନ୍ତର ଟୁଲା ପ୍ରତି ସ୍ନେହ, ମମତାରେ ନିଶ୍ଚୟ ଭଟ୍ଟା ପଡ଼ିଯିବ । ସ୍ନେହ ରଙ୍କୁଣା ଗୁଲୁଗୁଲିଆ ପିଲାଟା ଚେନାଏ ସ୍ନେହ ପାଇଁ ବିକଳ ହୋଇ ଅନାଇ ରହିବ । ମୌସୁମୀର ଜୀବନ ଦୁର୍ବିସହ ହୋଇପଡ଼ିବ ।

ମହେଶ୍ୱରବାବୁ ଟୁଲା କଥାକୁ ବିଶ୍ୱାସ କରିଥିଲେ ହେଁ ପୁଅର ବାହାଘର କଥାଟା ସତକି ମିଛ ସେ ବିଷୟରେ ଦୃଢ଼ ନିଶ୍ଚିତ ହେବାପାଇଁ ବୋହୂ ମୌସୁମୀ ସହିତ କଥାହେବା ପାଇଁ ସ୍ଥିର କଲେ । ସିଏ ବୋହୂକୁ ଅନେକ ଥର ମୋବାଇଲ ଫୋନ୍ ଲଗାଇଲେ । କିନ୍ତୁ ତା' ଫୋନ୍ ସୁଇଚ ଅଫ୍ ।

ଦିନକ ପରେ ହଠାତ୍ ସିଏ ଦେଖିଲେ ତାଙ୍କ ଝରକା ପାଖରେ ମାଧବ ଠିଆ ହୋଇଛି । ମାଧବ ତାଙ୍କ ଗାଆଁର ରଘୁନାଥ ମିଶ୍ରଙ୍କ ପୁଅ । ଭୁବନେଶ୍ୱରରେ ଗୋଟେ ବଡ଼ ହୋଟେଲରେ ରୋଷେଇଆ ଭାବରେ ଚାକିରି କରେ । ସ୍ୱାଦିଷ୍ଟ ବ୍ୟଞ୍ଜନ ପ୍ରସ୍ତୁତ କରିବାରେ ସିଏ ବିଶେଷ ଦକ୍ଷ । ମହେଶ୍ୱରବାବୁ ତାକୁ ଦେଖି ଖୁସିହୋଇ କହିଲେ-ଆରେ ମାଧବ ! ବାହାରେ କାଇଁକି ଠିଆହେଇଚୁ ଭିତରକୁ ଆସ ।

-ଦାଦା ! ନମସ୍କାର ।

ମାଧବ ଭିତରକୁ ଆସି ଅତି ସନ୍ତର୍ପଣରେ ଫିସ୍ ଫିସ୍ କରି କହିଲା-ଦାଦା ! ଗୋଟେ କଥା କହିବି, ତମେ ଧୈର୍ଯ୍ୟ ଧରି ଶୁଣିବ । ମୋଟେ ବ୍ୟସ୍ତ ହେବ ନାହିଁ ।

ମହେଶବାବୁ ବ୍ୟଗ୍ର ହୋଇ ପଚାରିଲେ-କ'ଣ କହିବୁ କହ । କ'ଣ କିଛି ଗୁପ୍ତ କଥା ?

-ହଁ, ନିହାତି ଗୁପ୍ତ କଥା । ଏଇ ଦୁଇ ଦିନ ତଳେ ତୁମ ପୁଅ ସୁମନ୍ତ ଆମ ହୋଟେଲକୁ ଆସିଥିଲା । ମ୍ୟାନେଜରଙ୍କ ସାଙ୍ଗରେ କଥାବାର୍ତ୍ତା କରିକି ଗଲା । ଆସନ୍ତା ରବିବାର ଦିନ ତା' ବାହାଘରର ଫଙ୍କ୍‌ସନ ଆଉ ଭୋଜି । ହୋଟେଲ ବୁକ୍ କରିକି ଗଲା । ମୁଁ ଶୁଣିକି ତାଜୁବ । ମୋ ପାଟିରୁ କିଛି ସମୟ କଥା ବାହାରିଲା ନାହିଁ । ଦାଦା ! କଥା କ'ଣ ? ସୁମନ୍ତ କ'ଣ ଆଉ ଥରେ ବାହାହେଉଛି ?

-ବୁଝିଲୁ ମାଧବ ! ମୁଁ ବି ସେଇଆ ଶୁଣୁଚି । ହେଲେ ବିଶ୍ୱାସ କରିପାରୁ ନାହିଁ । ତୁ ଏ କଥା କାନକୁ ଦିକାନ କରିବୁ ନାହିଁ । ତୁ ତ ଜାଣିଚୁ ଆମ ଗାଆଁ କଥା । ସବୁ ଆଡ଼େ ଡିବ ଡିବି ହୋଇ ବାଜିବ । ମୁଁ କାହାକୁ ମୁହଁ ଦେଖେଇ ପାରିବି ନେଇଁ ।

-ନାଇଁ ଦାଦା ! ମୁଁ କାହାକୁ କିଛି କହିବି ନାହିଁ । ହେଲେ ନେଡ଼ି ଗୁଡ଼ କହୁଣୀକୁ ବହିଯିବା ଆଗରୁ ତମେ କିଛି ଗୋଟେ କର । ଏ ବାହାଘରକୁ କୌଣସି ମତେ ବନ୍ଦକର । ନହେଲେ ତମ ମାନ ସମ୍ମାନ ତଳେ ପଡ଼ିଯିବ । ସୁମନ୍ତଟା ଭାରି ଭଲପିଲା ବୋଲି ମୁଁ ଜାଣିଥିଲି । ସିଏ ପୁଣି ଏତେ ତଳକୁ ଖସିଯିବ ସେ କଥା ମୁଁ ମୋଟେ କଳ୍ପନା କରି ନଥିଲି ।

-ହଁ, ମାଧବ ! ମୁଁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରୁଛି । ତେଣିକି ଭଗବାନଙ୍କ ଇଚ୍ଛା ।

ମାଧବ ତାଙ୍କ ଘରୁ ବାହାରି ଯିବାବେଳେ ମହେଶ୍ୱରବାବୁ ତାକୁ ସତର୍କ କରାଇଦେଲେ ସିଏ ଯେପରି କାହାରି ଆଗରେ ଏକଥା ନକହେ । ମହେଶ୍ୱରବାବୁ ବାହାରକୁ ଅବିଚଳିତ ଦେଖା ଯାଉଥିଲେ ବି ତାଙ୍କ ମନ ଭିତରେ ବହୁଥିଲା ଅବିଶ୍ରାନ୍ତ ଝଡ଼ । ସେ ଝଡ଼ ଥିଲା ସମୁଦ୍ରର ଗର୍ଜ୍ଜନଠାରୁ ଆହୁରି ପ୍ରଚଣ୍ଡ, ଆହୁରି ଉଦ୍‌ବେଳନମୟ । ଆସ୍ତେ ଆସ୍ତେ ମନର ବିଷାଦ ମୁହଁକୁ ସଂକ୍ରମିତ ହେଲା । ତଥାପି ନିଜକୁ ସାମାନ୍ୟ ହାଲୁକା କରିବା ପାଇଁ ମୁହଁରେ ଧାରେ ହସ ଖେଳାଇବାକୁ ଚେଷ୍ଟା କରି ବିଫଳ ହେଲେ । ତାଙ୍କ ହସ ଭାରି ନିସ୍ତେଜ ଦିଶିଲା, ଝଡ଼ି ପଡୁ ପଡୁ ଡେମ୍ଫରେ ଅଟକି ଯାଇଥିବା ଝାଉଁଳା ଫୁଲଟିଏ ପରି । ଭାରି କାକୁସ୍ଥ ଶୁଭିଲା ତାଙ୍କ ସ୍ୱର, କୌଣସି ଏକ ଜଟିଳ ପ୍ରଶ୍ନର ଉତ୍ତର ଜଣା ନଥିବା ଜଣେ ଦୁର୍ବଳ ଛାତ୍ରର ସ୍ୱର ପରି ।

ସିଏ ଭାଙ୍ଗି ପଡ଼୍ଲୁ ପଡ଼୍ଲୁ ଠିଆହେଲେ । ଧୈର୍ଯ୍ୟ ଆଉ ସାହସକୁ ଉଜ୍ଜୀବିତ କରି ପରିସ୍ଥିତିର ମୁକାବିଲା କରିବାକୁ ପ୍ରଚେଷ୍ଟା ଆରମ୍ଭ କଲେ । ମୌସୁମୀର ବାପାଙ୍କ ପାଖକୁ ଫୋନ୍ ଲଗାଇଲେ । ଏ ସମୟରେ ତାଙ୍କ ସାହାଯ୍ୟ, ସହଯୋଗ ଆଉ ପରାମର୍ଶ ନିହାତି ଆବଶ୍ୟକ । କିନ୍ତୁ ବାରମ୍ବାର ଫୋନ୍ ଲଗାଇ ସେ ବିଫଳ ହେଲେ । ପ୍ରତ୍ୟେକ ଥର ଫୋନ୍‌ରୁ ଭାସି ଆସୁଛି ଗୋଟିଏ କଥା-ଆପଣ ଯେଉଁ ଫୋନକୁ କଲ୍ କରୁଛନ୍ତି ତାହା ଅପହଞ୍ଚ ଦୂରତାରେ ଅଛି ।

ମୌସୁମୀର ବାପା,ମାଆ ସୁଦୂର ରାଉରକେଲାରେ ଅଛନ୍ତି । ତାଙ୍କ ପାଖକୁ ଯିବା ତାଙ୍କ ପକ୍ଷେ ସମ୍ଭବ ନୁହେଁ । ତାଙ୍କ ଆଣ୍ଠୁ ଯନ୍ତ୍ରଣା ଯୋଗୁ ଏତେବାଟ ବସ୍‌ରେ ଯାଇ ପାରିବେ ନାହିଁ ।

ଅନ୍ୟ ଉପାୟ ନ ପାଇ ମହେଶ୍ୱରବାବୁ ତାଙ୍କ ତିନି ଭଣଜା, ଅଜୁ, ବିଜୁ ଓ ସାନୁକୁ ଫୋନ୍ କଲେ । ସେ ଜାଣନ୍ତି, ଏ ତିନି ଜଣ ଭାରି ପାରିବାର । ସବୁକାମ ନେଇଆଣି ଥୋଇ ପାରନ୍ତି । ଜରୁରୀ କାମ ଥିବାରୁ ଆସନ୍ତା ରବିବାର ସୁମନ୍ତର ନୂଆପଲ୍ଲୀ ସ୍ଥିତ ବାସଭବନରେ ସକାଳ ଦଶଟା ବେଳେ ଏକତ୍ରିତ ହେବାକୁ କହିଲେ । ସମସ୍ତେ ତାଙ୍କୁ କ'ଣ କାମ ଅଛି ବୋଲି ପଚାରିଲେ ।

ମହେଶ୍ୱର ବାବୁଙ୍କର ସେହି ଏକା ଉତ୍ତର-କାନ୍ଥ ବାଡ଼ର ବି କାନ ଅଛି । ଘଟଣାଟି ସଂପୂର୍ଣ୍ଣ ଗୋପନୀୟ । ରବିବାର ଦିନ ଭୁବନେଶ୍ୱର ଆସିଲେ ସବୁ ଜଣାଇବି । ସୌଦାମିନୀ କହିଲେ - ତୁମେ ସୁମନ୍ତକୁ ସିଧା ଫୋନ୍ କରି ରୋକ୍ ଠୋକ୍ କହିଦିଅ, ଏ ବିବାହ ହୋଇ ପାରିବନି ।

- ଆଜି କାଲିକା ପିଲା, ସେ କଣ କଥା ମାନିବ ? ସେତ ସବୁ ଲୁଚାଇ କରୁଛି । କାରଣ ସେ ଜାଣିଛି ଯେ ଆମେ ଏହାର ପ୍ରଚଣ୍ଡ ବିରୋଧ କରିବା । ଯଦି ସେ ଜାଣିବ ଭୁବନେଶ୍ୱରରେ ବାହାଘର କଥା ଆମେ ଜାଣିଲେଣି, ସେ ବାଲେଶ୍ୱର କିମ୍ବା ସମ୍ବଲପୁର ଯାଇ ସେଠାରେ ବାହାହୋଇ ପଡ଼ିବ । ସେଠାରେ ଆମ ହାତ ଗୋଡ଼ ପାଇବ ନାହିଁ । ଭୁବନେଶ୍ୱର ପାଖ ବାଟ, ଜଣାଶୁଣା ଜାଗା । ଆମେ ବାହାଘର ବନ୍ଦ କରିପାରିବା । ସୁମନ୍ତର ସମସ୍ତ ସୁଚିନ୍ତିତ ଯୋଜନା ଫସର ଫାଟିଯିବ ।

ରବିବାର ଦିନ ସକାଳୁ ମହେଶ୍ୱରବାବୁ ଗାଁ ବସ୍‌ରେ ଭୁବନେଶ୍ୱର ଅଭିମୁଖେ ଯାତ୍ରା ଆରମ୍ଭ କଲେ । ସୁମନ୍ତର ନୂଆପଲ୍ଲୀ ସ୍ଥିତ ବାସଭବନରେ ଦଶଟା ବେଳକୁ ପହଞ୍ଚିଗଲେ । ସୁମନ୍ତ ସେଠାରେ ଘରଟିଏ ଭଡ଼ାରେ ନେଇ ରହୁଛି । ସେଠାରେ ଅଜୁ, ବିଜୁ, ସାନୁ ପହଞ୍ଚିଥିବାର ଦେଖି ଆଶ୍ୱସ୍ତ ହେଲେ । ସୁମନ୍ତ କିମ୍ବା ମୌସୁମୀ କେହି ଘରେ ନାହାଁନ୍ତି । ଘରେ ତୁଲା ଏକୁଟିଆ ।

ବାପା, ମା ଉଭୟ ଚାକିରି କଲେ ପିଲାମାନଙ୍କୁ ଏକଲାପଣ ସହିତ ମିତ ବସିବାକୁ ହୁଏ । ବାସ୍ତବତା ସହିତ ସାଲିସ୍ କରି ଜୀବନର ଏକ ନିଆରା ରଣକ୍ଷେତ୍ରରେ ସମୟ ବରୁଦ୍ଧରେ ସଂଗ୍ରାମ ଜାରି ରଖିବାକୁ ପଡ଼ିବ । ପରିସ୍ଥିତି ଅନୁସାରେ ବିଜନତାର ଅଂଧାର ଭିତରେ ସେମାନଙ୍କ ଭିତରେ ଧୈର୍ଯ୍ୟର ଆଲୋକ ବିଛୁରିତ ହୋଇଯାଏ ।

ମହେଶ୍ୱରବାବୁ ଟୁଲାକୁ ପଚାରିଲେ- ଆରେ ଟୁଲା, ବାପା ବୋଉ କାହାଁନ୍ତି ?

- ବାପା ହୋଟେଲ୍‌କୁ ଫୁଲ ଡେକୋରେସନ୍ ଦେଖିବାକୁ ଯାଇଛନ୍ତି । ବୋଉ ଯାଇଚି ମାଉସୀ ଘରକୁ ।

- କୋଉ ହୋଟେଲ୍‌ରେ ବାହାଘର ?

- କଳ୍ପନା ଛକ ପାଖରେ ଥିବା ପୁଷ୍ପକ ହୋଟେଲ୍‌ରେ ।

ମହେଶ୍ୱରବାବୁ ଗୋଟିଏ କୋଠରିରେ ଅଜୁ, ବିଜୁ ଓ ସାନୁ ସଙ୍ଗରେ ଏକ ରୁଦ୍ଧଦ୍ୱାର ବୈଠକ କଲେ । ଘଟଣାର ବିଶଦ ବିବରଣୀ ସେମାନଙ୍କ ଆଗରେ ଉପସ୍ଥାପନ କଲେ । କଳେ ବଳେ କୌଶଳେ ବାହାଘରଟି ବନ୍ଦ କରିବାକୁ ସେମାନେ ନିଷ୍ପତ୍ତି ନେଲେ ।

ଅଜୁ, ବିଜୁ, ସାନୁ କହିଲେ ଯେ ସେମାନେ ସୁମନ୍ତକୁ ଯଥେଷ୍ଟ ସମ୍ମାନ ଦିଅନ୍ତି । ସେ ବି ସେମାନଙ୍କୁ ବହୁତ ସ୍ନେହ କରନ୍ତି । ତାଙ୍କ ସହିତ କିଛି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବା ସେମାନଙ୍କ ପକ୍ଷେ ସମ୍ଭବ ନୁହେଁ । ଅଜୁ କହିଲା, ଭୁବନେଶ୍ୱରର ତିନି ଚାରି ଜଣ ସ୍ଥାନୀୟ ଗୁଣ୍ଡା ତାର ପରିଚିତ । ସେମାନଙ୍କୁ ହୋଟେଲ୍ ପାଖକୁ ସନ୍ଧ୍ୟାବେଳେ ଡକାଇ ସେମାନଙ୍କ ଦ୍ୱାରା ସୁମନ୍ତ ଭାଇ ଓ ତାଙ୍କ ଭାବି ପତ୍ନୀଙ୍କୁ ଅଟକାଇ ହେବ । ଦରକାର ପଡିଲେ, ସେମାନେ ବାହାଘରର ସବୁ ଆୟୋଜନକୁ ବିଧ୍ୱସ୍ତ କରିଦେବେ ।

ସନ୍ଧ୍ୟା ୬ଟା ବେଳକୁ ମହେଶ୍ୱର ବାବୁ, ତିନି ଭଣଜା ଓ ଭୁବନେଶ୍ୱରର ଚାରି ଜଣ ସ୍ଥାନୀୟ ଯୁବକ ପୁଷ୍ପକ ହୋଟେଲ୍ ସାମ୍ନାରେ ପହଞ୍ଚି ଗଲେ । କଥା ହେଲା ସୁମନ୍ତ ଆସିଲେ ଦୂରରୁ ଅଜୁ ସେ ଗୁଣ୍ଡାମାନଙ୍କୁ ସୁମନ୍ତକୁ ଚିହ୍ନାଇ ଦେବ । ସେମାନେ ସୁମନ୍ତ ଓ ତାର ଭାବି ପତ୍ନୀକୁ ହୋଟେଲ୍ ଭିତରକୁ ଛାଡ଼ିବେ ନାହିଁ । ଦରକାର ପଡ଼ିଲେ, ବାହାଘର ସମସ୍ତ ଆରେଞ୍ଜମେଣ୍ଟକୁ ଛିନ୍‌ଛତ୍ର କରିଦେବେ ।

ସନ୍ଧ୍ୟା ସାଢ଼େ ୬ଟା ବେଳକୁ ସୁମନ୍ତ ଓ ଜଣେ ଭଦ୍ରମହିଳା ବେଶଭୂଷା ହୋଇ କାର୍‌ରୁ ଓହ୍ଲାଇଲେ । ଦୂରରୁ ସୁମନ୍ତକୁ ଅଜୁ ସ୍ପଷ୍ଟ ଚିହ୍ନି ପାରିଲା ଓ ଗୁଣ୍ଡାମାନଙ୍କୁ ଚିହ୍ନାଇ ଦେଲା । ଭଦ୍ର ମହିଳାଙ୍କ ମୁଖମଣ୍ଡଳ ଅସ୍ପଷ୍ଟ ଦେଖାଯାଉଥିଲା । ଦେହରେ ଘନ ସବୁଜ ରଂଗର କାଞ୍ଜିବରମ୍ ପାଟ । ମଥାକୁ ଘୋଡାଇ ଦେଇଛି ସୁନେଲି ରଂଗରେ ଝଲମଲ୍ ହେଉଥିବା ଓଢ଼ଣୀ । ଗୌରବର୍ଣ୍ଣ ମୁହଁରେ ପ୍ରସାଧନର ପ୍ରଲେପ । ବିଭିନ୍ନ ରଂଗ ରସ ଓ ଛନ୍ଦରେ ଝଲସୁଥାନ୍ତି ଭଦ୍ରମହିଳା ।

ଅଜୁ ଠାରୁ ଇସାରା ପାଇ ଯୁବକମାନେ ସୁମନ୍ତ ଓ ଭଦ୍ରମହିଳାଙ୍କୁ ଅଟକାଇଲେ । ହୋଟେଲ୍ ଭିତରକୁ ଛାଡ଼ିବେ ନାହିଁ ବୋଲି ଧମକ୍ ଦେଲେ । ସୁମନ୍ତ ସହିତ ସେମାନଙ୍କ ଯୁକ୍ତିତର୍କ ବଢ଼ି ବଢ଼ି ଚାଲିଲା ।

- ଆରେ ଅଜୁ, ବିଜୁ, ସାନୁ ! ତମେ ସବୁ ସେଠି ଠିଆ ହୋଇ କ'ଣ କରୁଛ ? ଏ ଗୁଣ୍ଡାମାନେ ତମ ଭାଇଙ୍କ ସାଙ୍ଗରେ ଗଣ୍ଡଗୋଳ କରୁଛନ୍ତି ।

ମୌସୁମୀ ଭାଉଜଙ୍କ କଣ୍ଠସ୍ୱର ଶୁଣି ସେମାନେ ସ୍ତମ୍ଭୀଭୂତ ହେଲେ । ଦୌଡ଼ିଯାଇ ସେଠାରେ ସୁମନ୍ତ ଭାଇଙ୍କ ସହିତ ମୌସୁମୀ ଭାଉଜଙ୍କୁ ନବବଧୂ ବେଶରେ ସୁସଜ୍ଜିତା ହୋଇଥିବାର ଦେଖି ଆନନ୍ଦରେ ଅଭିଭୂତ ହେଲେ ।

ଆଶ୍ଚର୍ଯ୍ୟାନ୍ୱିତ ମହେଶ୍ୱରବାବୁ ଧୀର ପଦକ୍ଷେପରେ ସେମାନଙ୍କର ନିକଟତର ହେଲେ । ଅଜୁ ଗୁଣ୍ଡାମାନଙ୍କୁ କହିଲା - ଭାଇମାନେ, ଏ ହେଉଛନ୍ତି ଆମ ମୌସୁମୀ ଭାଉଜ । ଆମ ଭିତରେ କିଛି ଭୁଲ୍ ବୁଝାମଣା ହୋଇଯାଇଛି । ସେମାନଙ୍କୁ ହୋଟେଲ୍‌କୁ ଯିବାକୁ ଦିଅ । ତୁମେ ସବୁ ଗୁହ ଭୋଜି ଖାଇକି ଯିବ ।

ଗୁଣ୍ଡାମାନେ ଆଡ଼ହୋଇଗଲେ ।

ସୁମନ୍ତ କହିଲା - କିରେ, ତୁମେ ସବୁ ଏଠି କେମିତି ? ବାପା ଏଠାକୁ କେତେବେଳେ ଆସିଲେ ? ଏ ଯୁବକମାନେ କ'ଣ ତୁମ ଜଣାଶୁଣା ?

ଅଜୁ କହିଲା - ମାମୁ ଟୁଲା ଠାରୁ ଖବର ପାଇଲେ ଯେ ତମେ ଆଉ ଥରେ ବିବାହ କରୁଛ । ତେଣୁ ଏହି ଯୁବକମାନଙ୍କ ସାହାଯ୍ୟରେ ଏ ବାହାଘରକୁ ବନ୍ଦ୍ କରିବା ପାଇଁ ଆମେ ବ୍ୟବସ୍ଥା କରିଥିଲୁ ।

ଘଟଣାର ସବୁ ଚେହେରା ସୁମନ୍ତ ଆଖି ଆଗରେ ଫର୍ଦ୍ଦ ଫର୍ଦ୍ଦ ହୋଇ ଖୋଲି ଯାଉଥିଲା । ସେ କହିଲା - ଆମର ମ୍ୟାରେଜ୍ ଆନିଭର୍ସାରି ପାଇଁ ମାସେ ହେଲା ଆୟୋଜନ ଚାଲିଛି । ଟୁଲା ଆନିଭର୍ସାରି ଶବ୍ଦର ଅର୍ଥ ବୁଝିପାରିନାହିଁ । ତେଣୁ ମୋର ମ୍ୟାରେଜ୍ ହେବ ବୋଲି ଧରି ନେଇଛି ।

ମହେଶ୍ୱରବାବୁ କହିଲେ - ଟୁଲା କହୁଥିଲା ଏହା ବନ୍ଦ କରିବାକୁ ମୌସୁମୀ ମାସେ କାଳ ତୋ ସଙ୍ଗେ କଳି ତକରାଳ କରୁଛି । ସବୁବେଳେ ରାଗରେ ପଞ୍ଚମ ।

- ହଁ, ମୌସୁମୀ କହୁଥିଲା ମ୍ୟାରେଜ୍ ଆନିଭର୍ସରିରେ କାହିଁକି ଏତେ ପଇସା ଖର୍ଚ୍ଚ କରୁଛ ? ବରଂ ସେ ପଇସା ରଖ । ଆମର ଭୁବନେଶ୍ୱରରେ ଜାଗା ଖଣ୍ଡେ ନାହିଁ । ପଇସା ରଖି ବରଂ ଜାଗା କିଣିବା ପାଇଁ ମନ ଦିଅ । ମୁଁ କହିଲି, ଆମେ ସବୁ ସାଙ୍ଗମାନଙ୍କ ମ୍ୟାରେଜ୍ ଆନିଭର୍ସାରିରେ ଯୋଗ ଦେଇ ଖାଉଛେ । ମୋତେ ଖରାପ୍ ଲାଗୁଛି । ମୁଁ ସେମାନଙ୍କୁ ଖୁଆଇବି । ସେଥିପାଇଁ ଆମ ଭିତରେ ମନାନ୍ତର ଓ ମତାନ୍ତର ଲାଗି ରହିଥିଲା ।

ମହେଶ୍ୱରବାବୁ ମୌସୁମୀକୁ ପଚାରିଲେ-ଆଚ୍ଛା ମାଆ ! ତୋ ଫୋନ୍‌ଟା କାହିଁକି ସୁଇଚ୍ ଅଫ୍ ଅଛି ।

ମୌସୁମୀ କହିଲା- ମୁଁ ଆପଣଙ୍କୁ ଫୋନ୍ କରି ଏକଥା ଜଣାଇବାକୁ ଗଲାବେଳକୁ ଇଏ ମୋ ଫୋନ୍‌ଟା ମୋ ହାତରୁ ଛଡ଼ାଇ ନେଇ ଫିଙ୍ଗିଦେଲେ । ସେଇ ଦିନଠୁ ମୋ ଫୋନ୍ ଖରାପ ଅଛି ।

-ଆଚ୍ଛା, ତୋ ବାପା, ବୋଉଙ୍କ ଫୋନ୍ କ'ଣ ଠିକ୍ ନାହିଁ? ତାଙ୍କୁ ଫୋନ୍ ଲଗାଇଲି ହେଲାନାହିଁ କାହିଁକି ?

-ମୋ ବାପା ବୋଉ ମାସେ ହେଲା ମୋ ଭାଇଙ୍କ ପାଖକୁ ଆମେରିକା ଯାଉଛନ୍ତି । ଆଉ ପନ୍ଦର ଦିନ ପରେ ଫେରିବେ ।

ମହେଶବାବୁ ସବୁ ଶୁଣି ହସ ହସ ମୁହଁରେ ସୁମନ୍ତକୁ କହିଲେ-ତୁ ଆଉ ଥରେ ବାହା ହେଉଛୁ ଶୁଣି ତୋ ବୋଉ ଓ ମୁଁ ବଡ଼ ଚିନ୍ତାରେ ପଡ଼ିଯାଇଥିଲୁ । ଯାହା ହେଉ ଏବେ ବହୁତ ଉଶ୍ୱାସ ଲାଗୁଛି ।

ସୁମନ୍ତ କହିଲା - ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ । ଯାହା ହେଉ ପରିସ୍ଥିତି ଆପଣମାନଙ୍କୁ ପୁଷ୍ପକ ହୋଟେଲ୍ ପାଖକୁ ବିନା ନିମନ୍ତ୍ରଣରେ ଟାଣି ଆଣିଲା । ବହୁତ ଭଲ ହେଲା । ତୁମେମାନେ ସମସ୍ତେ ଆସ, ଡିନର କରିବା । ଭଗବାନଙ୍କର ଅସୀମ କରୁଣା । ଆଜିର ଦିନରେ ଆମେ ବାପାଙ୍କର ଆଶୀର୍ବାଦ ଓ ସାନଭାଇମାନଙ୍କର ଶୁଭେଚ୍ଛା ପାଇପାରିବୁ ।

ମହେଶ୍ୱର ବାବୁଙ୍କ ମୁଣ୍ଡରେ ଲଦି ହୋଇଯାଇଥିବା ବରଫ ପାହାଡ଼ ତରଳି ଯାଇଥିଲା । ସମସ୍ତଙ୍କ ମନରେ ଖୁସିର ଲହଡ଼ି ଖେଳିଗଲା । ମୌସୁମୀ ଲାଜରେ ଝାଉଁଳି ଯାଇ ମହେଶ୍ୱର ବାବୁଙ୍କୁ ଦଣ୍ଡବତ କଲା ।

ଏତିକି ବେଳେ ଟୁଲା ଦୌଡ଼ି ଆସି କହିଲା- ବାପା, ସଜାସଜି ବଢ଼ିଆ ହେଇଛି । ଗୁପ୍‌ଚୁପ୍, ପାନିପୁରି ଆସିଗଲାଣି । ତମ ସାଙ୍ଗମାନେ ଆସିଗଲେଣି । ଶୀଘ୍ର ଆସ । ତମର ବାହାଘର ହେବ ।

ସମସ୍ତେ ଠୋ ଠୋ ହୋଇ ହସିଉଠିଲେ ।

ମହେଶ୍ୱରବାବୁ ଟୁଲାକୁ ସ୍ନେହରେ ଧରି ପକାଇ କହିଲେ - ଏ ହେଉଛି ନାଟର ଗୋବର୍ଦ୍ଧନ ।



*('ଚିରସମର୍ଥୀ' ପତ୍ରିକାର ୨୦୧୯ ପୂଜା ସଂଖ୍ୟାରେ ପ୍ରକାଶିତ)*

# ମନିଅର୍ଡର

ମେନକା ପିଲାମାନଙ୍କୁ ବେଲାଏ ଲେଖାଏଁ ପଖାଳ ବାଢ଼ିଦେଇ ପଦାକୁ ଆସି ଦେଖିଲା, ତା ଘର ଆଗରେ ରଘୁଆ ପୋଷ୍ଟ ପିଅନ୍ । ଖାକି ପୋଷାକ । ମୁଣ୍ଡରେ ଟୋପି । ହାତରେ ମେଞ୍ଚାଏ ଚିଠି ଓ କାଗଜ ।

ରଘୁଆ କହିଲା - ମେନକା, ତୋ ନାମରେ ହଜାରେ ଟଙ୍କା ମନି ଅର୍ଡର ଆସିଛି । ଦସ୍ତଖତ କର । ଟଙ୍କା ନେଏ । ମୋତେ କେତେ ଆଡ଼େ ବୁଲିବାକୁ ପଡ଼ିବ । ମୁଁ ଯିବି ।

ମେନକା ବଲବଲ କରି ରଘୁଆକୁ ଅନାଇଥିଲା । କିଛି ବୁଝିପାରୁନଥିଲା, ତା ପାଖକୁ କିଏ ଟଙ୍କା ପଠାଇବ ! ପୁଣି ହଜାରେ ଟଙ୍କା । ତା ବାପା, ଭାଇ, ବନ୍ଧୁବାନ୍ଧବ ସମସ୍ତଙ୍କର ଅଭାବି ସଂସାର । କାହାର ବଳି ପଡ଼ିଲା ଯେ ମନି ଅର୍ଡର ପଠାଇଛନ୍ତି ।

ତା ବାପା, ଭାଇ, ବନ୍ଧୁ ବାନ୍ଧବ ସବୁ ପାଞ୍ଚ କୋଶ ଭିତରେ ଅଛନ୍ତି । ସାଇକେଲ ମାରିଦେଲେ ତା ପାଖରେ ପହଞ୍ଚିଯିବେ । ମନି ଅର୍ଡର କାହିଁକି ପଠାଇବେ ?

ମେନକା କହିଲା - ଏ ଟଙ୍କା କିଏ ପଠାଇଛି ? ରଘୁଆ କହିଲା - ଟଙ୍କା ବମ୍ବେରୁ ଆସିଛି । କାହା ପାଖରୁ ଆସିଛି ତା ନାଁ ଟା ଭଲ ଭାବରେ ପଢ଼ି ପାରୁନି । ଆମ ଆଡ଼ିଆ ନାଁ ନୁହଁ । ତୋ ନାଁରେ ଟଙ୍କା ଆସିଛି । ତୁ ନେବୁ । କୋଉଠୁ ଆସିଛି, କାହାଠୁ ଆସିଛି, ଜାଣି କଣ ପାଇବୁ ? ଚକୁଳି ଖାଇବା ଲୋକ, ବିନ୍ଧ ଗଣୁଛୁ କାହିଁକି ?

ମେନକା ମନରେ ପାପ ଛୁଉଁଥିଲା । ଏ ଟଙ୍କା ତାର ନୁହେଁ । ପର ଟଙ୍କା କାହିଁକି ନେବ ? ବେଙ୍ଗ ପେଟରେ ଘିଅ ହଜମ ହେବନାହିଁ । ବରଂ ଯେମିତି ସୁଖେ ଦୁଃଖେ ତାର ସଂସାର ଚାଲିଛି, ସେମିତି ଚଳାଇନେବ । ରଘୁଆ ଭାଇ, ମୋତେ ଏ ଟଙ୍କା ଛୁଇଁବାକୁ କାଇଁ ଡର ଲାଗୁଛି ?

- ଆଲୋ ଏ ତୋ ଟଙ୍କା । ତୋ ନାଁ ପରିଷ୍କାର ଲେଖାଯାଇଛି । କ୍ୟାରଫରେ ମକରା ନାଆଁ । ଟାଙ୍ଗର ସାହି, ଗାଁ ଓ ପୋଷ୍ଟ ଅଫିସ୍ ହରିପୁର । ଆମ ଗାଁରେ ଟାଙ୍ଗର ସାହିରେ ମେନକା ଓ ମକରା ଆଉ କିଏ ଅଛି ? ତୁ ଏତେ ମୁଣ୍ଡ ଖେଳାନା, ଟଙ୍କାଟା ନେ ।

ମେନକା ଥଥ ମମ ହେଉଥିଲା । ରଘୁଆ ତା ଦସ୍ତଖତ ନେଇ ତା ହାତରେ ହଜାର ଟଙ୍କା ଗୁଞ୍ଜି ଦେଇ ସାଇକେଲ୍‌ରେ କୁଆଡ଼େ ଉଭାନ୍ ହୋଇଗଲା ।

ରଘୁଆର କାମ ସରିଗଲା, ମେନକାର ଚିନ୍ତା ଆରମ୍ଭ ହେଲା । ତାର ସବୁ ଜଣା ମଣିଷ ଆଉ ଜଣା ଠିକଣା ପାଞ୍ଚ କୋଶ ମଧ୍ୟରେ । ସାତ ଦରିଆ ପାରି ବମ୍ବେ ସହରରୁ ତାକୁ କିଏ ଟଙ୍କା ପଠାଇବ ? ସେ ଟଙ୍କାକୁ ପାଖରେ ରଖିବାକୁ ଓ ଖର୍ଚ୍ଚ କରିବାକୁ ତାକୁ ଡର ଲାଗୁଥିଲା । ଟଙ୍କାକୁ ଖର୍ଚ୍ଚ କଲାପରେ ଯଦି ସେ ଲୋକ ଠେଙ୍ଗା ଧରି ଆସି କହିବ, ମୋ ଟଙ୍କା ସୁଧ ସହିତ ଫେରା, ମୁଁ କଅଣ କରିବି ?

ମେନକା ଭୟରେ ଓ ଆଶଙ୍କାରେ ଜଡ଼ସଡ଼ ହେଉଥିଲା । ଟଙ୍କାକୁ ଅତି ଯତ୍ନରେ ତା ବାକ୍ସ ଭିତରେ ରଖି ଦେଇ ନମସ୍କାରଟିଏ ପକାଇଲା । ସେ ଟଙ୍କାକୁ ନଛୁଇଁବାକୁ ମନେ ମନେ ସ୍ଥିର କଲା ।

ପୁଣି ମାସକ ପରେ ଦେଖିଲା ତା' ଦୁଆର ମୁହଁରେ ରଘୁଆ ଠିଆ ହୋଇଛି । ତାକୁ ଦେଖି ଚମକି ପଡ଼ିଲା । ବୋଧେ ଟଙ୍କା ଫେରାଇ ନେବାକୁ ଆସିଛି । ସେ ମନେ ମନେ ଖୁସି ହେଉଥିଲା । ଯାହା ହେଉ ସେ ପଇସାରେ ସେ ହାତ ମାରିନାହିଁ । ପର ଧନରେ ହାତ ମାରିଲେ ଯେ ମହାପାପ ।

ରଘୁଆ ଖଡ଼ଖଡ଼ିଆ ୧୦୦ ଟଙ୍କିଆ ଦଶଟା ନୋଟ୍ ବାହାର କରି ମେନକା ହାତରେ ଗୁଞ୍ଜି ଦେଇ କହିଲା-ଶୀଘ୍ର ଦସ୍ତଖତ ଦେ ।

ମେନକା ତାକୁ ବଲବଲ କରି ଚାହୁଁଥିଲା । ଥଥ ମମ ହୋଇ ଦସ୍ତଖତ ଦେଲା ।

ରଘୁଆ କହିଲା –ତୁ କାହିଁକି ଏମିତି ଭେଳିକି କାଟୁଛୁ ? ଘରକୁ ଲକ୍ଷ୍ମୀ ଆସୁଛନ୍ତି, ତାକୁ ଧର । ତାଙ୍କୁ ଅନାଦର କଲେ , ଏମିତି ନାତ ମାରିବେଯେ ଚିତ୍‌ପଟାଙ୍ଗ ହୋଇ ପଡିବୁ ।

ମେନକା ମନ ମାନିଲାନି । ପରଧନ, ଛୁଇଁବା ପାପ । ମେନକା ଟଙ୍କାକୁ ନେଇ ବାକ୍ସରେ ସାଇତି ଦେଲା ।

ମେନକାର ପାଞ୍ଚ ପ୍ରାଣୀର କୁଟୁମ୍ବ । ସ୍ୱାମୀ ମକରା, ଦୁଇ ଝିଅ ସାନି, ମାନି ଆଉ ଗୋଟିଏ ପୁଅ ଶଙ୍କରା । ମକରା ରାଜମସ୍ତ୍ରୀ କାମ କରୁଥିଲା । ଭଲ ପଇସା ପାଉଥିଲା । ଯାହା ପାଏ, ଅଧା ନିଶାପାଣିରେ ଖର୍ଚ୍ଚ କରିଦିଏ । ବାକି ପଇସାରେ ପାଞ୍ଚ ପ୍ରାଣୀ କୁଟୁମ୍ବ ଚଳି ଯାଉଥିଲେ । ପେଟକୁ ଦାନା ଆଉ ଦିହକୁ କନାର ଅଭାବ ନଥିଲା ।

ମେନକା ମକରାକୁ କେତେ ବାର ନିଶାପାଣି ଛାଡ଼ିବାକୁ ନେହୁରା ହୋଇ କହିଛି । ମକରା ମାନେନା । ମିଠା କଥା କହି ମେନକାର ଅବୁଝା ମନକୁ ବୁଝାଇ ଦିଏ । କହେ – ରାଜ ମସ୍ତ୍ରୀ କାମ ଭାରି କଷ୍ଟ । ଦିହ ମଜରା ହେଇଯାଉଛି । ନିଶା ପାଣି ଟିକେ ପକାଇଲେ

ଦିହ ଦରକ ଚାଲି ଯାଉଛି । ସେତକ ନ ହେଲେ ମୁଁ କାମ କରି ପାରିବିନି । ଆମେ ଉପାସ ରହିବା । ନିଶା ଖାଇ ମୁଁ କଣ ପାଟି ତୁଣ୍ଡ କରୁଛି ନାଁ ମାରଧର କରୁଛି । ପିଇ ଦେଇ ନିଘୋଡ଼ ନିଦରେ ଶୋଇପଡୁଛି ।

ମେନକା ଚୁପ୍ ହୋଇଯାଏ ।

ଆଠ ମାସ ହେବ ମେନକାର ଚିନ୍ତା ବଢ଼ିଯାଇଛି । ମକରାର ହାତ ଭାଙ୍ଗିଯିବାରୁ ତାହା ଅକାମୀ ହୋଇ ଯାଇଛି । ସେ ହାତରେ ରାଜମସ୍ତ୍ରୀ କାମ କରିପାରୁନାହିଁ । ତାର ଘରର ଅଣ୍ଟା ଭାଙ୍ଗି ଯାଇଛି । କେମିତି ଆକ୍ସିଡ଼େଣ୍ଟ ହେଲା ବୋଲି ମେନକା ପଚାରିବାରୁ ମକରା କହିଲା ଯେ ସେ ପାଖ ଗାଆଁରୁ କାମ ସାରି ଘରକୁ ଫେରୁଥିଲା । ସମୟ ସଂଜ ସାତଟା ହେବ । ଆଗରୁ ଗୋଟେ ବଡ଼ କାର୍ ଆସୁଥିଲା । ସେ କାରର ସାମ୍ନା ଆଲୁଅ ତା' ଆଖିରେ ଚକ୍ ଚକ୍ ହୋଇ ପଡ଼ିଲା । କିଛି ସମୟ ତା ଆଖି ଜଳକା ହୋଇଗଲା । ତାକୁ କିଛି ଦିଶିଲା ନାହିଁ । କାର୍‌ର ଧକ୍କାରେ ସେ ସାଇକେଲ୍ ସହିତ ରାସ୍ତା କଡ଼ରେ ପଡ଼ିଯିବାରୁ ତା ଡାହାଣ ହାତଟା ଭାଙ୍ଗିଗଲା ।

ମକରାର କଥାକୁ କେହି ବିଶ୍ୱାସ କଲେନି । ମଦୁଆ,ମାଛୁଆ ଲୋକ ଯାହା କହିଲେ ବି ଲୋକେ ଭାବନ୍ତି ସେ ଫିସାଦିଆ, ମିଛୁଆ । ମଦ ନିଶାରେ ଟଳି ପଡ଼ିଚି , ଅଥଚ କାର୍ ଡ୍ରାଇଭର ମୁଣ୍ଡରେ ଅଠା ବୋଲି ଦେଉଚି । ମଦ ନିଶାରେ ପାଣିରେ ସର ପକାଇ ଦେଉଛି । ଆମ ଗାଆଁ ରାସ୍ତାରେ ଅକାଳେ, ସକାଳେ ଗୋଟେ ଅଧେ ମୋଟର ଗାଡ଼ି ଯାଉଛି । ଯାରି ବେଳକୁ ଗାଡ଼ିଟା ସାମ୍ନାରେ ହାବୁଡ଼ି ଗଲା ।ଏଡ଼ିକି ପବନା, ଗାଲୁଆ ଦୁନିଆରେ ନାହାଁନ୍ତି । ଏ ମନଗଢ଼ା କାହାଣୀ ମକରାର ନୁହଁ, ତା' ନାଲି ପାଣିର କରାମତି ।

ମକରା କାନ ମୁଣ୍ଡ ଆଉଁଶି ରହିଲା । ତିନି ତୁଣ୍ଡରେ ଛେଳି କୁକୁର । ସେ ଭାବିଲା ବୋଧ ହୁଏ ମଦ ନିଶାରେ ତା' ଆଖି ଆଗରେ ପ୍ରଚଣ୍ଡ ଶକ୍ତିଶାଳୀ ଆଲୋକ ରଶ୍ମୀ ବିଚ୍ଛୁରିତ ହୋଇଗଲା ପରି ତାକୁ ପ୍ରତୀୟମାନ ହେଲା ।

ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି । ପ୍ରତିକୂଳ ପରିସ୍ଥିତି ସହିତ ମୁକାବିଲା କରିବା ପାଇଁ ମେନକା ମନେ ମନେ ଯୋଜନା ପ୍ରସ୍ତୁତ କରିଥିଲା । ଜୀବନ ଯୁଦ୍ଧରେ ହାରି ନଯାଇ ତାକୁ ବଞ୍ଚିବାକୁ ପଡ଼ିବ ଓ ପିଲାମାନଙ୍କୁ ବଞ୍ଚାଇ ରଖିବାକୁ ପଡ଼ିବ ।

ମକରା ତା ଘରେ ଥିବା ଗାଈ ବାଛୁରୀଙ୍କର ଯତ୍ନ ନେଲା । ଘର ପଛଆଡ଼ ବାଡ଼ିରେ ଶାଗ, ବାଇଗଣ, ଭେଣ୍ଡି, ଜହ୍ନି, କଖାରୁ ଗଛ ଲଗାଇଲା । ଦୁଧ ବିକି ଓ ପରିବା

ବିକି ଯାହା ଦି ପଇସା ରୋଜଗାର କଲା । ହେଲେ ପାଞ୍ଚ ପ୍ରାଣୀ କୁଟୁମ୍ବ । ସମୁଦ୍ରକୁ ଶଙ୍ଖେ ପଣା । ମେନକା ସ୍ୱାଇଁ ଘରେ ଘର ପାଇଟି କଲା । ପିଲାଙ୍କ ପେଟ ପାଇଁ ନିଜ ସ୍ୱାଭିମାନକୁ ବଳି ଦେଇଦେଲା । ପଡୋଶୀ ସ୍ତ୍ରୀ ଲୋକମାନେ ଦେଖେଇ ଶିଖେଇ କହିଲେ -ସଇଁ ଘର ପୋଇଲି, ଅଇଁଠା ଖାଇ । ମେନକା ଏ କାନରେ ଶୁଣି ସେ କାନରେ ବାହାର କରିଦିଏ । ମନକୁ ଦୃଢ଼ କରେ ।

ପେଟରେ ଓଦା କନା ଦେବା ଅପେକ୍ଷା ଖଟି ଖାଇଲେ କ୍ଷତି କ'ଣ ? ସେ ଉପାସ ରହିଲେ କେହିତ ଆସି ଠିଆ ହେଉ ନାହାଁନ୍ତି । ତେଣୁ ତାଙ୍କ କଥା ଶୁଣିବ କାହିଁକି ? ସବୁ ଚେଷ୍ଟା ସତ୍ତ୍ୱେ ଅଭାବ ଅନଟନ ମାଡ଼ି ଆସୁଥିଲା । ମେନକା ଠିକ୍ କରିଥିଲା, ମିଶ୍ର ଘର ଦୁଇ ପୁଅଙ୍କ ଘରକୁ ତା ଦୁଇ ଝିଅକୁ ପଠାଇବାକୁ । ସେଠାରେ ବୋଲହାକ ଓ ଛୁଆକୁ ଧରି ଚଳିଯିବେ । ମିଶ୍ର ଘର ଦୁଇ ପୁଅ ଭଲ ଚାକିରି କରିଛନ୍ତି । ଜଣେ କଟକରେ ଆଉ ଜଣେ ଭୁବନେଶ୍ୱରରେ । ସୁବିଧା ଅସୁବିଧାରେ ପିଲାଙ୍କୁ ଯାଇ ଦେଖି ଆସି ପାରିବ । ତା ଛଡ଼ା ମିଶ୍ର ଘର ଦୁଇ ବୋହୂ ବହୁତ ଭଲ । ଝିଅ ଦୁଇଟିଙ୍କୁ ଝିଅ ଭଳି ରଖିବେ ।

ରାଜମିସ୍ତ୍ରୀ କାମ ବନ୍ଦ ହେବା ପରେ ମକରା ମଦ ପାଣି ଛାଡ଼ି ଦେଇଛି । ପାଖରେ ପଇସା ଅଛି ଯେ ଖାଇବ । ଅବୋଲକରା ଏବେ ବୋଲମାନି ଗୁଳାରେ ଚାଲୁଛି । ଗାଈ କାମ, ବାଡ଼ିକାମ ଓ ଘରର ଅନ୍ୟାନ୍ୟ କାମ କରି ମେନକାକୁ ସହାୟତାର ହାତ ବଢ଼ାଇ ଦେଉଛି ।

ଏବେ ଘରକୁ ଟଙ୍କା ଆସୁଛି । ଖର୍ଚ୍ଚ କରିବାକୁ ତାର ହାତ ଯାଉନି । ସବୁବେଳେ ମନରେ ଦକ-କାହାର ଟଙ୍କା, କିଏ ତା ପାଖକୁ ପଠାଉଛି ।

ଦିନେ ସକାଳୁ ସକାଳୁ ଭଲ ଅଧସେରେ ବସା ଦହି ଧରି ସନାତନବାବୁଙ୍କ ଘରକୁ ଗଲା । ସନାତନବାବୁ ଗାଁ ପୋଷ୍ଟ ଅଫିସ୍‌ର ପୋଷ୍ଟମାଷ୍ଟର । ଦେବୋପମ ବ୍ୟକ୍ତିତ୍ୱ । ସୁଖରେ ଦୁଃଖରେ ଗାଁ ଲୋକ ଆସିଲେ ସେମାନଙ୍କୁ ସୁପରାମର୍ଶ ଦିଅନ୍ତି । ପର ସୁଖରେ ସୁଖୀ, ପର ଦୁଃଖରେ ଦୁଃଖୀ ।

ମେନକା ସନାତନବାବୁଙ୍କୁ କହିଲା- ବାବୁ, ଏ କି ମନି ଅର୍ଡର ପ୍ରତି ମାସରେ ଆସୁଛି । ଏ ମୋ ଜିନା ହାରାମ୍ କରିସାରିଲାଣି । ଏ ଟଙ୍କା କିଏ, କାହିଁକି ପଠାଉଛି, ମୁଁ ଜାଣିପାରୁନି । ପରଧନ, ଛୁଇଁବାକୁ ହାତ ଯାଉନି । ମନରେ ଦକ, କାଳେ ଟଙ୍କା ପଠାଉଥିବା ଲୋକ କେବେ ଆଦାୟ କରିବାକୁ ଆସିବ ।

ସନାତନ ବାବୁ ଭାବୁଥିଲେ, ଆଜିର ଦୁନିଆରେ ରାତାରାତି ବଡ଼ ଲୋକ

ହୋଇଯିବା ପାଇଁ ପ୍ରତିଯୋଗିତା ଚାଲିଛି । ପରଧନକୁ କଳେବଳେ କଉଶଳେ ଲୁଟି ନେବା ପାଇଁ ଲୋକେ ଚ୍ରକ୍ରବ୍ୟୁହ ରଚନା କରୁଛନ୍ତି । ପ୍ରାଚୁର୍ଯ୍ୟ ଓ ସମୃଦ୍ଧିର ଯଜ୍ଞବେଦୀରେ ମୂଲ୍ୟବୋଧ ଓ ନୈତିକତାର ବଳିଦାନ କରାଯାଉଛି । ଖବର କାଗଜ ଓ ଟିଭି ଖୋଲିଲେ ଏହାର ନଗ୍ନ ଚିତ୍ର ଦେଖିବାକୁ ମିଳୁଛି । କିନ୍ତୁ ଗରିବ, ଅଭାବୀ ସ୍ତ୍ରୀ ଲୋକଟିଏ । ଘରକୁ ଆସୁଥିବା ଟଙ୍କା ଛୁଇଁବାକୁ ନାରାଜ । ଦାରିଦ୍ର୍ୟ ଓ ଅଭାବର ଅନ୍ଧାର ଭିତରେ ନୈତିକତା ଓ ମୂଲ୍ୟବୋଧର ଦେଦୀପ୍ୟମାନ ଶିଖା ଦୀପ୍ତିମନ୍ତ ।

ସନାତନ ବାବୁ କହିଲେ- ତୁ ବ୍ୟସ୍ତ ହୋନା । ପଇସା ତୋ ଠିକଣାରେ ଆସୁଛି । ପଇସା ତୋର । କେହି ବଣ୍ଡ ସାଇନ୍ କରି ତୋତେ ଲୋନ୍ ଦେଇନାହିଁ ଯେ ଆଦାୟ କରିବାକୁ ଆସିବ । ତୁ ଜମା ଡରନା ମୁଁ ଅଛି । ତୁ ସେ ଟଙ୍କା ଠିକ୍ ବାଟରେ ଲଗା । ମୁଁ ଶୁଣିଛି, ତୋ ପୁଅ ଓ ଦୁଇ ଝିଅ ଭଲ ପାଠ ପଢୁଛନ୍ତି । ତାଙ୍କ ପାଠ ପଢ଼ାରେ ସେ ଟଙ୍କା ଲଗା । ସେମାନେ ନିଜ ଗୋଡ଼ରେ ନିଜେ ଠିଆ ହେଲେ ତୋର ଦୁଃଖ ଘୁଞ୍ଚିଯିବ । ତୁ ଭାବେ, ଭଗବାନ୍ ତୋର ପୂର୍ବ ଜନ୍ମର ପୂଣ୍ୟ ହେତୁ ତୋ ପାଖକୁ ଟଙ୍କା ପଠାଉଛନ୍ତି । ହଁ, ଯଦି ଟଙ୍କା ବଳେ, ତାକୁ ହାଣ୍ଡି, ବାକ୍ସ କିମ୍ବା ଆଟିକାରେ ଲୁଚାଇ ରଖନା । କାଲି ଆସେ, ପୋଷ୍ଟ ଅଫିସ୍‌ରେ ଗୋଟେ ବହି ଖୋଲିଦେବୁ । ବଳକା ପଇସା ସେଇଥିରେ ରଖିବୁ ।

ମେନକା ମନ ଆକାଶରେ ଘୋଟି ଆସିଥିବା କଳାହାଣ୍ଡିଆ ମେଘ ଘୁଞ୍ଚି ଘୁଞ୍ଚି ଯାଉଥିଲେ । ସୂର୍ଯ୍ୟଙ୍କ ଆଲୋକରେ ଆଲୋକିତ ହେଉଥିଲା ତାର ମନ ଆକାଶ । ବୁଡ଼ିଯାଉଥିବା ବେଳେ ତାକୁ ପୋଷ୍ଟମାଷ୍ଟରଙ୍କ କଥା ନିର୍ଭରଯୋଗ୍ୟ ଆଶ୍ରା ପରି ମନେ ହେଉଥିଲା ।

ସନାତନ ବାବୁ ଭାବୁଥିଲେ- ଭଗବାନ ଏ ସୃଷ୍ଟିରେ କେତେ ଜାତି ମଣିଷ ସୃଷ୍ଟି କରିଛନ୍ତି । କିଏ ପରଧନ ଅପହରଣ କରିବା ପାଇଁ ରକ୍ତରେ ହୋରି ଖେଳୁଛି ତ କିଏ ପରଧନ ଛୁଇଁଲା ବେଳକୁ ଅପରାଧବୋଧର ଅସହ୍ୟ ଯନ୍ତ୍ରଣାରେ ଜଳିପୋଡ଼ିଯାଉଛି । କାହା ମନରେ ବିବେକର ଅଖଣ୍ଡ ରାଜତ୍ୱ ତ କାହା ମନରେ ପାପର ପ୍ରଚଣ୍ଡ ଆଧିପତ୍ୟ ।

ପ୍ରତି ମାସ ପ୍ରଥମ ସପ୍ତାହରେ ଟଙ୍କା ଆସିବାରେ ଲାଗିଥାଏ । ବର୍ଷକୁ ବର୍ଷ ଟଙ୍କାର ପରିମାଣ ବଢ଼ି ଚାଲିଥାଏ । ଗାଁ ଟୋକାଏ ବରଗଛ ଚାନ୍ଦିନୀ ଉପରେ ବସି ମେନକାକୁ ଚାହିଁ ଟାପରା କରନ୍ତି - ତୋର ସରକାରୀ ଚାକିରି । ପ୍ରତି ବର୍ଷ ଇନକ୍ରିମେଣ୍ଟ ପାଉଛୁ । ମହଙ୍ଗା ଭତ୍ତା ବଢ଼ିବାରେ ଲାଗିଛି ।

ମେନକା ଶୁଣି ନଶୁଣିଲା ଭଳି ଭଙ୍ଗି ଦେଖାଇ ଟିକେ ହସିଦିଏ । ଈଶ୍ୱରଙ୍କୁ

ତାଙ୍କର କରୁଣା ପାଇଁ ମନେ ମନେ ନମସ୍କାର କରେ ।

ଏ ଟଙ୍କା କିଏ ପଠାଉଛି, କାହିଁକି ପଠାଉଛି କେହି କୂଳ କିନ୍ନାରା ପାଉନଥିଲେ । ସମସ୍ତଙ୍କୁ ଏହା ଏକ ପ୍ରହେଳିକା ଭଳି ଲାଗୁଥିଲା । ଆଲ୍ଲୁ ଯେତେବେଳେ ଦିଅନ୍ତି, ଛପର ଫାଡ଼ି କରି ଦିଅନ୍ତି । ପରିଶେଷରେ ଏହି ସିଦ୍ଧାନ୍ତରେ ଉପନୀତ ହୁଅନ୍ତି ।

ମେନକା ପାଖକୁ ଆସୁଥିବା ମନିଅର୍ଡର ବିଷୟରେ ଦୋକାନ ପିଣ୍ଡାରେ ବରଗଛ ଚାନ୍ଦିନୀରେ ଆଉ ଚା' ଦୋକାନରେ ଆଲୋଚନା ପର୍ଯ୍ୟାଲୋଚନା ହୁଏ । ମକୁନ୍ଦା କହିଲା- ମେନକା ବାପା ଶୁକୁଟା ଚାନ୍ଦିପୁର ଗାଁର ସାମନ୍ତରାୟ ଘରେ କାମ ଦାମ କରେ । ତାଙ୍କ ଦୁଇ ପୁଅ ବଡ଼ ବଡ଼ ଚାକିରି କରି ବମ୍ବେ, ଦିଲ୍ଲୀରେ ଅବସ୍ଥାନ କଲାପରେ ତାଙ୍କ ଜମି, ବାଡ଼ି, ଘର କାମ ସିଏ ଦେଖାଶୁଣା କରୁଥିଲା । ତାଙ୍କ ପରିବାରର ସେ ବିଶ୍ୱସ୍ତ ଲୋକ । ଶୁକୁଟାର ଦେହାନ୍ତ ପରେ ତାର ଏକମାତ୍ର ଝିଅ ମେନକାକୁ ହୁଏତ ସାମନ୍ତରାୟ ପରିବାରର ପୁଅମାନେ କୃତଜ୍ଞତା ସ୍ୱରୂପ ଟଙ୍କା ପଠାଉଛନ୍ତି । ସେମାନେ ବଡ଼ ବଦାନ୍ୟ ଓ ହୃଦୟବାନ୍ ବ୍ୟକ୍ତି ।

ହରିଆଟା ଟିକେ ରସିକିଆ । ସବୁ କଥାରେ ରଂଗ, ରସ ନ ଯୋଡ଼ିଲେ ତାର ଭାତ ହଜମ ହୁଏନାହିଁ । କହିଲା ମେନକା ଗଉଡୁଣୀ ସିନା ରଂଗରେ କଳା, ତାର ଗଢ଼ଣ ସୁନ୍ଦର । କୁନ୍ଦିଲା କୁନ୍ଦିଲା ଚେହେରା । ଏବେବି ସିଏ ଜଳୁଛି । ତା ଅଭିଆଡ଼ି ବେଳେ କୋଉ ବଡ଼ ଲୋକର ପୁଅ ବୋଧେ ତାର ପ୍ରେମରେ ପଡ଼ିଯାଇଥିଲା । ପ୍ରେମର ପ୍ରତିଦାନ ସ୍ୱରୂପ ଟଙ୍କା ପଠୋଉଛି ।

ପୋଷ୍ଟମାଷ୍ଟରଙ୍କ କଥାମାନି ମେନକା ଓ ମକରା ପିଲାମାନଙ୍କୁ ଭଲରେ ପଢ଼ାଇବା ପାଇଁ ଉଦ୍ୟମ ଜାରି ରଖିଲେ । ଦୁଇ ଝିଅ ମାଟ୍ରିକ୍ ପରେ ସିଟି ଟ୍ରେନିଙ୍ଗ ନେଇ ଗାଁ ପାଖ ନିମ୍ନ ପ୍ରାଥମିକ ସ୍କୁଲରେ ଶିକ୍ଷୟିତ୍ରୀ ଚାକିରି ପାଇଲେ । ପୁଅଟା ତାଙ୍କ ଠାରୁ ଭଲ ପଢୁଥିଲା । ବିଏ ପାସ୍ କରି କଟକ ବକ୍ସି ବଜାର ସବ୍ ପୋଷ୍ଟ ଅଫିସ୍‌ରେ ଚାକିରି ପାଇଲା । ମକରା ଓ ମେନକାଙ୍କର ଆନନ୍ଦର ସୀମା ରହିଲା ନାହିଁ । ପୁଅର କେନ୍ଦ୍ର ସରକାର ଚାକିରି, ଭଲ ଦରମା ।

ମେନକା ପ୍ରଭୁ ଜଗନ୍ନାଥଙ୍କ ପାଖରେ ଶହ ଶହ ଦଣ୍ଡବତ ପକାଏ । ଯେଉଁ ପିଲାମାନଙ୍କୁ ପର ଘରେ କାମ କରିବାକୁ ପଠାଇବା ପାଇଁ ଭାବୁଥିଲା, ସେମାନେ ଆଜି ନିଜ ଗୋଡ଼ରେ ନିଜେ ଠିଆ ହୋଇଛନ୍ତି । ସନାତନ ବାବୁଙ୍କ ତୁଣ୍ଡ ସୁତୁଣ୍ଡ ହେଲା । ସେ ଦିନ ଗାଁ ଲୋକ ଚମକି ପଡ଼ିଲେ ଯେତେବେଳେ ଦେଖିଲେ ଏକ ମସ୍ତବଡ଼ ଧଳା କାର ଗାଁ ରାସ୍ତାରେ ପଶିଲା । ଘରୁ ବାହାରି ଆସି ପିଣ୍ଡାରେ ବସିଗଲେ ପୁରୁଷ, ସ୍ତ୍ରୀ ଓ ପିଲାମାନେ ।

ଡ୍ରାଇଭର ଲୋକଙ୍କୁ ପଚାରୁଛି -ମକରା ପ୍ରଧାନ ଘର କେଉଁଠି ? ସାରା ଗାଁ ଆଁ କରି ଅନାଇଛି । ଏତେ ବଡ଼ ଗାଡ଼ି, ପୁଣି ମକରା ଘରକୁ ।

ମକରା ଘର ଆଗରେ ଗାଡ଼ି ରହିଲା । ଓହ୍ଲେଇଲେ ଜଣେ ଗୌରବର୍ଣ୍ଣ, ଦୀର୍ଘକାୟ ଭଦ୍ରଲୋକ । ମେନକା ତା ଚାଳଘରର ଝୁଲୁକି ବାଟେ ଅପଲକ ନୟନରେ ଅନାଇ ରହିଥିଲା । ତା ଘରେ ଇଏ କିଏ ଆଗନ୍ତୁକ । ସ୍ୱପ୍ନ କି ସତ୍ୟ ଜାଣି ପାରୁ ନଥିଲା ।

ତା ମନକୁ ପାପ ଛୁଇଁଲା । ଏବାବୁ ଟଙ୍କା ଆଦାୟ କରିବା ପାଇଁ ଆସି ନାହାଁନ୍ତି ତ ? ଯଦି ଟଙ୍କା ମାଗନ୍ତି ପୁଅଝିଅଙ୍କୁ କହିବି ଅଧା ଦରମା ବାବୁ ପାଖକୁ ପ୍ରତି ମାସରେ ପଠାଇବେ । ମକରା ଧାଇଁଲା ସନାତନବାବୁଙ୍କ ଘରକୁ । ବିପଦ ଆପଦରେ ସିଏ ଛିଡ଼ା ହୋଇପଡନ୍ତି ।

ମେନକାର ଦ୍ୱିତୀୟ ଚିନ୍ତା । ତା' ଘରେ ଥିବା ଦଦରା ଚୌକିରେ ଭଦ୍ରଲୋକ ବସିଛନ୍ତି । ଚୌକି କଁ କଁ ହେଉଛି । ବିଶାଳ ବପୁର ଭାରରେ ଚୌକିଟି ଭାଙ୍ଗିଗଲେ ଆହୁରି ଅସୁବିଧା ।

ସନାତନବାବୁ ଆସି ଭଦ୍ରଲୋକଙ୍କୁ ନମସ୍କାର କଲେ । ଚାରିଆଡ଼େ ଘେରିଛନ୍ତି ଗାଆଁ ଲୋକ ଓ ପିଲାମାନେ । ଝରକା ଓ ଝୁଲୁକିରେ ଗାଁ ସ୍ତ୍ରୀ ଲୋକମାନଙ୍କ କୌତୁହଳୀ ଆଖିଗୁଡ଼ାକ ପଇଁତରା ମାରୁଥିଲେ ।

ଆଗନ୍ତୁକଙ୍କ ସମ୍ବନ୍ଧରେ ଜାଣିବାର କୌତୁହଳ ପରିବେଶକୁ ଆହୁରି ରୋମାଞ୍ଚକର କରିଦେଲା ।

- ମୁଁ ସନାତନ ମିଶ୍ର । ଏ ଗାଁ ପୋଷ୍ଟ ଅଫିସ୍‌ର ପୋଷ୍ଟ ମାଷ୍ଟର । ଆପଣଙ୍କ ପରିଚୟ ଟିକେ କହିବେକି ?

- "ଏ ଗାଁରୁ ଦଶ କିଲୋମିଟର ଦୂରରେ ଥିବା ହରିପୁର ଗାଁର ଗୋବିନ୍ଦ ଚୌଧୁରୀଙ୍କ ନାମ ଶୁଣି ଥିବେ । ଗାଁ ହାଇସ୍କୁଲ ହେଡମାଷ୍ଟର ଥିଲେ । ମୁଁ ତାଙ୍କ ବଡ଼ ପୁଅ, ପ୍ରଶାନ୍ତ ଚୌଧୁରୀ । ଏବେ ଦିଲ୍ଲୀରେ ଏକ କଂପାନୀରେ ଚାକିରି କରିଛି ।" ତା ପରେ କିଛି କ୍ଷଣ ନିରବତା । ଅଶ୍ୱସ୍ତିକର ସେ ନିରବତା । ଲୋକଙ୍କର ପ୍ରଶ୍ନିଳ ଆଖି ଓ ଓଠ ଅସ୍ତବ୍ୟସ୍ତ ହୋଇ ପଡୁଥିଲେ ।

- ଏଠାକୁ କେମିତି ଆସିବା ହେଲା ? ମକରା ଘରକୁ କାହିଁକି ଆସିଥିଲେ ?

- ୨୦ ବର୍ଷ ହେବ ମନି ଅର୍ଡର ମୁଁ ମେନକା ପାଖକୁ ପଠାଉଥିଲି ଓ ପଠାଉଛି । ମୋର ଟୁରିଂ ଚାକିରି । ମାସର ୧ମ ସପ୍ତାହରେ ଯେଉଁ ସହରରେ ଥାଏ, ସେଠାରୁ ମୋର ସହକର୍ମୀଙ୍କ ହାତରେ ଟଙ୍କା ପଠାଇଦିଏ ।

ମେନକା ଭାବୁଥିଲା, ଯେଉଁ ଚିନ୍ତା କୋଡ଼ିଏ ବର୍ଷ ହେଲା ତା ମନ ଅଳିନ୍ଦରେ ଗୁମୁରୁଥିଲା, ଆଜି ବାସ୍ତବରେ ରୂପାୟିତ ହୋଇଛି । ବଡ଼ବାବୁ ଟଙ୍କା ଆଦାୟ ପାଇଁ ଆସିଛନ୍ତି ।

- ଆପଣ କଣ ପଇସା ଫେରି ପାଇବା ପାଇଁ ଆସିଛନ୍ତି ?

- ନାଁ । ମୁଁ କ'ଣ ଋଣ ଦେଇଥିଲି ଯେ ଶୁଝିବା କଥା ଉଠିବ ? ପରିବାରଟିଙ୍କୁ ଆର୍ଥିକ ସଙ୍କଟରୁ ରକ୍ଷା କରିବା ପାଇଁ ମୁଁ ସେ ଟଙ୍କା ଦେଇଥିଲି ।

ମକରା ଓ ମେନକାର ମୁଣ୍ଡରେ ଜମି ଉଠୁଥିବା ପାହାଡ଼ଟି କୋମଳ ଫୁଲରେ ରୂପାନ୍ତରିତ ହୋଇଥିଲା ।

- ତା ହେଲେ କାହିଁକି ଆପଣ ଏମାନଙ୍କୁ ଟଙ୍କା ପଠାଉ ଥିଲେ ?

- ଏକୋଇଶି ବର୍ଷ ତଳେ ମୁଁ ମୋର କାର୍‌ରେ ଗାଁକୁ ଫେରୁଥିଲି ଅସୁସ୍ଥ ବାପାଙ୍କୁ ଦେଖିବା ପାଇଁ । ସାଇକେଲ୍‌ରେ ଯାଉଥିବା ଲୋକଟିଏ କାର୍‌ରେ ବାଡେଇ ହୋଇ ଛିଞ୍ଚାଡ଼ି ହୋଇ ପଡିଲା । ଲୋକଟିର ଚିକିତ୍ସା କରିବା ପରିବର୍ତ୍ତେ ମୁଁ ଦ୍ରୁତ ଗତିରେ ଗାଁକୁ ଚାଲିଗଲି । ଭାବିଲି, କାଳେ ଗାଡ଼ି ଅଟକାଇଲେ ଗାଁ ଲୋକେ ଆସି ମୋ ଗାଡ଼ି ଭାଙ୍ଗିରୁଜି ଦେବେ ଓ ମୋତେ ଆକ୍ରମଣ କରିବେ ।

ଚାରି ପାଞ୍ଚଦିନ ପରେ ମୋର ସାନଭାଇକୁ ଆପଣଙ୍କ ଗାଁକୁ ପଠାଇଲି । ଗୋପନରେ ଖବର ସଂଗ୍ରହ କରିବା ପାଇଁ ।

ଭାଇ ଆସି ବୁଝିଲା ଯେ ଗାଁ ଲୋକେ ଭାବିଛନ୍ତି ମଦନିଶାରେ ମକରା ସାଇକେଲ୍‌ରୁ ପଡ଼ିଯାଇଛି । ତା ହାତ ଭାଙ୍ଗି ଯାଇଥିଲା । - ପ୍ଲାଷ୍ଟର କରି ଘରକୁ ଫେରିଛି ।

ତାର କିଛି ମାସ ପରେ ମୁଁ ପୁଣି ଗାଁକୁ ଯାଉଥିବା ବେଳେ ଆପଣଙ୍କ ଗାଁ ମୁଣ୍ଡରେ ଥିବା ଚା ଦୋକାନରେ ବସି ଚା ପିଇଲି । ଚା ପିଇବା ବେଳେ ବସିଥିବା ଲୋକମାନଙ୍କୁ ମକରା ବିଷୟରେ ପଚାରିଲି ।

ଜଣେ ଭାଇ କହିଲେ ଯେ ମକରାଟା ଆଉ ରାଜମିସ୍ତ୍ରୀ କାମ କରିପାରୁନି । ତା ହାତଟା ଭାଙ୍ଗିଗଲା ପରେ ଅକାମୀ ହୋଇଯାଇଛି । ପାଞ୍ଚ ପ୍ରାଣୀ କୁଟୁମ୍ବ ଭାରି ଦହଗଞ୍ଜ ହେଉଛନ୍ତି । ତା ସ୍ତ୍ରୀ ମେନକା ଘରର ଦାୟିତ୍ୱ ମୁଣ୍ଡକୁ ନେଇଛି । ପର ଘରେ ପାଇଟି କରି କିଛି ପଇସା ରୋଜଗାର କରୁଛି ।

ଆଉ ଜଣେ ଭାଇ କହିଲେ ଯେ ମେନକା ତା ଦୁଇ ଝିଅଙ୍କୁ ଦୁଇ ଜଣ ବାବୁଙ୍କ ଘରକୁ ପଠାଇବ ବୋଲି ସ୍ଥିର କରିଛି । ସେମାନେ ବୋଲହାକ ଓ ଛୋଟ ପିଲାଙ୍କ ଦାୟିତ୍ୱ ନେଇ ସାହାଯ୍ୟ କରିବେ । ଯାହା ହେଉ ଯେନତେନ ପ୍ରକାରେଣ ବଞ୍ଚିଯିବେ ।

ମୋ ଆଖିରେ ଲୁହ ଜକେଇ ଆସିଲା । ଅନୁତାପର ଦାବାନାଳରେ ମୁଁ ସତେ ଯେପରି ଜଳି ପୋଡ଼ିଗଲି । ବିବେକର ବୃଶ୍ଚିକ ଦଂଶନ ମୋ ପାଇଁ ଅସହ୍ୟ ହେଲା । ସେଇ ମାସଠାରୁ ପ୍ରତି ମାସରେ ମୁଁ ମନି ଅର୍ଡର ପଠାଇବାକୁ ଲାଗିଲି ।

- ଆପଣ ଆଜି କୋଡ଼ିଏ ବର୍ଷ ପରେ  କାହିଁକି ଆସିଲେ ?

- ମୋ ଭାଇଠାରୁ ଶୁଣିଥିଲି, ମକରା ଓ ମେନକା ଗରିବ ହେଲେବି ଭାରି ସ୍ୱାଭିମାନୀ, ବିବେକସଂପନ୍ନ । ପେଟରେ ଓଦାକନା ଦେଇ ରହିବେ ପଛେ କାହାକୁ ହାତ ପତେଇବେ ନାହିଁ । ପରଧନ ଛୁଇଁ ଦେଲେ ସତେ ଯେପରି ସେମାନଙ୍କ ଦେହରେ ନିଆଁର ଚିଆଁ ଲାଗିଯାଏ । ଆଗରୁ ଆସିଥିଲେ, ସେମାନେ ମନି ଅର୍ଡର ନ ପଠେଇବାକୁ ମୋତେ ନେହୁରା ହୋଇ କହିଥାନ୍ତେ ।  ତେଣୁ ମୁଁ ସ୍ଥିର କରିଥିଲିଯେ ସେମାନଙ୍କ ତିନୋଟି ପିଲା ନିଜ ଗୋଡ଼ରେ ନିଜେ ଠିଆ ହେଲେ ମୁଁ ସେମାନଙ୍କୁ ଦେଖା କରିବି । ଏବେ ଦୋଳ ପୁନେଇଁକୁ ଗାଁକୁ ଆସିଥିଲି । ମକରାର ଦୁଇଝିଅ ଶିକ୍ଷୟିତ୍ରୀ ଚାକିରି ପାଇଥିବା କଥା ଆଗରୁ ଶୁଣିଥିଲି । ସାନ ଭାଇ କହିଲା ଏବେ ମକରାର ସବା ସାନ ପୁଅ ସେଣ୍ଟ୍ରାଲ୍ ଗଭର୍ଣ୍ଣମେଣ୍ଟରେ ଚାକିରି ପାଇଛି । ତେଣୁ ସେମାନଙ୍କୁ ଦେଖା କରିବାକୁ ଆସିଛି । ସେମାନଙ୍କ ସୁଖରେ ସୁଖି ହେବା ପାଇଁ ।

ମକରା, ମେନକା, ଦୁଇ ଝିଅ ଓ ପୁଅକୁ ଦେଖି ପ୍ରଶାନ୍ତ ଚୌଧୁରୀଙ୍କ ମୁହଁରେ ପରିତୃପ୍ତିର ଏକ ଅମ୍ଳାନ ହସ ଖେଳି ଯାଇଥିଲା । ସେମାନଙ୍କ ସାଙ୍ଗରେ ଗୋଟିଏ ସେଲ୍‌ଫି ନେଲେ । ତାହା ଥିଲା ତାଙ୍କ ପାଇଁ  ସ୍ମୃତିର ସନ୍ତକ, ତୃପ୍ତିର ଚିତ୍ରପଟ ।

ମକରା, ମେନକା ଭାବୁଥିଲେ ଈଶ୍ୱର ଯେପରି ତାଙ୍କ କୁଡ଼ିଆରେ ପଦାର୍ପଣ କରିଛନ୍ତି । ସେମାନେ ଏକ ସ୍ୱପ୍ନ ରାଜ୍ୟରେ ବିଚରଣ କଲାଭଳି ଅନୁଭବ କରୁଥିଲେ ।

ସମସ୍ତଙ୍କ ଠାରୁ ବିଦାୟ ନେଇ ପ୍ରଶାନ୍ତ ବାବୁ କାର୍‌ରେ ବସି ଚାଲିଗଲେ ।

ସେଠାରେ ରୁଣ୍ଡହୋଇ ଏ ବିରଳ ଦୃଶ୍ୟ ଦେଖୁଥିବା ଗାଆଁଲୋକମାନେ ଭାବିଲେ ଆଗନ୍ତୁକ ଜଣେ ବିବେକସଂପନ୍ନ ଦେବୋପମ ବ୍ୟକ୍ତି । ଏ ଦୁନିଆର ଅଧିକାଂଶ ବ୍ୟକ୍ତି ସେମାନଙ୍କ ପାପକୁ ଲୁଚାଇବାକୁ ପାରୁପର୍ଯ୍ୟନ୍ତ ଉଦ୍ୟମ କରନ୍ତି । କିନ୍ତୁ ଏବାବୁ ଜଣେ ବ୍ୟତିକ୍ରମ । ପାପର ପ୍ରାୟଶ୍ଚିତ ପାଇଁ ଦୀର୍ଘ କୋଡ଼ିଏ ବର୍ଷ ହେବ ସହାୟତାର ହାତ ବଢ଼ାଇ ଚାଲିଛନ୍ତି । ଏମିତି ଦେବୋପମ ମଣିଷମାନଙ୍କ ପାଇଁ ଏ ସଂସାର ଚାଲିଛି ଓ ଆଗକୁ ଚାଲିବ ।



*('କଥା କଳିକା' ପତ୍ରିକାର ୨୦୧୯ ଜୁଲାଇ ସଂଖ୍ୟାରେ ପ୍ରକାଶିତ)*

# ପିଲାଦିନ ଓ ଅଧୁରା ସ୍ୱପ୍ନ

ନିର୍ଧୂମ ଖରାବେଳେ । ଟାଇଁ ଟାଇଁ ଖରାରେ ଆମ ଗାଆଁ ଝାଉଁଳି ପଡ଼ିଥାଏ ।ଆମ୍ବ ତୋଟାରେ ମଳୟର କାଉଁରୀ ସ୍ପର୍ଶ । କ୍ଳାନ୍ତ ବାଟୋଇ ଓ ଗାଈ ଗୋରୁ ଆମ୍ବ ଗଛର ଶୀତଳ ଛାଇରେ ମୁଣ୍ଡ ଗୁଞ୍ଜି ପାଆନ୍ତି ଅପାର ଆନନ୍ଦ । ପିଲାମାନଙ୍କ ଅମାନିଆଁ ମନ ବାପା ମାଆଙ୍କ ବୋଲ ମାନେନା । ଖରାବେଳେ ଆମ୍ବତୋଟାରେ ଖେଳିବା ପାଇଁ ସେମାନଙ୍କର ଅଦମ୍ୟ କାମନା । ଆମ ଗାଆଁର ତିନିରାତିର ଲକ୍ଷ୍ମୀଯାତ୍ରା ପରେ କାଠ ଖଣ୍ଡା ଧରି ମନ ଛୁଇଁଥିବା ନାଟକର ଡାଇଲଗ କହି ଚାଲେ ନାଟକର ସମାରୋହ । ଭୁଲି ହୋଇଯାଏ ଭୋକ ଶୋଷ । ଯେତେବେଳେ ଖରା ଦାହ ସହି ନପାରି ସାରା ଗାଆଁଟା ଶୋଇ ଥାଏ, ସେତେବେଳ ଆମେ ପିଲାମାନେ ବିସ୍ତୃତ ସବୁଜ ଇଲାକାର ବାଦଶାହା ପାଲଟି ଯାଉ । କି ଆନନ୍ଦ ! କି ଆତ୍ମ ସନ୍ତୋଷ !

ବାପାଙ୍କ ଭୟରେ ଖରାବେଳେ ଜବରଦସ୍ତି ଖଟରେ ଶୋଇ ରହିଥିଲେ ହେଁ ମୋ ଆଖିରେ ଝଲସୁ ଥାଏ ଆମ୍ବତୋଟା । ନିଦ ଆସେନା । ଖାଲି କଡ଼ ଲେଉଟାଉ ଥାଏ । ବ୍ୟତିବ୍ୟସ୍ତ ହେଉଥାଏ । ଅମାନିଆଁ ମନଟା ଅସମ୍ଭାଳ ହୁଏ । ଝରକା ଫାଙ୍କରୁ ଉଙ୍କିମାରେ ସାଙ୍ଗମାନଙ୍କର ଉଦାତ୍ତ ଆହ୍ୱାନ । ଫିସ୍ ଫିସ୍ କଣ୍ଠରୁ ଶୁଭେ-ଆ ଶୀଘ୍ର ତୋଟାକୁ ଯିବା । ଉଠିବାକୁ ଉଦ୍ୟତ ହେଲା ବେଳକୁ କଅଁ କଇଁଆ ଖଟରେ କଅଁ କଅଁ ଶବ୍ଦ । ପୁଣି ଶୟନ, ପୁଣି ଉତ୍‌ଥାନ-ଏ ପର୍ବ ନିରବିଚ୍ଛିନ୍ନ ଭାବେ ଚାଲିଥାଏ । ମଝିରେ ମଝିରେ ବାପାଙ୍କର ଖଣ୍ଡିକାଶ । ତାଙ୍କ ଖଣ୍ଡିକାଶଟି ଦେଇଥାଏ ସତର୍କ ସୂଚନା-ତୁ ଯିବୁ କୁଆଡ଼େ ? ମୁଁ ତତେ ଅନେଇଚି ଯେ ।

ଝରକା ଫାଙ୍କରୁ ପୁଣି ସେଇ ଫିସ୍ ଫିସ୍ ଶବ୍ଦ । ଅଦମ୍ୟ, ଅଲଙ୍ଘ୍ୟ ସେ ଆହ୍ୱାନ । ପୁଣି ପ୍ରଚେଷ୍ଟା ।ଏଥର ଖଟରୁ ଓହ୍ଲାଇ ଆସିଲି । ଖଟଟି ତାର କଅଁ କଅଁ ଶବ୍ଦକୁ ଟିକେ ଧୀର କରିଦେଇଥିଲା, ମୋ ଉଚ୍ଚାଟିଆ ମନକୁ ସହାୟତା କରିବା ପାଇଁ ବୋଧହୁଏ ।

ପ୍ରଥମ ପ୍ରତିବନ୍ଧକ ପାରହେଲା ପରେ ଆଖି ଆଗରେ ଦ୍ୱିତୀୟ ଅନ୍ତରାୟ । ଘରର କାଠ କବାଟ ଦରଆଉଜା ହୋଇଥାଏ । ଟିକେ ଖୋଲିଦେଲେ ଘରର ଚାରିକଡ଼େ ନିର୍ଦ୍ୱନ୍ଦରେ ପଇଁତରା ମାରୁଥିଲା ଖରାର ରୋଷଣି । ମେଞ୍ଚେ ଖରା ଆଲୁଅ ଧସେଇ ହୋଇ ପଶି ଆସେ

ଘରର ଅଳିନ୍ଦକୁ । ଭାଙ୍ଗିଯାଏ ବାପାଙ୍କର ନିଦ । ପୁଣି ନିରବତାକୁ ଭଙ୍ଗ କରି ମୁଣ୍ଡ ଟେକେ ବାପାଙ୍କର ଖଣ୍ଡିକାଶ । ପୁଣି ପଛଘୁଞ୍ଚା । ପୁଣି ପ୍ରଚେଷ୍ଟା । ଏଥର ଖଣ୍ଡିକାଶ ଶୁଭିଲାନି । ମୁଁ କବାଟ ଖୋଲି ସନ୍ତର୍ପଣରେ ବାହାରି ଆସିଲି ବାହାରକୁ । ପିଞ୍ଜରାରୁ ବାହାରି ଆସିଥିବା ପକ୍ଷୀଟିଏ । ଏବେ ମୁଁ ମୁକ୍ତ ବିହଙ୍ଗ । ପଛକୁ ନଅନାଇଁ ଦ୍ରୁତ ଗତିରେ ତୋଟା ଆଡ଼କୁ ଦୌଡ଼ିଲି । ମୋତେ ଅପେକ୍ଷା କରିଥିବା ସାଙ୍ଗମାନେ ମଧ୍ୟ ଦୌଡ଼ିଲେ । ବିଜୟ ଗର୍ବରେ ଉନ୍ମତ୍ତ ରାଜ୍ୟ ଜୟକରିଥିବା ବୀରମାନଙ୍କ ପରି । ପରିଧାନ ହାଫ୍ ପ୍ୟାଣ୍ଟ । ଅଣ୍ଟାରେ ଶକ୍ତଭାବେ ବନ୍ଧା ହୋଇଛି ଗାମୁଛା । ଖୋଲା କଅଁଳିଆ ଦେହ । ନଡପଡିଆ ଫୁଙ୍ଗୁଳା ଦେହରେ ଶତ ସିଂହର ପରାକ୍ରମ ।

ଦୌଡ଼ିଲାବେଳେ ଆଖି ଅଟକିଗଲା ପହିଘର ସାମନାରେ ଥିବା ଦାଦାଙ୍କର ପରିତ୍ୟକ୍ତ ଢ଼ିଙ୍କିଶାଳ ଉପରେ । ତଳକୁ ମୁହଁକରି ନେପେଟୋଇ ପଡ଼ିଚି ଢ଼ିଙ୍କି । ଉପରେ ଭଙ୍ଗା ଚାଳଘର । ଢ଼ିଙ୍କିଟି ଆଖି ତରାଟି ଯେମିତି ଆମକୁ କହୁଥିଲା-ଏ ପିଲେ !ମୋ ଉପରେ ଡ଼ିଆଁଡ଼େଇଁ କର । ମୋଉପରେ ଠିଆହୋଇ କୁଟ । ମୋ ଉପରେ ତାଣ୍ଡବ ନୃତ୍ୟକର । ମୁଁ ବହୁଦିନ ହେଲା ଏକଲା ଏଠି ପଡ଼ିଚି । ବହୁଦିନ ପରେ ତୁମ ପରି ପିଲାମାନଙ୍କୁ ଦେଖି ମୋ ମନରେ ଆନନ୍ଦର ଜୁଆର ।

ଢ଼ିଙ୍କି କଥା ମାନି ଆମେ ଢ଼ିଙ୍କିକୁଟିବା, ଡ଼ିଆଁଡ଼େଇଁ କରିବା ଆଉ ଉଦଣ୍ଡ ନୃତ୍ୟ ସବୁ ଏକସଙ୍ଗେ ଆରମ୍ଭ କରିଦେଲୁ । ଆନନ୍ଦର ଆତିଶଯ୍ୟରେ ଉଲ୍ଲସି ଉଠୁଥାଏ ଆମ ମନ । ହଠାତ୍ ଏକ ଅପ୍ରତ୍ୟାଶିତ ଦୃଶ୍ୟ ଦେଖି ଆମେ ସମ୍ମୋହିତ ହେଲୁ । ଆମ ଆପାଦ ମସ୍ତକ ଥରିବାକୁ ଲାଗିଲା । ବିଜୟ ଗର୍ବରେ ଉନ୍ମତ୍ତ ବୀରମାନେ ବରଡ଼ା ପତ୍ର ପରି ହଲିବାକୁ ଆରମ୍ଭ କଲେ । ଢ଼ିଙ୍କିକୁଟା ଶବ୍ଦ, ଚିତ୍କାର, ହୋ ହଲ୍ଲା ସବୁ ହୋଇଥିଲା ନିରବ । ସମସ୍ତଙ୍କ ଆଖି ଛଳଛଳ, ଭୟରେ, ଆଶଙ୍କାରେ ।

ସାମ୍ନାରେ ବାପା । ପାଖରେ ବହୁ ଦିନର ସେଇ ପୁରୁଣା ସାଇକେଲ୍ । ଆଜ୍ଞାଧୀନ ଛାତ୍ରପରି ସମସ୍ତେ ତାଙ୍କ ସାଙ୍ଗରେ ଫେରିଲୁ ନତମସ୍ତକ ହୋଇ । ନିର୍ବାକ, ନିସ୍ପନ୍ଦ ।

ନିର୍ଦ୍ଧୂମ ଖରାବେଳେ ଆମ୍ବ ତୋଟାର ସବୁଜ ସାମ୍ରାଜ୍ୟରେ ରାଜତ୍ୱ କରିବାର ସ୍ୱପ୍ନ ଅଧୁରା ରହିଗଲା । ଏକ ଅଭିନବ ଅଭିଯାନର ସ୍ୱପ୍ନ ପ୍ରସ୍ଫୁଟିତ ହେବା ପୂର୍ବରୁ ବୃନ୍ତଚ୍ୟୁତ ହେଲା । ଆଜି ପର୍ଯ୍ୟନ୍ତ ଆଉ କେବେ ଖରାବେଳେ ଆମ୍ବ ତୋଟାକୁ ଯାଇ ତାକୁ ମନଭରି ଉପଭୋଗ କରିବାର ସାହସ ଯୁଟାଇ ପାରିନୁ ।

ଆମ ଗାଆଁର ଆଉ ଏକ ଅନବଦ୍ୟ ଆକର୍ଷଣ ଥିଲା ଖଳିବନ୍ଧ । ନିଶ୍ଚିନ୍ତାର ଛାତିଚିରି

ପାହାଡ଼ି ଝରଣା ମାଡ଼ି ଆସୁଥିଲା ଦ୍ରୁତ ଗତିରେ । ନୃସିଂହ ଭାଇର କ୍ଷେତ ଭିତର ଦେଇ ହନୁଆଁ ପୋଖରୀ ଆଡ଼େ ସେଇ ଝରଣା ଦ୍ରୁତ ଗତିରେ ମାଡ଼ିଚାଲେ । ଶନିବାର ଦିନ ହାଫ୍ ଛୁଟି । ଛୁଟି ହେଲାମାତ୍ରେ ଘରକୁ ଦଉଡ଼ି ଆସି ହାଫ୍ ପ୍ୟାଣ୍ଟ ପିନ୍ଧି ଓ କାନ୍ଧରେ ଗାମୁଛାଟିଏ ପକାଇ ଦ୍ରୁତ ଗତିରେ ସବୁପିଲା ଦୌଡ଼ୁ ଖଳିବନ୍ଧ ଆଡ଼େ । ପହଁରା ନଜାଣିଲେ ବି ପରୁଆ ନାହିଁ । ଆଣ୍ଠୁଏ ପାଣି ଘୋର ଘର୍ଘର ଶବ୍ଦରେ ଆଗକୁ ଆଗକୁ ମାଡ଼ିଚାଲିଥାଏ । ନିଶ୍ଚନ୍ତା ପାହାଡ଼ରୁ ଝରୁଥିବା ପରିଷ୍କାର କାଚକେନ୍ଦୁ ଜଳ । ମନୋରମ ଢ଼ଙ୍ଗରେ ଉଲ୍ଲସିତ ମନରେ ଜଳକ୍ରୀଡ଼ା କରୁଥାନ୍ତି ହଜାର ହଜାର କେରାଣ୍ଡି ମାଛ । କିଏ ଆମ ଗୋଡ଼ରେ ଘସି ହୋଇ ଗଲାଣିତ ଆଉ କିଏ ପେଟରେ । ହାତ ପାହାନ୍ତାରେ ମେଞ୍ଚା ମେଞ୍ଚା ମାଛ ; କିନ୍ତୁ ଗୋଟିଏ ହେଲେ ଧରି ହୁଏନା । ଚଟକିନା ଖସି ପଳାନ୍ତି ପାପୁଲିର ଯନ୍ତାରୁ । ଆମର ଆନନ୍ଦର ସୀମା ନଥାଏ । ବଡ଼ ଭାଇମାନେ ଝମ୍ପା ବସାଇ ମାଛ ଧରୁଥାନ୍ତି ।

ଖଳିବନ୍ଧ ଉପର ଆଡ଼କୁ ଯେତେ ଯେତେ ଯିବ ପାଣିର ଗଭୀରତା ସେତେ ବଢ଼ି ବଢ଼ି ଚାଲିବ । ଶେଷକୁ ଗଭୀର ପୋଖରୀ । ତା'ଭିତରେ ହସ ହସ ମୁହଁରେ ଅଭିନବ ନାଚ ନାଚି ଖେଳୁଥାଏ କଇଁଫୁଲ । କଇଁଫୁଲର କଇଁ ମଟରା ଭାରି ସ୍ୱାଦିଷ୍ଟ । କଇଁ ମଟରାର ଆକର୍ଷଣ ଆମକୁ ଉଦ୍‌ବେଳିତ କଲା । ତାକୁ ପାଇବାର ସ୍ୱପ୍ନ ଆମ ମନ ଭିତରେ ଗୁମୁରି ଉଠିଲା । ସାଙ୍ଗମାନେ ମିଶି କଇଁ ମଟରା ସଂଗ୍ରହ କରିବା ଅଭିଯାନରେ ଅଗ୍ରସର ହେଲୁ ଗଭୀର ଜଳକୁ । ଚାଲ ଯିବା ଆଗକୁ ଆଉଟିକେ ଆଗକୁ । ପେଟ ପାଖରେ ପାଣି, ବେକ ପର୍ଯ୍ୟନ୍ତ ପାଣି । ଆଉ ଟିକେ ଆଗକୁ ଗଲେ କଇଁ ମଟରା ।ଢ଼ୋକେ ଦିଢ଼ୋକ ପାଣି ପିଇଦେଲୁ । ଗୋଡ଼ ତଳ ମାଟିରେ ପାଦ ଲାଗୁନି । ବୁଡ଼ିଗଲା ପରି ଲାଗୁଛି । ହାତ ଗୋଡ଼ ଛାଟି ପିଟି କୌଣସି ମତେ ପଳାଇ ଆସିଲୁ କୂଳକୁ । ଈଶ୍ୱରଙ୍କ ଅପାର କରୁଣାରୁ ଏକ ସାଙ୍ଘାତିକ ସଙ୍କଟରୁ ରକ୍ଷା ପାଇଗଲୁ । କଇଁ ମଟରା ତୋଳି ଖାଇବାର ସ୍ୱପ୍ନ ଏବେବି ଅଧୁରା ।

ଭୋଜି ଗାଆଁରେ ଏକ ସ୍ମରଣୀୟ ଆକର୍ଷଣ । ଭାଇମାନେ ଆମଗାଆଁ ଦଶରାପଡ଼ିଆ ନିକଟସ୍ଥ ଶଅର ସାହିକୁ ଯାଇ କୁକୁଡ଼ା ନେଇ ଆସନ୍ତି । ଆମେ ଆଁ'କରି ଅନେଇ ଥାଉ ଭାଇଙ୍କର ପାରିବାପଣକୁ । ଭଉଣୀମାନେ ଚାଉଳ ରୁଟି ସେକୁଥାନ୍ତି ।ଭାଇମାନେ କୁକୁଡ଼ା ମାଂସ ତରକାରୀ ରାନ୍ଧୁଥାନ୍ତି । ମାଂସ ତରକାରୀର ମହମହ ବାସ୍ନାରେ ମହକୁଥାଏ ପରିବେଶ । ଚାଉଳ ରୁଟି ସାଙ୍ଗରେ କୁକୁଡ଼ା ମାଂସ ତରକାରୀ । ଆହା କି ସ୍ୱାଦ ! ପାଟିରୁ ଲାଳ ବାହାରୁଥାଏ ପୁଣି ଜାକିଜୁକି ହୋଇ ଜିଭତଳେ ଲଟକି ଯାଏ ।

ଆମ ମନରେ ଗୁମୁରି ଉଠିଲା ବଳବତୀ ଇଛା । ଆମେ ଅର୍ଥାତ ମୋ ସାଙ୍ଗମାନେ

କୁକୁଡ଼ା ଆଣି ତାକୁ କାଟି ମାଂସ ତରକାରୀ ଭୋଜି କରିବୁ । ସାଙ୍ଗମାନଙ୍କର ଅଭିନବ ପରିକଳ୍ପନା । ଶ୍ରୀ ପରମାନନ୍ଦ ଧଳଙ୍କ ପରିତ୍ୟକ୍ତ କୋଠାଘରେ ଅସୁମାରି ପାରାଙ୍କ ବସା । ତାକୁନେଇ ହନୁଆ ପୋଖରିରେ ରହୁଥିବା ପାଗିଡ଼ିଙ୍କୁ ଦେଇ ତାଙ୍କଠୁ ଆଣିବୁ କୁକୁଡ଼ା । ସାଙ୍ଗମାନେ କଳେ ବଳେ କଉଶଳେ ଦୁଇଟି ପାରାଙ୍କୁ କରାୟତ କଲେ । ତାପରେ ତିନି ସାଙ୍ଗ ଏକାଠିହୋଇ ଚାଲିଲୁ ହନୁଆଁ ପୋଖରୀ ଆଡ଼େ । ବୀର ଦର୍ପରେ ଅତିକ୍ରମ କରୁଥାଉ ହିଡ଼ ପରେ ହିଡ଼ । ପହଞ୍ଚିଲୁ ପାଗିଡ଼ି ପଲ୍ଲୀରେ । ପାଗିଡ଼ିମାନେ ଘର ବନ୍ଦକରିଦେଇ ପଳାଇଥାନ୍ତି କେଉଁଆଡ଼େ । ଝାଟି ମାଟିରେ ତିଆରି କୁଡ଼ିଆ ଗୁଡ଼ିକ ଖୁବ୍ ପରିଷ୍କାର, ପରିଚ୍ଛନ୍ନ । ଘର ଆଗଟି ଯତ୍ନର ସହିତ ଲିପା ହୋଇଥାଏ । ଘରର ଚାରିକଡ଼େ କୁକୁଡ଼ାମାନେ ଛୁଆଗୁଡ଼ିଙ୍କୁ ଧରି ଆନନ୍ଦରେ ଚରୁଥାନ୍ତି । ଘର ଆଗରେ ଝୁଲୁଥାଏ ଧନୁ ଓ କାଣ୍ଡଶର । ବହୁତ ସମୟ ଅପେକ୍ଷା କଲୁ । ଖରା ନଇଁ ଆସିଲା । ପାଗିଡ଼ିମାନଙ୍କ ଦେଖା ଦର୍ଶନ ମିଳିଲା ନାହିଁ । ପାରା ଦୁଇଟିଙ୍କୁ ଆକାଶରେ ଉଡ଼ାଇ ଦେଇ ବିଫଳ ମନୋରଥ ହୋଇ ଘରକୁ ଫେରିଲୁ । କୁକୁଡ଼ା ମାଂସ ରାନ୍ଧିଖାଇବାର ସେ ସ୍ୱପ୍ନ ସେମିତି ଅଧୁରା ହୋଇ ରହିଗଲା ।

ଆମ ଗାଆଁର ନିଷ୍ଠନ୍ତା ପାହାଡ଼କୁ ନିରେଖି ଅନାଇଲେ ଆଖି ଲାଖିଯାଏ ବଡ଼ ପଥରରେ । କଳା ମଚମଚ ମୁଗୁନି ପଥର ଭଳି । ବିଶାଳ ତାର ବପୁ । ରଜବେଳେ ଆମ ଗ୍ରାମବାସୀ ନିଷ୍ଠନ୍ତା ପାହାଡ଼ରେ ଚଢ଼ି ଶେଷରେ ଛୁଅଁନ୍ତି ସେହି ବଡ଼ ପଥରକୁ । ସତେ ଯେମିତି ଏଭରେଷ୍ଟ ବିଜୟୀ । ପଥରରେ ଲେଖନ୍ତି ସେମାନଙ୍କ ନାଆଁ । ପୋତି ଦିଅନ୍ତି ଗୋଟିଏ ପତାକା । ଫେରନ୍ତି ବିଜୟ ଗର୍ବରେ । ସେଠାରୁ ଫେରି ସେମାନେ ଗପି ଚାଲନ୍ତି ସେମାନଙ୍କ ରୋମାଞ୍ଚକର ଅଭିଯାନର ଲୋମ ହର୍ଷଣକାରୀ କାହାଣୀ । ମୂଳିଝରର କାଚକେନ୍ଦୁପରି ପରିଷ୍କାର ଜଳ । ପାହାଡ଼ ଛାତି ଚିରି ସାଇଁ ସାଇଁ ହୋଇ ତଳକୁ ମାଡ଼ି ଆସୁଥିବା ପାହାଡ଼ି ଝରଣାର ଦୃଶ୍ୟ ବର୍ଣ୍ଣନା କଲାବେଳେ ସାଙ୍ଗମାନେ ଭାବପ୍ରବଣ ହୋଇ ପଡ଼ନ୍ତି । ପର୍ବତ ଚଢ଼ିଲା ବେଳକୁ ଦୁଇକଡ଼େ ଆମ୍ବ କଇଁଆ, ଜାମୁ, ପିଜୁଳିର ଅସରନ୍ତି ସମ୍ଭାର । ଯେତେ ଖାଅ, ଯେତେ ନିଅ ପରୁଆ ନାହିଁ । ଆଖିରେ ପଡ଼ନ୍ତି ବିଭିନ୍ନ ଜାତିର ପଶୁ ଆଉ ପକ୍ଷୀ । ଆଖି ଖୋସି ହୋଇଯାଏ ଯେତେବେଳେ ଦେଖନ୍ତି ମୟୂର ଦଳ । ଇନ୍ଦ୍ରଧନୁର ରଙ୍ଗରେ ରଂଜିତ ସେମାନଙ୍କର ପର । ପହିଲି ଆଷାଢ଼ର ପ୍ରଥମ ବର୍ଷାରେ ପୁଲକିତ ହୋଇ କରିଥାନ୍ତି ଅନନ୍ୟ ନୃତ୍ୟ । ସାଙ୍ଗମାନେ ଫେରିବାବେଳେ ସାଉଁଣ୍ଟି ଆଣନ୍ତି ସୁନ୍ଦର ସୁନ୍ଦର ଅନେକ ମୟୂର ପର, ତାଙ୍କ ବିଜୟର ସ୍ମାରକ, ସନ୍ତକ । ପର୍ବତ ଆରୋହଣ କଲାବେଳେ କେହି ସାଙ୍ଗରେ ପାଣି ବୋତଲ ନେଇକି ଯାଆନ୍ତି ନାହିଁ । ଝରଣା ଜଳ

ଯେ ଅମୃତ ପରି ସ୍ୱାଦିଷ୍ଟ । ତାଛଡ଼ା ପାହାଡ଼ର ସବୁଜ ଛାତିରେ ମାଡ଼ିଥାଏ ଆତୁଣ୍ଡି ଲଟା । ତାକୁ କାଟିଦେଲେ ଭସ୍ ଭସ୍ ବହିଆସେ ପାଣି । ଶୋଷ ମେଣ୍ଟିଯାଏ । ବଡ଼ ପଥର ଉପରେ ଠିଆହୋଇ ଆରୋହଣକାରୀମାନେ ଆଖି ଲମ୍ୱାନ୍ତି ନୀଳ ଆକାଶକୁ, ପର୍ବତର ସବୁଜ ସୌନ୍ଦର୍ଯ୍ୟକୁ, ଚାରିକଡ଼େ ବେଢ଼ିଥିବା ସବୁଜ ଶସ୍ୟକ୍ଷେତକୁ, ଛୋଟ ଛୋଟ ଦିଶୁଥିବା ପାଖ ଆଖର ଗାଆଁମାନଙ୍କୁ, ଶିଳ୍ପନଗରୀ ଚୌଦ୍ୱାରକୁ । ଅନୁପମ ସେ ଦୃଶ୍ୟ, ଅନନ୍ୟ ସେ ଅଭିଜ୍ଞତା । ଯିଏ ଅଙ୍ଗେ ନିଭେଇଚି ସେ ହିଁ ଜାଣିଚି । ଅସୀମ ଆନନ୍ଦ, ଅଫୁରନ୍ତ ପୁଲକ । ଗର୍ବ ଆଉ ଗୌରବରେ ଫୁଲିଉଠେ ଛାତି । ସାଙ୍ଗମାନଙ୍କଠାରୁ ଶୁଣି ମନ କନ କନ ହୁଏ ନିଶ୍ଚନ୍ତା ପାହାଡ଼ ଆରୋହଣ କରିବାକୁ । ବଡ଼ ପଥରକୁ ଛୁଇଁବାକୁ । ତା' ଛାତିରେ ଚକ୍ ଖଡ଼ିରେ ନିଜ ନାଆଁ ଲେଖିବାକୁ କିନ୍ତୁ ମାଆ କହେ ବଡ଼ହେଲେ ଯିବୁ । ଶୃଙ୍ଖଳାର ବାତାବରଣ ଭିତରେ ସେ ସୁଯୋଗ ଆଉ କେବେ ଆସିନି । ଏବେ ବୟସର ଅପରାହ୍ନରେ । ପାହାଡ଼ ଆରୋହଣ କରିବାର ବଳ, ବୟସ ଆଉ ନାହିଁ । ନିଶ୍ଚିନ୍ତା ପାହାଡ଼ ଆରୋହଣ କରିବାର ସ୍ୱପ୍ନ ଏବେବି ଅଧୁରା ।

ଗାଆଁର ଆମ ବଡ଼ଭାଇମାନେ ବହୁତ ଶକ୍ତିଶାଳୀ । ବିଶାଳ ତାଙ୍କର ବପୁ । ବଳିଷ୍ଠ ତାଙ୍କର ବାହୁ । ଅଦମ୍ୟ ତାଙ୍କର ସାହସ । ବିରାଟ ବରାଟ ଶାଳ ଓ ଅସନ ବହ୍ଲ କାହିଁ କେତେ ଦୂର ଦୂରାନ୍ତରୁ ନେଇ ଆସନ୍ତି । ଆମ ସାଙ୍ଗମାନଙ୍କ ମନରେ ଚେଇଁ ଉଠିଲା କାମନାର ଇନ୍ଦ୍ରଧନୁ । ଆମେ ବି କିଛି କମ୍ ନୁହଁ । ଆମେ ଯିବୁ ଜଙ୍ଗଲକୁ । କାଟି ଆଣିବୁ ବହ୍ଲ । ଚମକାଇ ଦେବୁ ଗାଆଁକୁ । ସକାଳୁ ସକାଳୁ ହାଫ୍ ପ୍ୟାଣ୍ଟ ପିନ୍ଧି ଅଣ୍ଟାରେ ଗାମୁଛା ଭିଡ଼ି ଚାଲିଲୁ ଜଙ୍ଗଲ ଅଭିମୁଖେ । ସମସ୍ତଙ୍କ ହାତରେ କଟୁରୀ । ତୋଟା ପାର ହେଲାପରେ ପଡ଼ିଲା କୁସୁମରଗଡ଼ି । ହାବୁଡ଼ରେ ପଡ଼ିଲା ଗୋଟେ କେନ୍ଦୁଗଛ । ସର୍ବସମ୍ମତି କ୍ରମେ ନିଷ୍ପତ୍ତି ନିଆଗଲା ଏଇ ଗଛକୁ କାଟି ବୋହିନେଇ ଗାଆଁକୁ ଯିବା । କଟୁରୀରେ କଲୁ ପ୍ରଚଣ୍ଡ ଆକ୍ରମଣ । ବହୁ କଷ୍ଟରେ ଗଛର ଉପର ଛେଲିଟିକୁ ଭେଦ କରିପାରିଲୁ । ଘଣ୍ଟା ଘଣ୍ଟା ଧରି ପ୍ରଚେଷ୍ଟା ଚାଲିଲା ମଞ୍ଜାକୁ କାଟିବା ପାଇଁ । ହୁଙ୍କିଲା ନାହିଁ କେନ୍ଦୁ ଗଛର ମଞ୍ଜା । ସମସ୍ତଙ୍କ ହାତ ଲାଲ ଟହ ଟହ ଦିଶିଲା । କେତେଙ୍କ କଅଁଳ ହାତ ପାପୁଲିରେ ବଡ଼ ବଡ଼ ଫୋଟକା ଓହଳି ପଡ଼ିଲା ।

ସମସ୍ତେ କ୍ଳାନ୍ତ, ଶ୍ରାନ୍ତ, ପରାଜିତ । ନୀରିହ କଟୁରୀଗୁଡ଼ିକ ଆତ୍ମସମର୍ପଣ ଭଙ୍ଗିରେ ମଥା ନୁଆଁଇ ଦେଲେ । କେନ୍ଦୁ ଗଛଟିକୁ କ୍ଷତାକ୍ତ କରି ଆମେ ଫେରି ଆସିଲୁ ଗାଆଁକୁ । ଆମର ସେ ସ୍ୱପ୍ନ ଅଧୁରା ରହିଗଲା ।

ଆଉ ଦିନେ ଖରାବେଳେ ଦେଖିଲା ବେଳକୁ ଗାଆଁର ଭାଇମାନେ ଦଉଡୁଛନ୍ତି ସରକାରୀ ପୋଖରୀ ଆଡ଼େ । ଗାଆଁ ଦାଣ୍ଡରେ ଜନ-ଅରଣ୍ୟ । ଆମେ ବି କିଛି ନବୁଝି ନଶୁଝି ତାଙ୍କ ପଛରେ ଦଉଡ଼ିଲୁ । ପହଞ୍ଚିଲୁ ସର୍କାର ପୋଖରୀ କୂଳରେ । ପୋଖରୀ ଭିତରେ ଶହ ଶହ ଲୋକ । ବଡ଼ ବଡ଼ ରୋହୀ, ଭାକୁର ପାଣିର ଛାତି ଉପରେ ଚିତି ପହଁରା ଦେଉଛନ୍ତି । ପାଣି ଉପରେ ବିଶାଳ ମାଛମାନଙ୍କର ଅପୂର୍ବ ମେଳଣ ।

ଆମ ଗାଆଁ ସର୍କାର ପୋଖରୀରେ ଗମ ଉଠିଚି ।ଗ୍ରୀଷ୍ମର ପ୍ରକୋପରେ ପୋଖରୀର ପାଣି ଉତପ୍ତ ହୋଇଚି । ସେଥିପାଇଁ ଗଭୀର ପାଣି ତଳେ ଆନନ୍ଦରେ ଓ ନିର୍ଦ୍ୱନ୍ଦରେ ଜୀବନଯାପନ କରୁଥିବା ମାଛମାନେ ଉପରମୁହାଁ ହୋଇଛନ୍ତି । ହାତ ପାହାନ୍ତାରେ ତିନି ଚାରି କିଲିଆ ରୋହୀ ଓ ଭାକୁର ମାଛ । ବଡ଼ଭାଇମାନେ ବଡ଼ ବଡ଼ ମାଛ ଧରି ଆନନ୍ଦରେ ଘରମୁହାଁ ଦଉଡୁ ଥାଆନ୍ତି । ମୁଁ ପୋଖରୀରେ ପଶିଲି । ଦୃଢ଼ ସଂକଳ୍ପ ଯେ ବଡ଼ ରୋହୀ ମାଛଟିଏ ଧରିବି ନିଶ୍ଚୟ । ହାତ ପାଖରେ ମାଛ । କେତେବେଳ ଗୋଡ଼ରେ ତ କେତେବେଳେ ଜଙ୍ଘରେ ପିଟି ହେଉଛନ୍ତି । ଜାବୁଡ଼ି ଧରିଲେ ବି ହାତ ପାପୁଲିରୁ ଚଟକିନା ଖସି ପଳେଇ ଯାଉଛନ୍ତି । ଦୀର୍ଘ ଦୁଇ ଘଣ୍ଟା ଅଣ୍ଟାଏ ପାଣିରେ ଠିଆହୋଇ ମାଛ ଧରିବା ଉଦ୍ୟମ ଜାରି ରଖିଲି । ଏମିତି ଗୋଟେ ସୁଯୋଗ ଅନେକ ବର୍ଷ ପରେ ଆସିଛି । ଯାକୁ ହାତଛଡ଼ା କରିବାର ନୁହେଁ ।  କିନ୍ତୁ ମାଛ ଗୁଡ଼ାକ ବଡ଼ ବେଇମାନ । ଆମ ବଡ଼ଭାଇମାନଙ୍କ ପାପୁଲିର ଯନ୍ତା ଭିତରୁ ବାହାରୁ ନଥାନ୍ତି ଅଥଚ ମୋତେ ଧରା ଦେଉ ନଥାନ୍ତି । ଯେତେ ଚେଷ୍ଟା କଲେକି ବି ମୋ ମାଛଧରା ଉଦ୍ୟମ ସଫଳ ହେଲାନାହିଁ । ଶେଷରେ ନୟାନ୍ତ ହୋଇ ପଙ୍କ କାଦୁଅରେ ଲଟପଟ ହୋଇ ଖାଲି ହାତରେ ଘରକୁ ଫେରି ଆସିବାକୁ ବାଧ୍ୟହେଲି । ମାଛ ଧରା ସ୍ୱପ୍ନ ମୋର ଅଧୁରା ରହିଲା ।

ସର୍କାର ପୋଖରୀ, ଗାଆଁ ପୋଖରୀ କି ଚତୁରୀରେ ପୁଣି କେବେ ଗମ ଉଠିବ କେଜାଣି ? ଏବେ ବି ମୋର ଅପେକ୍ଷା ସେଇ ଦିନକୁ , କାଳେ ଅଧୁରା ସ୍ୱପ୍ନର ପରିପୂର୍ତ୍ତି ଘଟିବ ।



*('ମାଟିମହକ' ପତ୍ରିକାର ୨୦୧୯ ପୂଜା ସଂଖ୍ୟାରେ ପ୍ରକାଶିତ)*

# ସ୍ୱାଗତମ

ମାନସର ଚେତା ଫେରିବା ପରେ ସେ ଦେଖିଲା ସେ କ୍ୟାପିଟାଲ ହସ୍‌ପିଟାଲ୍ ବେଡରେ ଶୋଇଛି । ତା ଚାରିକଡ଼େ ସାଲାଇନ୍, ବିଭିନ୍ନ ଔଷଧ ଓ ଇଂଜେକ୍‌ସନ୍‌ର ମେଳଣ । ସବୁଠାରୁ ଆଶ୍ଚର୍ଯ୍ୟ ହେଲା ଯେତେବେଳେ ଦେଖିଲା, ଏକ ସୁନ୍ଦରୀ ଯୁବତୀ ସମର୍ପିତ ଭାବରେ ତାର ସେବା ଶୁଶ୍ରୁଷା କରିଚାଲିଛି । କିଏ ଏହି ଯୁବତୀ, ଏହି ପ୍ରଶ୍ନ ତା ମନକୁ ଆନ୍ଦୋଳିତ କରୁଥିଲା ।

ପୋଟଳଚିରା ଆଖି, ପତଳା ମୁଲାୟମ୍ ହସ ଆଉ ସଜଫୁଟା ଗୋଲାପ ପରି ମୁହଁ ପଛରେ କୃଷ୍ଣକେଶର କମନୀୟ ଝରଣା । ମାନସ ଯୁବତୀଟିର ସୌନ୍ଦର୍ଯ୍ୟରେ ସମ୍ମୋହିତ ହୋଇଥିଲା । ମାନସ ଭାବୁଥିଲା ତା ପରି ଏକ ସାଧାରଣ ଚେହେରାର ଯୁବକର ସେବା ଶୁଶ୍ରୁଷା ଏକ ଅନିନ୍ଦ୍ୟ ସୁନ୍ଦରୀ ଯୁବତୀ କାହିଁକି ଅତି ଆଗ୍ରହର ସହ ନିର୍ବିକାର ଚିତ୍ତରେ କରି ଚାଲିଛି ?

ଏତିକି ବେଳେ ନର୍ସ ପଶି ଆସି ମାନସକୁ ଇଂଜେକ୍‌ସନ ଦେଲେ ଓ ଯତ୍ନର ସହିତ ଔଷଧ ଖୋଇଦେଲେ । ଯୁବତୀଟି ନର୍ସକୁ ସହଯୋଗର ହାତ ବଢ଼ାଇଦେଉଥାଏ ।

ନର୍ସ କହିଲେ - ଭଉଣୀ, ତୁମେ ଗଲା ଆଠ ଦିନ ହେବ ନଖାଇ ନଶୋଇ କେତେ ପରିଶ୍ରମ କଲଣି । ତୁମରି ସେବା ଶୁଶ୍ରୁଷା ଯୋଗୁଁ ଏ ବାବୁ ଏକ ନବ ଜୀବନ ପାଇଛନ୍ତି । ଏ ବାବୁ ତୁମର କଣ ହେବେ ?

- "ଭାଇ, ମାଉସୀ ପୁଅ ଭାଇ " । ଯୁବତୀଟିର ସ୍ୱଷ୍ଟ ଉତ୍ତର । ଏ ପ୍ରଶ୍ନଟି ବୋଧହୁଏ ସମସ୍ତଙ୍କଠାରୁ ସେ ଆଶା କରୁଥିଲା । ସେଥିପାଇଁ କଣ ଉତ୍ତର ଦେବ ନିଜକୁ ସଂପୂର୍ଣ୍ଣ ପ୍ରସ୍ତୁତ କରିଥିଲା ।

ମାନସ ଭାବୁଥିଲା, ଇଏ କେମିତି ତାର ମାଉସୀ ଝିଅ ଭଉଣୀ ? ତାର ନିଜର ଦୁଇଟି ମାଉସୀ । ତାର ସବୁ ମାଉସୀ ଝିଅ ଭଉଣୀଙ୍କୁ ସେ ଭଲ ଭାବରେ ଜାଣେ, ଇଏତ ତାର ମାଉସୀ ଝିଅ ଭଉଣୀ ନୁହେଁ । ଏଭଳି ଯୁବତୀକୁ ସେ ପ୍ରଥମ ଥର ଦେଖୁଛି । ସେ ସ୍ୱଷ୍ଟ ଜାଣିପାରୁଥିଲା ଯେ ସେ ତାର କେହି ସଂପର୍କୀୟା ନୁହେଁ ।

ମାନସ ଭାବୁଥିଲା ଏ ବିଶିଷ୍ଟ ନାଟ୍ୟକାର ବସନ୍ତ ମହାପାତ୍ରଙ୍କ "କାଚଘର"

ନାଟକର ନାୟିକା ପରି ଏକ ମାନସିକ ରୋଗୀ ନୁହେଁତ ? ଯିଏ ହଠାତ୍ ମାନସିକ ଚିକିତ୍ସାଳୟରୁ ବାହାରି ଆସି ତା' ବେଡ୍ ପାଖରେ ଲାଖି ଯାଇଛି ଆଉ ତାର ମାଉସୀଝିଅ ଭଉଣୀର ନିଖୁଣ ଅଭିନୟ କରିଚାଲିଛି । ମନରେ ନାହିଁ ଦ୍ୱିଧା, ଦ୍ୱନ୍ଦ୍ୱ । ସଂପୂର୍ଣ୍ଣ ସମର୍ପିତା ସେବିକା ।

ମାନସ ଯେଉଁଦିନ କଥା କହିବାକୁ ସକ୍ଷମ ହେଲା ଯୁବତୀଟିକୁ ତାର ଥିଲା ପ୍ରଥମ ପ୍ରଶ୍ନ- ତୁମେ କିଏ ?

- ମୁଁ ତୁମ ଗାଁର ଝିଅ । ବାଣୀ ବିହାରର ପଞ୍ଚମ ବର୍ଷ ଅର୍ଥନୀତି ଛାତ୍ରୀ । ତୁମ ଡିପାର୍ଟମେଣ୍ଟର ସରିତାଅପା ମୋର ହଷ୍ଟେଲରେ ରୁମ୍ ମେଟ୍ ।

ମାନସ ପଞ୍ଚମ ଶ୍ରେଣୀ ପାସ୍ କଲାପରେ ଟାଙ୍ଗୀ ହାଇସ୍କୁଲରେ ପଢ଼ି ମାଟ୍ରିକ୍ ପାସ୍ କରିଥିଲା । ତାପରେ ରେଭେନ୍‌ସା କଲେଜରେ ବିଏ ପାସ୍ କରି ବାଣୀବିହାରରେ ଦୁଇ ବର୍ଷ ହେବ ଅଧ୍ୟୟନ କରୁଅଛି ରାଜନୀତି ବିଜ୍ଞାନ ବିଭାଗରେ । ଗାଁ ତା' ପାଇଁ ଥିଲା ଏକ ଅଜଣା ଇଲାକା, ଅଚିହ୍ନା ମାଟି । ଛୁଟିରେ ଗାଁକୁ ଗଲେ ପ୍ରାୟ ଘର ମଧ୍ୟରେ ସୀମାବଦ୍ଧ ରହୁଥିଲା । ରେଡିଓ ଶୁଣିବା, ମାଗାଜିନ୍ ପଢ଼ିବା, ପରିବାର ଲୋକଙ୍କ ସଙ୍ଗେ ଗପସପରେ ସମୟ ବିତାଇ ଦେଉଥିଲା । ଗାଆଁ ଲୋକ ଓ ଗାଆଁ ପିଲାମାନଙ୍କୁ ସେ ବିଶେଷ ଜାଣିନଥିଲା ।

- ତୁମେ ଏଠାକୁ ଆସିଲ କେମିତି ? ମାନସର ପ୍ରଶ୍ନ ।

- ମୁଁ ଯେତେବେଳେ ବାଣୀବିହାରକୁ ପଢ଼ିବାକୁ ଆସିଲି, ତୁମ ସାଙ୍ଗ ସମ୍ବିତ୍ କହିଥିଲେ ଯେ ତୁମେ ବାଣୀବିହାରରେ ପଲିଟିକାଲ୍ ସାଇନ୍ସରେ ପିଜି କରୁଛ । ଯୋଗକୁ ତୁମ ଡିପାର୍ଟମେଣ୍ଟର ସରିତା ଅପା ଆସି ମୋ ରୁମ୍‌ରେ ରହିଲେ । ସେ ସବୁବେଳେ ତୁମ କଥା ମୋତେ କହନ୍ତି । ତୁମ ସହିତ ଦେଖା କରିବାକୁ ଓ କଥା ହେବାକୁ ପ୍ରବଳ ଇଚ୍ଛା ଥିଲେବି ସେ ସୁଯୋଗ ଆସି ନଥିଲା । ସରିତା ଅପାଙ୍କ ସାଙ୍ଗରେ ଗଲା ବେଳେ ସିଏ ଦୂରରୁ ମୋତେ ତୁମକୁ ଚିହ୍ନାଇ ଦେଇଥିଲେ । ଗାଁ ମାଟିର ଆକର୍ଷଣ ଅନନ୍ୟ । ଗାଁ ମାଟିର ଭାଇଟିଏ ଗାଆଁଠୁ ଏତେ ଦୂରରେ ପାଖରେ ପାଇଲେ ଦେହରେ ଏକ ଅହେତୁକ ଶିହରଣ ଖେଳିଯାଏ । ତୁମେ ଯେଉଁଦିନ ଚେତାଶୂନ୍ୟ ଅବସ୍ଥାରେ ତୁମ ହଷ୍ଟେଲରୁ କ୍ୟାପିଟାଲ୍ ହସ୍‌ପିଟାଲ୍ ଆମ୍ବୁଲାନ୍ସରେ ଆସିଲ, ସରିତାଅପା ମୋତେ ସଂଗେ ସଂଗେ ଖବର ଦେଲେ । ମୁଁ ସେଇ ଦିନଠୁ ଏଠାକୁ ଆସି ପ୍ରାୟ ପନ୍ଦର ଦିନ ହେବ ହସ୍‌ପିଟାଲ୍ ଆଟେଣ୍ଡ କରୁଛି । ମଝିରେ ମଝିରେ ବାଣୀବିହାର ଯାଇ ଗୁରୁତ୍ୱପୂର୍ଣ୍ଣ କ୍ଲାସ୍‌ଗୁଡ଼ିକ ଆଟେଣ୍ଡ କରୁଛି ।

ଏକା ନିଶ୍ୱାସରେ ସବୁ କଥା ସଂକ୍ଷିପ୍ତରେ କହିଦେଲା ଝିଅଟି ।

- ତୁମ ନାମ କଣ ?

- ରଶ୍ମିରେଖା ସ୍ୱାଇଁ । ଡାକ ନାମ ରଶ୍ମି । ଗାଁ ସ୍ୱାଇଁ ସାହିରେ ଆମ ଘର । ବାପାଙ୍କ ନାମ ରତ୍ନାକର ସ୍ୱାଇଁ ।

- ତୁମେ ହସ୍ପିଟାଲ୍‌ର ଅନ୍ଧାରି ପରିବେଶରେ ରଶ୍ମି ଭଳି ଆଲୋକ ବିଛୁରଣ କରୁଛ । ହସି ହସି କହିଥିଲା ମାନସ ।

ରଶ୍ମିର ଆଖିରେ ହସର ଏକ କ୍ଷୀଣ ରେଖା ।

- ତୁମେ ଭଲ ହୋଇଗଲ ଏହାହିଁ ମୋର ପରମ ସନ୍ତୋଷ । ଗାଁ ଠାରୁ ଏତେ ଦୂରରେ ପରିବାର ଓ ବନ୍ଧୁବାନ୍ଧବଙ୍କ ଅନୁପସ୍ଥିତିରେ ସାଘାଂତିକ ରୋଗରେ ପଡ଼ିଗଲେ ଯେ କେତେ ଅସୁବିଧା ହୁଏ, ମୁଁ ତିଳେ ତିଳେ ଅନୁଭବ କରିଛି ।

- ତୁମେ ମୋତେ ଋଣୀ କରିଦେଲ । ମୁଁ ଏ ଋଣ ଶୁଝିବି କିପରି ?

- ମୋ ଦେହ ଖରାପ ହେଲେ ମୋର ସେବା ଶୁଶ୍ରୂଷା କରି ମୋର ଋଣ ଶୁଝାଇ ଦେବ ।

ତା ପରେ ଦୁହେଁ ହସିଉଠିଲେ ଏକ ଅବ୍ୟକ୍ତ ଆନନ୍ଦରେ । ମାନସ ଭଲ ହୋଇ ବାଣୀ ବିହାରକୁ ଆସିଲାପରେ ସେମାନଙ୍କ ସଂପର୍କ ନିବିଡ଼ରୁ ନିବିଡ଼ତର ହେଲା । ଗାଁ ମାଟିର ମହକ ସେମାନଙ୍କ ସଂପର୍କରେ ଏକ ଅଭିନବ ସୂତ୍ର ଯୋଡ଼ିଦେଲା । ସନ୍ଧ୍ୟାରେ ଲେଡିଜ୍ ହଷ୍ଟେଲ ସାମ୍ନାରେ ଥିବା କୃଷ୍ଣଚୂଡ଼ା ଗଛ ତଳେ ସେମାନଙ୍କର ଅଧିକାଂଶ ଦିନ ସାକ୍ଷାତ ହେଉଥିଲା । ସାଙ୍ଗ ହୋଇ ପୁରୀ, କୋଣାର୍କ, ଚିଲିକା ବୁଲି ଯାଉଥିଲେ । ପରସ୍ପରର ଜୀବନସାଥୀ ହେବା ପାଇଁ କରିଥିଲେ ଦୃଢ଼ ସଂକଳ୍ପ ।

ସେଦିନ ସନ୍ଧ୍ୟାରେ ଲେଡିଜ୍ ହଷ୍ଟେଲ୍ ପୋର୍ଟିକୋରେ ତାଙ୍କ ଗାଁର ଚଇଁଆ ସ୍ୱାଇଁଙ୍କୁ ରଶ୍ମି ସହିତ ଗପସପ ହେଉଥିବାର ଦେଖି ମାନସ ଆଶ୍ଚର୍ଯ୍ୟ ହୋଇଥିଲା । ତା ଦେହର ରକ୍ତ ଟକ୍‌ମକ୍ ହୋଇ ଫୁଟିବାକୁ ଆରମ୍ଭ କଲା । ଆପାଦମସ୍ତକ କ୍ରୋଧରେ ଥରିବାକୁ ଲାଗିଲା । ପିଲାଦିନେ ଚଇଁଆ ସ୍ୱାଇଁଙ୍କୁ ଟେକାମାରି କ୍ଷତାକ୍ତ କରିବା ପାଇଁ ସିଏ ଅନେକ ଟେକା ସଂଗ୍ରହ କରି ରାସ୍ତାରେ ରଖିଥିଲା । କିନ୍ତୁ ସେ ସୁଯୋଗ ଉଣ୍ଡୁ ଉଣ୍ଡୁ ଗାଁରୁ ଦୂରକୁ ପଢ଼ିବା ପାଇଁ ଆସିବାକୁ ହୋଇଥିଲା ।

ତାର ଯେତେବେଳେ ହେତୁ ପାଇଥିଲା ମା' ତାକୁ ପାଖରେ ବସାଇ କହିଥିଲା ତାଙ୍କ ଗାଁ ମାଟିର ସେହି ଲୋମ ହର୍ଷଣକାରୀ କାହାଣୀ । ମାନସର ବାପା ଓ ବଡ଼ବାପା ଦୁଇ ଭାଇ । ଦୁହିଙ୍କର ଏକାନ୍ନବର୍ତ୍ତୀ ପରିବାର । ଦୁଇଭାଇ ରାମ ଲକ୍ଷ୍ମଣ ପରି ଚଳୁଥିଲେ ।

ସେମାନଙ୍କର ଗାଆଁ ମୁଣ୍ଡ ପୋଖରୀ କୂଳରେ ଗୋଟିଏ ଚକରେ ଦଶ ଏକର ଭଲ ଚାଷଜମି ଥିଲା । ଅସରାଏ ବର୍ଷାହେଲେ ଗାଆଁ ପାଖରେ ଥିବା ପର୍ବତର ଛାତି ଚିରି ପାଣି ସେଇ କ୍ଷେତଦେଇ ବହିଯାଉଥିଲା । ମରୁଡ଼ି ବେଳେ ବି ସେ ଜମି ରହେ ସୁଜଳା, ସୁଫଳା, ଶସ୍ୟ ଶ୍ୟାମଳା । ସେ ଧାନରେ ବର୍ଷକ ପାଇଁ ଚାଉଳ କରି ବାକି ଧାନକୁ ବିକ୍ରିକରି ଘରର ସମସ୍ତ ଭଲମନ୍ଦ କାର୍ଯ୍ୟ କରା ଯାଉଥିଲା ।

ଚଇଁଆ ସ୍ୱାଇଁ ଗାଆଁରେ ମହାଜନୀ କାରବାର କରେ । ସିଏ ଲୋକମାନଙ୍କ ସୁଧ କିଭଳି ହିସାବ କରେ କେଜାଣି ସୁଧ ହୁ ହୁ ହୋଇ ବଢ଼ିଚାଲେ । କେଇ ବର୍ଷରେ ମୂଳ, ସୁଧ ମିଶି ଦୁଇ ତିନି ଗୁଣ ହୋଇ ଯାଏ । ସେ ତା ପାଖରେ ଦଶ, ବାରଟା ଗୁଣ୍ଡାକୁ ପୋଷା ମନାଇ ରଖିଥାଏ । ସେମାନଙ୍କ ବାହୁବଳରେ ତାର ଆମ ଅଞ୍ଚଳରେ ଅଖଣ୍ଡ ଆଧିପତ୍ୟ ଜାହିର କରେ । ଲୋକେ ଋଣ ଶୁଝି ନ ପାରିଲେ ତାଙ୍କ ବେକରେ ଗାମୁଛା ପକାଇ ବେଇଜତ କରେ । ତାଙ୍କ ଜମିବାଡ଼ିକୁ ଜବର ଦଖଲ କରିନିଏ ।

ମାନସର ବାପା, ବଡ଼ବାପା ନୀରିହ, ନିଷ୍ପାପ, ଅମାୟିକ ଲୋକ । ସେମାନେ ରାଜାର ପ୍ରଜା ନ ଥିଲେ କି ସାହୁକାରର ଖାତକ ନ ଥିଲେ । ତାଙ୍କର କ'ଣ ବା ଅଭାବ ଥିଲାଯେ ସେମାନେ ଚଇଁଆ ପାଖକୁ ଯିବେ ?

ଭେଡ଼ା ଚୌଧୁରୀ ଘରୁ ମାନସର ବଡ଼ବାପାଙ୍କ ଝିଅ ପ୍ରମିଳା ପାଇଁ ବିଭାଘର ପ୍ରସ୍ତାବ ଆସିଥିଲା । ତାଙ୍କ ପରିବାର ଲୋକମାନେ ସଦଳବଳେ ଆସି ଝିଅଦେଖି ପସନ୍ଦ କରିଗଲେ । ପ୍ରମିଳା ଥିଲା ଗୋଟିଏ ଚାଉଳରେ ଗଢ଼ା । ସୁନ୍ଦରୀ, ଗୁଣବତୀ, ଶିକ୍ଷିତା । ଚୌଧୁରୀ ପରିବାର ଉଚ୍ଚ ଆଭିଜାତ୍ୟ ସଂପନ୍ନ । ତାଙ୍କର ଅଚଳାଚଳ ସଂପତ୍ତି, ପୁଅ ଉଚ୍ଚ ଶିକ୍ଷିତ । ଆମେରିକାରେ ବଡ଼ ଚାକିରି କରିଛି । ଏଭଳି ପ୍ରସ୍ତାବ ଭାଗ୍ୟରେ ଥିଲେ ମିଳେ ।

ଚୌଧୁରୀ ପରିବାରର ଗୋଟିଏ ସର୍ତ୍ତ । ପନ୍ଦର ଦିନ ଭିତରେ ବାହାଘର କରିବାକୁ ପଡ଼ିବ । ଅଷ୍ଟମଙ୍ଗଳା ପରେ ପୁଅ ବୋହୂ ଆମେରିକା ଚାଲିଯିବେ । ପୁଅକୁ ଅଳ୍ପ ଦିନ ଛୁଟି ମିଳିଛି । ତାରି ଭିତରେ ସବୁକାମ ସାରିବାକୁ ପଡ଼ିବ । ବୋହୂର ପାସପୋର୍ଟ ଆଉ ଭିସା ମଧ୍ୟ ଛୁଟି ସରିବା ପୂର୍ବରୁ କରିବାକୁ ପଡ଼ିବ ।

ମାନସର ବଡ଼ବାପା ଓ ବାପା ବସି ଆଲୋଚନା କଲେ । ଦୁଇ ତିନି ଏକର ଜମି ବିକ୍ରି କରିଦେଲେ ବାହାଘରର ସମସ୍ତ ଖର୍ଚ୍ଚ ତୁଲାଇ ହେବ । କିନ୍ତୁ ଏତେ ଶୀଘ୍ର ଜମି ପାଇଁ ଗ୍ରାହକ ଯୋଗାଡ଼ ହେବା ଅସମ୍ଭବ । ଅନନ୍ୟୋପାୟ ହୋଇ ସେମାନେ ଚଇଁଆ ସ୍ୱାଇଁ ପାଖରୁ ଆବଶ୍ୟକୀୟ ଟଙ୍କା କରଜ ସୂତ୍ରରେ ଆଣିଲେ । ଭାବିଲେ ବାହାଘର ପରେ

କିଛି ଜମି ବିକ୍ରିକରି କରଜ ମୁକ୍ତ ହୋଇଯିବେ ।

ପ୍ରମିଳାର ବାହାଘର ମହାସମାରୋହରେ ଅନୁଷ୍ଠିତ ହେଲା । ତାଙ୍କ ଝିଅ ଜ୍ୱାଇଁ ଏବେ ଆମେରିକାରେ । ଭଲ ଜାଗାରେ ଝିଅ ବାହାହେବାରୁ ଘରେ ଖୁସିର ଲହଡ଼ି ଖେଳୁଥିଲା ।

ସେ ବର୍ଷ ରଜରେ ଭଲ ଅସରାଏ ବର୍ଷାହେବାରୁ ବାପା, ବଡ଼ବାପା ହଳ ଆଉ ହଳିଆମାନଙ୍କୁ ନେଇ ବିଲ କଢ଼ାଣ କରିବାକୁ ଗଲେ । ବିଲରେ ପହଞ୍ଚି ଅବିଶ୍ୱାସନୀୟ ଦୃଶ୍ୟ ଦେଖି ସେମାନଙ୍କ ଆଖି ଖୋସିହୋଇଗଲା । ଚଇଁଆ ସ୍ୱାଇଁର ଦଶଟା ଗୁଣ୍ଡା ହାତରେ ମାରାତ୍ମକ ମାରଣାସ୍ତ୍ର ଧରି ତାଙ୍କ ବିଲ ଉପରେ ଦଣ୍ଡାୟମାନ । ସମସ୍ତେ ମଦଖାଇ ମାତାଲ । ସେମାନଙ୍କ ପଛରେ ଛତା ଧରି ଠିଆହୋଇଥିଲା ଚଇଁଆ, ସର୍କସର ରିଙ୍ଗ୍ ମାଷ୍ଟର ।

ଚଇଁଆ ସ୍ୱାଇଁ ସିଂହ ପରି ଝପଟି ଆସି ଗର୍ଜ୍ଜନ କରି କହିଲା-ଏ ଦଶ ଏକର ଚକ ଜମି ଏବେ ମୋର । ସାବଧାନ, ତମେ ଯାକୁ ଛୁଇଁଲେ ମୋ ଲୋକମାନେ ତୁମକୁ ଛ'ଫାଳ କରି ଚିରିଦେବେ । କରଜ କଲାବେଳେ ହାତ କାଟି ଏ ଦଶ ଏକର ଜମି ମୋ ନାଆଁରେ କରି ଦେଇଚ । ସେକଥା କ'ଣ ତମର ହେଜ ନାହିଁ ?

କ୍ରୋଧ ଜର୍ଜ୍ଜରିତ କଣ୍ଠରେ ବାପା ବଡ଼ବାପା ଜବାବ ଦେଲେ-ତୁ ଡାହା ମିଛ କହୁଛୁ । ଧର୍ମ ତତେ ସହିବ ନାହିଁ । ଆମେ ତତେ ଏ ଜମି ବିକ୍ରି କରିନାହୁଁ । ତୋଠୁ କିଛି ଟଙ୍କା କରଜ ନେଇଛୁ । ଖୁବ୍ ଶୀଘ୍ର ତୋ ଟଙ୍କା ସୁଧମୂଳ ସହିତ ପରିଶୋଧ କରିଦେବୁ ।

ଚଇଁଆ ସ୍ୱାଇଁର ଇସାରାରେ ଦଶଟାଯାକ ଗୁଣ୍ଡା ବାପା, ବଡ଼ବାପାଙ୍କ ଆଡ଼କୁ ମାଡ଼ିଆସି ମରଣାନ୍ତକ ଆକ୍ରମଣ କଲେ । ବାପା, ବଡ଼ବାପା ରକ୍ତାକ୍ତ ଅବସ୍ଥାରେ ଜମିରେ ପଡ଼ି ଚିତ୍କାର କରୁଥାନ୍ତି । ନିଷ୍ଠୁର ଚଇଁଆର ହୃଦୟ ତଥାପି ତରଳିଲା ନାହିଁ । ଧୂସର ମାଟି ରକ୍ତ ରଂଜିତ ହେଲା ।

ବାପା, ବଡ଼ବାପା ପ୍ରାୟ ଚାରି ଛଅମାସ ଚିକିତ୍ସା ପରେ ଚଲାବୁଲା କଲେ । କ୍ଷତ ସିନା ଶୁଖିଗଲା, କ୍ଷତର ଦାଗ ସବୁଦିନ ଅଲିଭା ରହିଗଲା । ସେ ଦାଗକୁ ଅନାଇଁ ଦେଲେ ପରିବାରର ଲୋକମାନଙ୍କ ଆଖିରେ ଝଲସି ଉଠେ ସେଇ ଲୋମ ହର୍ଷଣକାରୀ ଦୃଶ୍ୟ ।

ମାନସର ବଡ଼ମା' କହିଲେ – ସେ ଜମି ପଛେ ଯାଉ , ସେ ନୁଉଛୁଣା ସାଙ୍ଗରେ ଲାଗନା । ଠାକୁର ଅଛନ୍ତି । ସିଏ ସର୍ବଦ୍ରଷ୍ଟା, ଅନ୍ତର୍ଯ୍ୟାମୀ । ସିଏ ଦିନେନା ଦିନେ ନ୍ୟାୟ କରିବେ ।

ଦଶ ଏକର ଓଉଲ ନମ୍ବର ଜମି ଚାଲିଗଲା ପରେ ମାନସର ପରିବାରକୁ ଅଭାବ ଅନଟନ ମାଡ଼ି ଆସିଲା । ମାନସର ବାପା ଶିକ୍ଷକତାରୁ ଯାହା ରୋଜଗାର କରୁଥିଲେ ସେଥିରେ ଘର ଯେନତେନ ପ୍ରକାରେଣ ଚଳିଯାଉଥିଲା । କିଛି ବର୍ଷ ପରେ ମାନସର ବଡ଼ ବାପାଙ୍କ ପୁଅ ଗାଆଁ ହାଇସ୍କୁଲରେ ଚାକିରି ପାଇବା ପରେ ଘରର ଆର୍ଥିକ ସ୍ଥିତି ଟିକେ ମଜଭୁତ ହେଲା । ମାନସ ବାହାରେ ରହି ପଢ଼ିବାର ସୁଯୋଗ ପାଇପାରିଲା ।

ଅତୀତ ଦିନର ସେଇ ବ୍ୟଥିତ କାହାଣୀ ମନେପଡ଼ିବା ପରେ ମାନସର ଦେହ କ୍ରୋଧରେ ଝାଳେଇ ଗଲା ।

ସେଇ ବଦମାସ ଚଇଁଆ ସହିତ ରଶ୍ମିର କି ସଂପର୍କ ? ସିଏ ରଶ୍ମି ପାଖକୁ କାହିଁକି ଆସିଥିଲା ? ରାଗ ତମତମ୍ ହୋଇ ଲେଡିଜ୍ ହଷ୍ଟେଲ୍ ପୋର୍ଟିକୋକୁ ଚଢ଼ିଗଲା ବେଳକୁ ଚଇଁଆ ସ୍ୱାଇଁ ସେଠାରୁ ଚାଲିଯାଇଥିଲା । ଘଞ୍ଚ ଗଛ ଆଡୁଆଳର କିଟିକିଟି ଅନ୍ଧାର ଭିତରେ ମାନସ ତାକୁ ଆଉ ଦେଖି ପାରିନଥିଲା ।

- ରଶ୍ମି, ଚଇଁଆ ସ୍ୱାଇଁ ଏଠାକୁ କାହିଁକି ଆସିଥିଲା ?

ମାନସ ଆଖିରେ ରକ୍ତମୁଖା ବାଘର ଚାହାଣୀ ।

- ସେତ ମୋର ବାପା- ଅବିଚଳିତ କଣ୍ଠରେ ରଶ୍ମିର ଉତ୍ତର ।

ମାନସ ଉପରେ ପାହାଡ଼ ଛିଣ୍ଡି ପଡୁଥିଲା । ତା ପାଦତଳୁ ମାଟି ଖସିଗଲାପରି ସେ ଅନୁଭବ କଲା ।

- ତମେ କହୁଥିଲ ତୁମ ବାପାଙ୍କ ନାମ ରତ୍ନାକର ସ୍ୱାଇଁ ।

- ହଁ , ଭଲ ନାମ ରତ୍ନାକର ସ୍ୱାଇଁ । କିନ୍ତୁ ଗାଁରେ ସମସ୍ତେ ଚଇଁଆ ସ୍ୱାଇଁ ବୋଲି ଜାଣନ୍ତି ।

- ତମେ ଜାଣିଛ ? ସେଟା ଗୋଟାଏ ବାଷ୍ଟାର୍ଡ ।

- ତମେ ଏମିତି କ'ଣ କହୁଛ ? ସିଏ ଯେ ମୋ ବାପା । ଗାଆଁର ସିଏ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ।

- ସେଇ ମାନ୍ୟଗଣ୍ୟ ବ୍ୟକ୍ତିର ମୁଖା ତଳେ ଗୋଟାଏ ନରାଧମ, ଜହ୍ଲାଦ, ପିଶାଚ ଲୁଚି ରହିଛି । ଏଟା ଗୋଟାଏ ମିଥ୍ୟାବାଦୀ, ଟାଉଟର । ମହାଜନୀ କାରବାର କରିବା ଆଳରେ ଇଏ ଅନେକ ଲୋକଙ୍କୁ ଶୋଷଣ କରୁଛି । ମୋର ବାପା, ବଡ଼ବାପାଙ୍କ ଭଳି ନୀରିହ ନିଷ୍କପଟ ବ୍ୟକ୍ତିଙ୍କୁ ଅସୁବିଧା ସମୟରେ କିଛି ଟଙ୍କା ଋଣଦେବା ଆଳରେ ତାଙ୍କର ଦଶ ଏକର ଓଉଲ ନମ୍ବର ଜମିକୁ ନିଜ ନାଆଁରେ କରିନେଲା । ମୋବାପା,

ବଡ଼ବାପା ଆପତ୍ତି କରିବାରୁ ତାଙ୍କୁ ଗୁଣ୍ଡା ଲଗାଇ ରକ୍ତାକ୍ତ କରିଦେଲା । ସେ ନାଗସାପ ଔରସରୁ ତମ ଭଳି ନିଷ୍ପାପ ସାଧବବୋହୂର ସୃଷ୍ଟି ହେଲା କିପରି ? ତମେ ବୋଧେ କିଛି ଜାଣିନ । ମୋ ଗାଁ ସାଙ୍ଗ ସମ୍ମିତକୁ ପଚାରିବ । ସେ ତୁମ ବାପାର ଅପକୀର୍ତ୍ତି ସଂପର୍କରେ ସବୁ କହିବ । ତା' ପରେ ତା ମୁହଁକୁ ଛେପ ପକାଇବାକୁ ବି ତୁମ ମନ ହେବ ନାହିଁ ।

କ୍ରୋଧ ଜର୍ଜରିତ ମାନସ ଦ୍ରୁତ ଗତିରେ ଫେରି ଆସିଥିଲା ବୟଜ୍ ହଷ୍ଟେଲ୍‌କୁ । ଶାନ୍ତ, ଶିଷ୍ଟ, ହର୍ଷୋତ୍‌ଫୁଲ୍ଲ ମାନସର ଏ ଅପ୍ରତ୍ୟାଶିତ ପରିବର୍ତ୍ତନ ଦେଖି ସ୍ତମ୍ଭୀଭୂତା ହୋଇଥିଲା ରଶ୍ମି । ମାନସର ଛାତି ତଳେ ଲୁଚିଥିବା ସୁପ୍ତ ଆଗ୍ନେୟଗିରିରୁ ଯେମିତି ଆଗ୍ନେୟ ଲାଭା ଉଦ୍‌ଗୀରଣ ହେଉଥିଲା ।

ସେଇଦିନଠାରୁ ମାନସ ଆଉ ଲେଡିଜ୍ ହଷ୍ଟେଲ୍ ଆସି ନ ଥିଲା । କିଛିଦିନ ପରେ କ୍ଲାସ୍ ସାରି ହଷ୍ଟେଲ୍‌କୁ ଫେରୁଥିବା ସମୟରେ ରଶ୍ମିର ରୁମ୍‌ମେଟ୍ ସରିତା ମାନସକୁ କହିଲା- କ'ଣ ହେଇଛି ମାନସ ? କିଛି ଦିନ ହେବ ରଶ୍ମିଟା ମଝିରେ ମଝିରେ କାନ୍ଦୁଛି । ପଚାରିଲେ କିଛି କହୁନି । ଦୁଇଦିନ ହେବ ତାକୁ ଭୀଷଣ ଜ୍ୱର । କାଲି ରାତିରେ ଟେମ୍ପେରେଚର୍ ବଢ଼ି ୧୦୪ ଡ଼ିଗ୍ରୀରେ ପହଞ୍ଚି ଯାଇଥିଲା । ଔଷଧ ଖୁଆଇଲା ପରେ ଓ ମଥାରେ ପାଣି ପଟି ଦେଲା ପରେ ଜ୍ୱର କମିଲା । ଭାରି ଭଲ ଝିଅଟା । ତା ଯନ୍ତ୍ରଣା ଦେଖି ମୁଁ ସହିପାରୁନି ।

ସରିତା ଆଖି ଲୁହରେ ଛଳଛଳ ହୋଇଗଲା । ସରିତା ସଙ୍ଗେ ମାନସ ବାହାରିଲା ଲେଡିଜ୍ ହଷ୍ଟେଲ୍ । ପୋର୍ଟିକୋରେ ଅପେକ୍ଷା କଲା । ସେ ମନେ ମନେ ଭାବୁଥିଲା ତାର ବାପାର କୁକର୍ମ ପାଇଁ ନୀରିହ ଝିଅଟା କାହିଁକି ପ୍ରାୟଶ୍ଚିତର ଜଉଘରେ ଜଳି ଜଳି ନିଃଶେଷ ହୋଇଯିବ । ଯେଉଁ ଝିଅଟା ତ୍ୟାଗର ପ୍ରତିମୂର୍ତ୍ତି ସାଜି ଦିନରାତି ସମାନ କରି ତାକୁ ସୁସ୍ଥ କରିଥିଲା, ତା ପ୍ରତି ଅବହେଳା ଓ ଉଦାସୀନତା ପ୍ରଦର୍ଶନ ଯୋଗୁଁ ସେ ଅନୁତାପରେ ମ୍ରିୟମାଣ ହେଉଥିଲା ।

ହଠାତ୍ ଦେଖିଲା ବେଳକୁ ରଶ୍ମି ତା ଆଗରେ ଜୀର୍ଣ୍ଣଶୀର୍ଣ୍ଣ ଶରୀର ନେଇ ଠିଆ ହୋଇଛି । ରଶ୍ମିର ଦେହ, ମନ, ମୁହଁ, ଆଖିରୁ ଯେମିତି ରଶ୍ମି ହଜି ଯାଇଛି ।

କ'ଣ ହେଇଛି ତମର ? - ମାନସର ବାଷ୍ପାକୁଳ କଣ୍ଠରେ ପ୍ରଶ୍ନ । ରଶ୍ମି ଖାଲି କଇଁ କଇଁ ହୋଇ କାନ୍ଦୁଥିଲା । କାନ୍ଦି କାନ୍ଦି ସିଏ କହିଥିଲା-ତୁମେ ହୁଏତ ଜାଣିନା ମୋତେ ମାତ୍ର ସାତ ବର୍ଷବେଳେ ମୋ ମାଆ ମୋତେ ଛାଡ଼ି ଚାଲିଗଲେ ଆରପୁରକୁ । ସେଇ ଦିନଠୁ ମୁଁ ଆସି ଆମ ଗାଆଁଠୁ ଦୂରରେ ମାମୁଘର ଗାଆଁରେ ବଢ଼ିଲି, ସେଇଠି ପାଠ ପଢ଼ିଲି । ରମାଦେବୀ କଲେଜରେ ବି.ଏ ପଢ଼ି ବାଣୀ ବିହାରରେ ପିଜି କରୁଛି । କେବଳ ଛୁଟିରେ

କେବେ ଗାଆଁକୁ ଆଉ କେବେ ମାମୁଘର ଗାଆଁକୁ ଯାଏ । ମତେ ବିଶ୍ୱାସ କର,ଏସବୁ ଆମ ଗାଆଁରେ ଆମ ଦୁଇ ପରିବାର ଭିତରେ କ'ଣ ଘଟିଛି ମୁଁ ସେସବୁ କିଛି ଜାଣେନା । ମୁଁ କଥା ଦେଉଛି, ମୁଁ ସବୁବେଳେ ତୁମ ସଂଗରେ ଅଛି ଓ ରହିବି । ଆମେ ଦୁହେଁ ମିଶି ପରିସ୍ଥିତିର ମୁକାବିଲା କରିବା । ବ୍ୟସ୍ତ ହୁଅନା । ସବୁ ଠିକ୍ ହୋଇଯିବ । ଭଗବାନଙ୍କ ଉପରେ ଭରସା ରଖ ।

ରଶ୍ମିର ଲୁହ ଥମୁ ନ ଥିଲା । କୋହ କମୁ ନ ଥିଲା ।

ମାନସ ରଶ୍ମି ଆଖିରୁ ଲୁହ ପୋଛି ଦେଇଥିଲା । ସେ ଅଂଗୁଳିର ନରମ ସ୍ପର୍ଶରେ ସମ୍ମୋହିତ ହେଉଥିଲା ରଶ୍ମି । ତା ଦେହର କୋଣ ଅନୁକୋଣରେ ଶକ୍ତି ସଂଚାରିତ ହେଉଥିଲା । ଆଶା, ବିଶ୍ୱାସ ଓ ସ୍ୱପ୍ନ ତା ମନରେ ବସା ବାନ୍ଧୁଥିଲା । ହଷ୍ଟେଲ୍ ଭିତରକୁ ଫେରିଲା ବେଳକୁ ତାକୁ ଲାଗୁଥିଲା ସେ ଯେପରି ନୂଆ ଜନ୍ମ ପାଇଛି ।

ମାନସ ଏମ୍‌ଏ ପାସ କଲାପରେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ରାଜନୀତି ବିଜ୍ଞାନରେ ଅଧ୍ୟାପକ ଭାବେ ନିଯୁକ୍ତି ପାଇଲା । ରଶ୍ମି ଜଗନ୍ନାଥଙ୍କ ଚରଣ ପଙ୍କଜରେ କୃତଜ୍ଞତାରେ ବତୁରି ଯାଉଥିଲା ।

ମାନସ ଚାକିରି ପାଇବା ପରେ ତାର ବାପା, ମା', ଭଉଣୀମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେମାନଙ୍କ ମଉଳି ଯାଉଥିବା ସ୍ୱପ୍ନ ପୁଣି ପଲ୍ଲବିତ ହେଲା । ତାର ଚଳିବା ଭଳି ଟଙ୍କା ରଖି ଆଉ ସବୁ ବାପାଙ୍କ ପାଖକୁ ପ୍ରତି ମାସରେ ପଠାଇଦିଏ । ତାର ବାପା ନିମ୍ନ ପ୍ରାଥମିକ ସ୍କୁଲରେ ଶିକ୍ଷକତା କରି ଅବସର ନେବା ପରେ ଅଭାବ ମାଡ଼ି ଆସୁଥିଲା । ଘରେ ଦୁଇ ବଢ଼ିଲା ଝିଅ । ବାପା ମା'ଙ୍କ ଉପରେ ପାହାଡ଼ ପରି ଚିନ୍ତା । ପିଲାବେଳେ ବାପା ମାଙ୍କ ପାଖେ ଥିବାବେଳେ ସେମାନଙ୍କ ଯନ୍ତ୍ରଣା, ଆଶା ଓ ଆଶଙ୍କା ସେ ତିଳତିଳ କରି ଅନୁଭବ କରିଥିଲା । ସବୁ ସମସ୍ୟାର ସମାଧାନ କରିବା ପାଇଁ ମାନସ ମନେ ମନେ ଦୃଢ଼ସଂକଳ୍ପ ନେଲା ।

ପ୍ରତି ମାସରେ ମାନସ ଦରମା ନେଇ ଘରକୁ ଯାଇ ବାପାଙ୍କୁ ଦେଇଆସେ । ବାପାଙ୍କ ଆଗରେ ସେ କଥା ପଦେ କହିବାକୁ କେବେ ସାହସ କରିପାରିନି । ମା'କୁ ରଶ୍ମି ସହିତ ଗଢ଼ି ଉଠିଥିବା ନିବିଡ଼ ସଂପର୍କ ଓ ବିବାହ ବିଷୟରେ କହିବା ପାଇଁ ପ୍ରସ୍ତୁତ ହୋଇ ଗଲେବି ମା'ର ସ୍ନେହପୂର୍ଣ୍ଣ ଚାହାଣୀ ଦେଖି ତା ପାଟି ଖୋଲେନା, ଜିଭ ଲେଉଟେନା । ତାକୁ ସାରା ଦୁନିଆର ସ୍ନେହ ମମତା ଅଜାଡ଼ି ଦେଇଥିବା ବାପା, ମା'ଙ୍କ ହୃଦୟରେ ଆଘାତ ଦେବା ଚିନ୍ତା କଲାବେଳକୁ ସେ ଦୁଃଖ ଓ ଆଶଙ୍କାରେ ଭାଙ୍ଗି ପଡୁଥିଲା ।

ସେଦିନ ଖରାବେଳେ ମଧ୍ୟାହ୍ନ ଭୋଜନ ଖାଇସାରି ମା' ସହିତ ଗପସପ ହେଲାବେଳକୁ ମାନସ ଚଇଁଆ ସ୍ୱାଇଁ ଝିଅ ରଶ୍ମି ସହିତ ତାର ସମୟାନୁକ୍ରମେ ଗଢ଼ି ଉଠିଥିବା ସଂପର୍କ ଓ ତା ସହିତ ବିବାହ ପାଇଁ ସଂକଳ୍ପ ବିଷୟ କହିଲା ବେଳେ ତା ମା ଆଖିରୁ ଧାର ଧାର ଲୁହ ଅମାନିଆ ହୋଇ ବୋହିଯାଉଥିଲା । ସେ ମାନସକୁ ଧରି କଇଁ କଇଁ ହୋଇ କାନ୍ଦୁଥିଲେ । ଯେମିତି ତାକୁ ଦେଖି ହଷ୍ଟେଲ୍ ପିଣ୍ଡାରେ ରଶ୍ମି କାନ୍ଦିଥିଲା ।

ପରିସ୍ଥିତି କିପରି ତାଙ୍କ ବିବେକସଂପନ୍ନ ପୁଅକୁ ବିବଶ କରି ଦେଇଛି, ତାହା ଶୁଣି ସେ ଭାଙ୍ଗି ପଡୁଥିଲେ । ପୁଅ ପାଇଁ କେତେ ଭଲ ଜାଗାରୁ ପ୍ରସ୍ତାବ ଆସୁଛି । ଶେଷକୁ ନୁଉଛୁଣା ଚଇଁଆ ସ୍ୱାଇଁର ଝିଅ ! ସେ କାନକୁ ବିଶ୍ୱାସ କରି ପାରୁଥିଲେ । ତାଙ୍କର ସ୍ୱପ୍ନଗୁଡ଼ିକ ପ୍ରସ୍ଫୁଟିତ ହେବା ପୂର୍ବରୁ ବୃନ୍ତଚ୍ୟୁତ ହେଉଥିଲେ ।

ଆଖିରେ ଆଖିଏ ଲୁହ ନେଇ ମା କହିଲେ - ବାବୁରେ ! ଯାହାତ ହେଲାଣି ହେଲାଣି । ଏବେ ଦୂରେଇ ଯାଆ ତା ଠାରୁ । ଆମେ ସାଇ ଭାଇ ପାଞ୍ଚ ଖଣ୍ଡ ଗାଁରେ କେମିତି ମୁହଁ ଦେଖେଇବୁ ? ତୋ ବାପା ତତେ ନେଇ କେତେ ଗର୍ବ କରନ୍ତି । ସେ କ'ଣ ସମ୍ଭାଳି ପାରିବେ ଏ ଆଘାତ ? ହରିଜନ, ଗିରିଜନ ଘରେ ହୋଇଥିଲେ ହୁଏତ ମନକୁ ବୁଝାଇ ଦେଇଥାନ୍ତୁ । କିନ୍ତୁ କେମିତି ଭୁଲିବୁ ସେ ଜହ୍ଲାଦର ଅପକୀର୍ତ୍ତି, ପିଶାଚର କଳଙ୍କ କାଳିମା । ଆମ ଗାଆଁ ଲୋକ ତାଙ୍କ ଜୀବନକୁ ବାଜି ଲଗେଇ ଆମ ପାଇଁ ଚଇଁଆ ବିରୁଦ୍ଧରେ ଠେଙ୍ଗା ଉଠୋଉଛନ୍ତି । କ'ଣ ଉତ୍ତର ଦେବା ସେମାନଙ୍କୁ ?

-ମା ଲୋ, ମୋ ମନରେ ବି ଚଇଁଆ ସ୍ୱାଇଁ ପାଇଁ ପାହାଡ଼ ପରି ଘୃଣା ଓ ବିଦ୍ୱେଷ । କନ୍ତୁ ପରିସ୍ଥିତି ମୋତେ ଆଜି ଘୋଷାରି ଘୋଷାରି ଏହିଠାରେ ଠିଆ କରିଦେଲା । ରଶ୍ମି ବହୁତ ଭଲ ଝିଅ । ଚଇଁଆ ସ୍ୱାଇଁର ପୂରା ବିପରୀତ । ବିଷ ବୃକ୍ଷରେ ପୀୟୁଷର ଫଳ । ପ୍ରଭୁଙ୍କ ସୃଷ୍ଟିରେ ଅତୀବ ଆଶ୍ଚର୍ଯ୍ୟ । ତା' ଛଡ଼ା ପିଲାବେଳୁ ତା'ମାଆଙ୍କ ମୃତ୍ୟୁହୋଇ ଯାଇଥିବା ଯୋଗୁ ସିଏ ତା ମାମୁଘର ଗାଆଁରେ ବଢ଼ିଛି, ସେଇଠି ପାଠ ପଢ଼ିଛି । ବାହାରେ ବାହାରେ ରହି ପାଠ ପଢ଼ିଛି । ସିଏ ତା ବାପାଙ୍କ କୁକର୍ମ ବିଷୟରେ କିଛି ଜାଣେନା । ମୁଁ ଭାବୁଛି ତାର ବାପାର ପାପ ପାଇଁ ନିରିହ ଝିଅଟା କାହିଁକି ପ୍ରାୟଶ୍ଚିତ କରିବ ? ମୁଁ ରଶ୍ମିକୁ କଥା ଦେଇ କଥା ଭାଙ୍ଗିବାକୁ ଚିନ୍ତା କଲେ ପାଉଛି ବିବେକର ବୃଶ୍ଚିକ ଦଂଶନ । ଆମେ ବହୁତ ଆଗେଇ ଯାଇଛୁ । ପଛକୁ ଫେରିବାକୁ ଯେତେ ଚେଷ୍ଟା କଲେବି ସମ୍ଭବ ହେଉନି । ଚଇଁଆ ପ୍ରତି ମୋର ଘୃଣା ଆଉ ବିଦ୍ୱେଷ ଏବେବି ଜୀବନ୍ତ । ଏବେବି ମୋର ପ୍ରତି ରକ୍ତକଣିକାରେ ପ୍ରତିହିଂସାର ନିଆଁ ହୁ ହୁ ହୋଇ ଜଳୁଛି । ବାସ୍ତବତା ଓ ମାନବିକତା

ଭିତରେ ମୁଣ୍ଡ ଟେକି ଉଠୁଥିବା ଦ୍ୱନ୍ଦ୍ୱ ମଧ୍ୟରେ ମୁଁ ଘାଣ୍ଟି ଚକଟି ହୋଇ ନିଃସହାୟ, ନିରୁପାୟ, କିଂକର୍ତ୍ତବ୍ୟ ବିମୁଢ଼ ।

- ପୁରୀର କୌଣସି ମନ୍ଦିରର ବିବାହ କର । କିନ୍ତୁ ଚଇଁଆ ସ୍ୱାଇଁ ସହିତ ତୋର ଯେଭଳି କେବେ କୌଣସି ସଂପର୍କ ନ ରହେ, ସେଥିପ୍ରତି ଦୃଷ୍ଟି ଦେବୁ । ଚଇଁଆ ସ୍ୱାଇଁ ଘରକୁ ତୁ ଯିବୁନି କିମ୍ବା ଚଇଁଆ ସ୍ୱାଇଁ ଝିଅ ଆମ ଘରକୁ ଆସିବନି । ତା ହାତରୁ ଆମେ ପାଣି ଛୁଇଁବୁନି । ରଶ୍ମିକୁ ଦେଖିଲେ ଚଇଁଆ ସ୍ୱାଇଁର କୁତ୍ସିତ କଦାକାର ପାପିଷ୍ଠ ମୁହଁଟା ଆମ ଆଖି ଆଗରେ ଝଲସି ଉଠିବ । ଆମେ ସହି ପାରିବୁନି ।

- ହଁ ମା, ତୋର ସମସ୍ତ ସର୍ତ୍ତରେ ମୁଁ ରାଜି । ମୁଁ ବି ମନେ ମନେ ସେଇଆ ଭାବୁଥିଲି । ପରିସ୍ଥିତି ଓ ଆମ ପରିବାରର ଆତ୍ମସମ୍ମାନ ଦୃଷ୍ଟିରୁ ଏହାହିଁ କଲେ ଠିକ୍ ହେବ ।

ବିବାହ ପରେ ପୁରୀରେ ରଶ୍ମି ସହିତ ମାନସର ଦାମ୍ପତ୍ୟଜୀବନ ନିରାଡମ୍ବର, ସୁଖ ଓ ସନ୍ତୋଷ ମଧ୍ୟରେ ଗଡ଼ି ଚାଲିଲା । ପ୍ରତିମାସରେ ବାପା ମାଙ୍କ ପାଖକୁ ଯାଏ ଅଥବା ଦରକାର ଅନୁସାରେ ଟଙ୍କା ମନିଅର୍ଡର ଯୋଗେ ପଠାଏ ଓ ଦୁଇ ଭଉଣୀଙ୍କ ବିବାହ ପାଇଁ ଯଥାସମ୍ଭବ ପଇସା ସଞ୍ଚୟ କରେ ।

-ମାନସ ତିନି ବର୍ଷ ଭିତରେ ଦୁଇ ସାନ ଭଉଣୀଙ୍କ ବାହାଘର ଜାକ ଜମକରେ ଭଲ ଜାଗାରେ କରିଦେଲା । ବନ୍ଧୁ ବାନ୍ଧବ, ଗାଁ ଲୋକ, ସାଇ ଭାଇ ପରିବାର ଲୋକମାନେ ଜଗନ୍ନାଥ ଦର୍ଶନ ପାଇଁ ପୁରୀ ଆସିଲେ ମାନସର ଘରେ ରହନ୍ତି । ରଶ୍ମିର ବ୍ୟବହାର ଓ ଆତିଥ୍ୟରେ ସମସ୍ତେ ମୁଗ୍ଧ ହୁଅନ୍ତି । କେବଳ ବାପା, ମା କେବେ ତାର ଘରକୁ ଆସିନଥିଲେ କି ସେମାନଙ୍କୁ ତା ପାଖକୁ ଡାକିବାକୁ ସିଏ ସାହସ ଜୁଟାଇ ପାରିନଥିଲା ।

ବାପାଙ୍କର ପ୍ରବଳ ଜ୍ୱର କ୍ରମାଗତ ଲାଗିରହିଥିବା ଶୁଣି ମାନସ ବାପା, ମାଙ୍କୁ ନେଇ ପୁରୀ ଚାଲିଆସିଲା । ବାପା, ମା ଅମଙ୍ଗ ହେଉଥିଲେ ବି ବିଶେଷ ବିରୋଧ କଲେ ନାହିଁ । ରଶ୍ମିର ସେବା ଶୁଶ୍ରୂଷା ଓ ନାମଜାଦା ଡାକ୍ତରଙ୍କ ଚିକିତ୍ସା ଫଳରେ ତାର ବାପା ସଂପୂର୍ଣ୍ଣ ସୁସ୍ଥ ହୋଇଗଲେ । ପୁରୀରେ ପ୍ରତିଦିନ ଜଗନ୍ନାଥ ଦର୍ଶନ । ଘରର ଜଞ୍ଜାଳ ଓ ରୋଷେଇର ଝାମେଲା ନାହିଁ । ରଶ୍ମି ପାଖେ ପାଖେ ଜଗି ରହି ମନଲାଖି ଜିନିଷ ଖାଇବାକୁ ଦିଏ ଓ ଠିକ୍ ସମୟରେ ଔଷଧ ଖାଇବାର ବନ୍ଦୋବସ୍ତ କରେ । ବାପା ମା ରଶ୍ମିର ବ୍ୟବହାରରେ ଆନନ୍ଦରେ ଆତ୍ମହରା ହେଲାପରି ଜଣାପଡୁଥିଲେ । ଜଗନ୍ନାଥ ମହାପ୍ରଭୁ ଓ ନୀଳାଚଳ ଧାମର ଆକର୍ଷଣ ଅନନ୍ୟ । ତା ଛଡ଼ା ରଶ୍ମିପରି ସୁନ୍ଦରୀ, ଗୁଣବତୀ ବୋହୂ । ବାପା, ମା ଆଉ ଘରକୁ ଯିବାର ନାଁ ଧରିଲେନି । ରଶ୍ମି, ରଶ୍ମି ବୋଲି ପ୍ରତି ମୁହୂର୍ତ୍ତରେ ଡାକି

ମନର କଥାକୁ ସ୍ନେହରେ କହନ୍ତି । ଏମିତି ପ୍ରାୟ ଆଠ ମାସ ବିତିଗଲା ।

କୁମାର ପୂର୍ଣ୍ଣମୀ ବେଳକୁ ଗାଁରେ ଲକ୍ଷ୍ମୀଯାତ୍ରାର ମହାସମାରୋହ । ଏ ବର୍ଷ ମାନସ ଘରର ପାଳି । ମୂର୍ତ୍ତି ନିର୍ମାଣ କରୁଥିବା ମିସ୍ତ୍ରୀମାନେ ମାସେ ତାଙ୍କ ଘରେ ଖାଇ ମୂର୍ତ୍ତି ନିର୍ମାଣ କରିବେ । ତେଣୁ ଲକ୍ଷ୍ମୀ ଯାତ୍ରାର ମାସକ ଆଗରୁ ତାର ବାପା, ମା ଗାଁକୁ ଚାଲିଗଲେ । ଗଲାବେଳକୁ ମା କହିଗଲା- ବାବୁରେ, ଲକ୍ଷ୍ମୀଯାତ୍ରାକୁ ରଶ୍ମି ସହିତ ଗାଁକୁ ଆସିବୁ ।

ମାନସ ମନର ଗଭୀରତମ ପ୍ରଦେଶରେ ଆନନ୍ଦ ଲହଡ଼ି ଭାଙ୍ଗୁଥିଲା । କିନ୍ତୁ ମନରେ ଆଶଙ୍କାର ପାହାଡ଼ ମୁଣ୍ଡ ଟେକୁଥିଲା । ଗାଁକୁ ଗଲେ, ମାକୁ ଛାଇଯିବ ଚଇଁଆ ସ୍ୱାଇଁର ଦୁଷ୍କର୍ମର ଛାଇ । ସହରରେ ଥିଲାବେଳେ ସିନା ତା ମା ଭୁଲିଯାଇଥିଲା ସେ ସବୁ । ପୁଣି ଗାଆଁକୁ ଗଲେ ମନଟା ବଦଳି ଯିବ । ସାଇ, ଭାଇ, ବନ୍ଧୁବାନ୍ଧବ ସମସ୍ତେ ପ୍ରତିବାଦର ସ୍ୱର ଉତ୍ତୋଳନ କରିବେ । ବଡ଼ମା, ବଡ଼ବାପା, ଦାଦା, ଖୁଡ଼ୀ ଚଇଁଆ ସ୍ୱାଇଁ ଝିଅକୁ ଆମ ଘରର ଏରୁଣ୍ଡିବନ୍ଧକୁ ଡେଇଁବାକୁ ଆଉ ଈଶାଣ କୋଣକୁ ଛୁଇଁବାକୁ କେବେ ଅନୁମତି ଦେବେନି । ବର୍ଷ ବର୍ଷ ଧରି ଛାତି ତଳେ ଜମାଟ ବାନ୍ଧିଥିବା କ୍ରୋଧ, ବିଦ୍ୱେଷ ସବୁ ବିସ୍ଫୋରଣ ହୋଇ ପରିବେଶକୁ ଛିନ୍‌ଭିନ୍ କରିଦେବ ।

ସେଦିନ କୁମାର ପୁନେଇଁ । ତିନି ଦିନ ଧରି ହେଉଥିବା ଲକ୍ଷ୍ମୀଯାତ୍ରାର ପ୍ରଥମ ଦିବସ । ଅନେକ ଆଶା, ଆଶଙ୍କାକୁ ନେଇ ରଶ୍ମିକୁ ଧରି ଟାକ୍ସିରେ ମାନସ ଗାଁ ଅଭିମୁଖେ ଯାତ୍ରା ଆରମ୍ଭ କଲା । ଗାଁର ଏକ ମାଇଲ୍ ପୂର୍ବରୁ ପଡ଼େ ଗାଁର ମହାଦେବ ମନ୍ଦିର । ସେଠାରେ ଦୁହେଁ ଓହ୍ଲାଇ ପ୍ରଭୁଙ୍କ ଚରଣାବିନ୍ଦରେ ନମସ୍କାର କରି ଆଶୀର୍ବାଦ ଭିକ୍ଷା କଲେ ।

ଗାଆଁରେ ହାଲା ହୋଇଗଲା ଚଇଁଆ ସ୍ୱାଇଁର ଝିଅ ସାମନ୍ତରାୟ ଘରକୁ ଆସୁଛି ।

– ଗାଡ଼ି ଆଗେଇ ଯାଉଥିଲା ସାମନ୍ତରାୟ ପରିବାରର ବଡ଼ ଖଞ୍ଜା ଆଡ଼କୁ । ଖଞ୍ଜାର ସଦର ଦରଜା ପାଖରେ ଶହେ ବର୍ଷର ବରଗଛ ପାଖର ଦୃଶ୍ୟ ଦେଖି ମାନସ ସ୍ତମ୍ଭୀଭୂତ ହେଲା । ବରଗଛ ଚାନ୍ଦିନୀରେ ବସିଛନ୍ତି ଦାଦା, ବଡବାପା, ବଡ଼ଭାଇମାନେ । ବରଗଛ ତଳେ ରୁଣ୍ଡ ହୋଇଛନ୍ତି ଖଞ୍ଜାର ସବୁ ଝିଅ, ବୋହୂ, ବଡ଼ମା, ଖୁଡୀ, ବଡ଼ଭଉଣୀମାନେ ।

ମାନସ ଅନୁମାନ କରିନେଲା ଚଇଁଆ ସ୍ୱାଇଁ ଝିଅକୁ ଖଞ୍ଜାରେ ପୂରାଇ ନ ଦେବା ଲାଗି ଏକ ସ୍ୱତସ୍ଫୁର୍ତ୍ତ ବିପ୍ଳବର ଅୟମାରମ୍ଭ । ପ୍ରତିଶୋଧ ଓ ବିଦ୍ୱେଷର ନିଆଁ ହୁ ହୁ ହୋଇ ଜଳୁଥିବାର ସେ ସ୍ପଷ୍ଟ ଦେଖି ପାରୁଥିଲା ।

କିଛି ଅପ୍ରୀତିକର ପରସ୍ଥିତିକୁ ଏଡାଇବା ପାଇଁ ମାନସ ଫେରି ଯିବାକୁ ସ୍ଥିର

କଲା । ଡ୍ରାଇଭରକୁ ଗାଡ଼ି ବ୍ୟାକ୍ କରିବା ପାଇଁ ନିର୍ଦ୍ଦେଶ ଦେଲା ।

ଏତିକି ବେଳେ ଶୁଭିଲା ହୁଳହୁଳିର ଝଙ୍କାର । ଗଗନ, ପବନ ପ୍ରକମ୍ପିତ ହେଲା । ବଡ଼ମା, ଖୁଡୀ, ଭାଉଜ, ଭଉଣୀ ରାସ୍ତା ମଝିକୁ ଗାଡ଼ି ଆଡ଼କୁ ମାଡ଼ି ଆସୁଥିଲେ । ସମସ୍ତଙ୍କ ମୁହଁରେ ଖେଳୁଥିଲା ମଲ୍ଲୀଫୁଲିଆ ହସ । ସମସ୍ତଙ୍କ ହାତରେ ନବବଧୂକୁ ସ୍ୱାଗତ କରିବା ପାଇଁ ବନ୍ଦାପନାର ଦୀପ । ଉଦ୍‌ଭାସିତ ହେଉଥିଲା ବରଗଛର ଚାନ୍ଦିନୀ । ସମସ୍ତଙ୍କ ହାତରୁ ଝରି ପଡୁଥିଲା ଫୁଲ ଆଉ ଅରୁଆ ଚାଉଳ । ଫୁଲରେ ଛାଇ ହୋଇଯାଇଥିଲା ପରିବେଶ ।

ହୁଳହୁଳି, ଦୀପର ଆଲୋକ ଓ ଫୁଲର ରୋଷଣି ଭିତରେ ରଶ୍ମି ବନ୍ଧ ଡେଇଁ ସାମନ୍ତରାୟ ଘରକୁ ଥିରିଥିରି ପାଦରେ ପ୍ରବେଶ କରୁଥିଲା । ମୁଣ୍ଡରେ ହାତେ ଓଢ଼ଣା । ଯେତେବେଳେ ନବ ବଧୂଟିଏ ବାହା ହୋଇ ଘରକୁ ପ୍ରବେଶ କରେ, ପରିବାର ଓ ବନ୍ଧୁବାନ୍ଧବଙ୍କ ମନରେ ଆଶା ଆଉ ଆଶଙ୍କା ପ୍ରତିଯୋଗିତା କରି ଢ଼େଉ ଭାଙ୍ଗୁଥାଏ । ରୂପ ତାର ଅଦେଖା । ଗୁଣ ତା ଅଜଣା । କିନ୍ତୁ ଆଜି ଏ ବଧୂ ନବବଧୂ ନୁହେଁ । ତା ରୂପରେ ସମସ୍ତେ ମୁଗ୍ଧ, ତା ଗୁଣରେ ସମସ୍ତେ ସମ୍ମୋହିତ । କଷଟି ପଥରରେ ତିଳତିଳ ହୋଇ ସେ ଘଷା ହୋଇ ସାରିଛି । ଚାରି ବର୍ଷ ପ୍ରତୀକ୍ଷା ପରେ ବୋହୂର ଏ ସ୍ୱାଗତ ପର୍ବ ଥିଲା ନିଆରା ।

ଲକ୍ଷ୍ମୀଙ୍କ ଘରେ ବାଜି ଉଠିଲା ଘଣ୍ଟ, ଘଣ୍ଟା, ଶଙ୍ଖ ଓ କାହାଳୀ । ବ୍ରାହ୍ମଣଙ୍କ କଣ୍ଠରୁ ଭାସିଆସୁଥିଲା ମା' ମହାଲକ୍ଷ୍ମୀଙ୍କର ସ୍ୱାଗତ ବନ୍ଦନା ।

ମାନସ ମନେ ମନେ ଭାବୁଥିଲା ଜନ୍ମ ନୁହେଁ, କର୍ମ ହିଁ ମଣିଷକୁ ଆଦରଣୀୟ କରେ, ସ୍ନେହ,ଶ୍ରଦ୍ଧା, ଆଶିଷ ଆଣି ଦିଏ ।



*('ସମାଜ' ର ସତ୍ୟବାଦୀ ପତ୍ରିକାରେ ପ୍ରକାଶିତ)*

# ବ୍ଲାକ ବିଉଟି

ରାତିରେ ପ୍ରକାଶ ନିଘୋଡ଼ ନିଦରେ ଶୋଇଥିବାବେଳେ ଧଡ଼୍‌କିନା ଶବ୍ଦରେ ତାର ନିଦ ଭାଙ୍ଗିଗଲା । ଘରେ ଜିରୋ ପାୱାର ବଲ୍‌ବ, ସ୍ୱଚ୍ଛ ଆଲୋକ । ଦେଖିଲା ଆଲମିରା ଉପରେ ବସିଛି ଏକ କଳା ବିରାଡ଼ି । କିଟି କିଟି କଳା । ଅନ୍ଧାର ସାଙ୍ଗରେ ମିଶି ଯାଉଛି । ଆଖି ଦୁଇଟି ରଡ଼ ନିଆଁ ପରି ଦାଉ ଦାଉ ହୋଇ ଜଳୁଛି ।

ବିଲେଇ ଥିଲା ପର୍ଯ୍ୟନ୍ତ ନିଦ ଆସିବନି । ଲାଇଟି ମାରି ପ୍ରାୟ ଅଧଘଣ୍ଟାଏ କସରତ କରି ତାକୁ ବାହାରକୁ ତଡ଼ି ଦେଇ ଶାନ୍ତିରେ ଶୋଇଲା ।

ତାପର ଦିନ ଶୋଇଲା ପରେ କଞ୍ଚା ନିଦ ଆସିଲା ବେଳକୁ ପୁଣି ଖଡ଼୍‌କିନା ଶବ୍ଦ । ଆଖିଖୋଲି ଦେଖିଲା ବେଳକୁ, ଅନ୍ଧାର ଭିତରେ ଜଳୁଛି ଦୁଇଟି ଆଖି । ଉତୁରି ପଡୁଛି ଲାଲ ଡ଼ହ ଡ଼ହ ନିଆଁର ଝଲକ । ତାର ମନେ ହେଲା ବିଲେଇଟା ଯେମିତି ତା ଉପରକୁ ଡ଼େଇଁବାକୁ ଅନେଇ ବସଛି । ସତେ ଯେମିତି ଝୁଣି ପକାଇବ ତାକୁ । ତା ଆଖିରେ ପ୍ରତିଶୋଧର ନିଆଁ ହୁ ହୁ ହୋଇ ଜଳୁଛି । ସେ ତାକୁ କୈଫିୟତ ମାଗୁଛି । ପ୍ରକାଶ ଭୟରେ ଶିହରି ଉଠୁଥିଲା । ତାର ମନେପଡୁ ଥିଲା ପ୍ରୀତି ସାମନ୍ତରାୟ ସହିତ ତାର ସଂପର୍କର ଇତିବୃତ୍ତ । ପ୍ରକାଶ ମନରେ ପ୍ରଶମିତ ହୋଇ ଆସୁଥିବା ଅପରାଧବୋଧର ଶିଖା ପୁଣି ହୁତୁ ହୁତୁ ହୋଇ ଜଳି ଉଠିଲା ।

ପ୍ରୀତି ସାମନ୍ତରାୟ । ମୁଗୁନି ପଥର ଭଳି ଚିକ୍କଣ କଳା ତାର ରଙ୍ଗ; ଡଉଲ ଡାଉଲ । ସୁନ୍ଦର ଗଢ଼ଣ, ଆଖିରେ କଳା ଚଷମା, କାନରେ କଳା ରଙ୍ଗର ଇୟରିଂ, ମଥାରେ କଳା ରଙ୍ଗର ବିନ୍ଦି । ଦେହରେ କଳା ରଙ୍ଗର ଶାଢ଼ି, ଆଉ କଳାରଙ୍ଗର ବ୍ଲାଉଜ । କଲେଜରେ ସମସ୍ତେ କୁହନ୍ତି ବ୍ଲାକ୍ ବିଉଟି । ଅଦ୍ଭୁତ ଖିଆଲ ତାର । କଳା ରଙ୍ଗ ପ୍ରତି ଅହେତୁକ ଆକର୍ଷଣ ।

ଆଖି ଦୁଇଟି କଥା କୁହା, ଚମତ୍କାର ଆଉ ଆକର୍ଷଣୀୟ । ତା ଉପରକୁ ଦୁଇଟି କମକରା କଳା ମଚ ମଚ କମନୀୟ ଭ୍ରୂଲତା । ନିଦୁଆ ନିଦୁଆ ନୟନ ଯୁଗଳରେ ଭର୍ତ୍ତିହୋଇଛି ଅୟୁତ ଯୁଗର ସ୍ୱପ୍ନ । ଆଖି ଦୁଇଟି ନୀଳ ସମୁଦ୍ର ପରି ସୁବିଶାଳ, ବନ ହରିଣୀ ପରି ଚଳ ଚଂଚଳ । ତାର ଓଠରେ ଡ଼ାଳିମ୍ବ ଫୁଲର ରକ୍ତିମ ଆଭା । ହସିଦେଲେ ଝଡ଼ି ପଡ଼େ ସୁରଭିତ ମଲ୍ଲୀ ଫୁଲର ଧୋବ ଫର ଫର କଢ଼ି । ସେହି କାଳି ଝିଅଟି ତା ଜୀବନରେ ଝରି

ଆସିଥିଲା ନୀଳ ପର୍ବତରୁ ଝରଣାଟିଏ ହୋଇ । ହାସ୍ୟମୟୀ, ଲାସ୍ୟମୟୀ, ଅଧରରୁ ସବୁବେଳେ ଝରି ପଡ଼େ ଜ୍ୟୋତ୍ସ୍ନାର ଅବାରିତ ଧାରା । ତା ସ୍ୱରର ମାଦକତା, ହସର ସ୍ୱଚ୍ଛଳତା ଓ ନୟନ ଯୁଗଳର ଅଦମନୀୟ ଆକର୍ଷଣରେ ପ୍ରକାଶ ସମ୍ମୋହିତ ହୋଇଥିଲା । ରେଭେନ୍ସା କଲେଜରେ ଅର୍ଥନୀତିରେ ପିଜି କରୁଥିବା ସମୟରେ ସହପାଠିନୀ ପ୍ରୀତି ସହିତ ସଂପର୍କର ସୂତ୍ରପାତ ହୁଏ । ଏମ.ଏ. ଶେଷବର୍ଷ ପରୀକ୍ଷା ଦେବାବେଳକୁ ସଂପର୍କର ନିବିଡ଼ତା ଏତେ ସାନ୍ଦ୍ର ହୋଇ ଯାଇଥିଲା ଯେ ସେମାନେ ପରସ୍ପରର ଜୀବନସାଥୀ ହେବାକୁ ସଂକଳ୍ପ କରିଥିଲେ ।

ରେଭେନ୍‌ସା କଲେଜରୁ ଏମ୍.ଏ. ପାସ କଲାପରେ ପ୍ରୀତି ତାର ଗାଁ ବିଂଝାରପୁର ନିକଟସ୍ଥ ସୟଦପୁର ଚାଲିଗଲା । ପ୍ରକାଶ ଭୁବନେଶ୍ୱରର ଗୌରୀନଗରରେ ଗୋଟିଏ ଛୋଟ ଘର ଭଡାନେଇ ରହିଲା ଓ ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷା ପାଇଁ ପ୍ରସ୍ତୁତିରେ ଲାଗିପଡିଲା । ବାପା ପ୍ରତିମାସରେ ତା ପାଖକୁ ଟଙ୍କା ପଠାଉଥାନ୍ତି ।

ପ୍ରକାଶ ଓ.ଏଫ.ଏସ୍. ପରୀକ୍ଷାରେ ସଫଳତାର ସହିତ ଉତ୍ତୀର୍ଣ୍ଣ ହେବାପରେ ପ୍ରଥମେ ପ୍ରୀତିକୁ ହିଁ ଏ ସୁସମ୍ବାଦ ଦେଇଥିଲା । ପ୍ରୀତି ଆନନ୍ଦରେ ଅଧୀର ହୋଇ ତାର ଭୁବନେଶ୍ୱର ଘରେ ପହଞ୍ଚିଗଲା । ଆଠ ଫୁଟରେ ଆଠଫୁଟ ଘର, ବହିପତ୍ର ସବୁ ବିପର୍ଯ୍ୟସ୍ତ ହୋଇ ପଡିଛି । ପ୍ରୀତି ହସି ହସି ଘରଟାର ସବୁ ଜିନିଷ ଯତ୍ନର ସହିତ ସଜାଡି ଦେଲା । ସେ ଜାଣିଛି ପ୍ରକାଶଟା ଅଗଡ଼ଧାତୁଆ । ପାଠ ସିନା ଭଲ ପଢ଼େ ହେଲେ ଜିନିଷ ପତ୍ରକୁ ଏପରି ଛିନ୍ ଛତ୍ର କରି ପକାଏ, ଯେମିତି ଛୋଟ ପିଲାଟିଏ । ସାଙ୍ଗ ହୋଇ ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନକରି କୃତଜ୍ଞତା ଜଣାଇ ପ୍ରଣିପାତ କଲେ ।

ଆମ ବାହାଘର କେବେ ? – ପ୍ରୀତିର ଉଦ୍‌ବିଗ୍ନ କଣ୍ଠର ପ୍ରଶ୍ନ ।

–ମୁଁ ଟ୍ରେନିଂପରେ ଚାକିରିରେ ଜଏନ କରିସାରିବା ପରେ ବାପା, ବୋଉଙ୍କୁ କହି ସବୁ ଠିକ୍ ଠାକ୍ କରିନେବି । ବ୍ୟସ୍ତ ହୁଅନା ।

ପ୍ରୀତି ମୁହଁରେ ଚେନାଏ ହସ ଖେଳିଯାଏ । ଘନଅଂଧାର ଭିତରେ ଏକ ଦେଦୀପ୍ୟମାନ ଦୀପଶିଖା । ଭୁବନେଶ୍ୱରରେ ଛଅ ମାସ ଟ୍ରେନଂ ସରିଗଲା ପରେ ପରେ ଏକ ସପ୍ତାହ ଛୁଟି । ସପ୍ତାହକ ମଧ୍ୟରେ ପୋଷ୍ଟିଂ ଅର୍ଡର ଆସିଯିବା ପରେ ନୂଆ କାର୍ଯ୍ୟକ୍ଷେତ୍ରରେ ଯୋଗ ଦେବ । ପ୍ରକାଶ ଆଶା, ଆଶଙ୍କାରେ ଜଡସଡ଼ । ପୋଷ୍ଟିଂ ଯେଉଁଠି ହେଉପଛେ ନକ୍‌ସଲ ପ୍ରବଣ ଅଂଚଳରେ ନହେଉ । ଜୀବନ ଯେଉଁଠି ଅନିଶ୍ଚିତ, ସେଠି ଚାକିରି, ଅର୍ଥ, ପ୍ରତିଷ୍ଠା ସବୁ ମୂଲ୍ୟହୀନ ।

ଆନନ୍ଦରେ ଏକ ସପ୍ତାହ ଛୁଟି କଟାଇବା ପାଇଁ ସକାଳୁ ସକାଳୁ ଗାଁ କୁ ବାହାରିଲା । ଗାଁ ତାର ଷଡ଼ଙ୍ଗୀ, ଢ଼େଙ୍କାନାଳ ଟାଉନଠାରୁ ପ୍ରାୟ ଚାଳିଶ କିଲୋମିଟର ଦୂର । ଗାଁରେ ପହଞ୍ଚି ଦେଖିଲା ଘର ଆଗରେ କାରଟିଏ ଠିଆ ହୋଇଛି । ଘରେ ପଶିଲାବେଳକୁ ଦେଖିଲା ଘର ପିଣ୍ଡାରେ ଦାଦା, ବଡବାପା ବଡମା, ଖୁଡି ଓ ବଡ ଭାଉଜମାନେ ଏକଡ଼ ସେକଡ଼ ହେଉଛନ୍ତି । ସମସ୍ତଙ୍କ ଦେହ ଓ ମନରେ ଚଞ୍ଚଳତା । ଘର ଭିତରକୁ ଅନାଇଲା ବେଳକୁ ଦେଖିଲା ଘରେ ବସିଛନ୍ତି ଦୁଇ ଜଣ ଭଦ୍ରଲୋକ ଓ ଦୁଇ ଜଣ ଭଦ୍ରମହିଳା । ସେମାନଙ୍କ ଚେହେରା ଚାଲିଚଳନ ଓ ବେଶଭୁଷାରେ ସଂଭ୍ରାନ୍ତ ବଂଶର ଛାପ ଜଳ ଜଳ ହୋଇ ଦେଖାଯାଉଛି । ଏତିକିବେଳେ ପ୍ରକାଶର ବୋଉ ରୋଷେଇ ଘରୁ ଆସି ତା' କାନ ପାଖରେ ଫୁସ ଫୁସ୍ କରି କହିଲେ– ଏମାନେ ଆସିଛନ୍ତି ଢ଼େଙ୍କାନାଳରୁ । ତୋ ସାଙ୍ଗରେ ତାଙ୍କ ଝିଅର ବାହାଘର ପ୍ରସ୍ତାବ ପଡ଼ିଛି । ତୋ ମାଉସୀ ପୁଅ ସୁଦାମଭାଇ, ଏ ପ୍ରସ୍ତାବ ଆଣିଛନ୍ତି । ପ୍ରକାଶ ବୋଉ ମୁହଁକୁ ବଲ ବଲ କରି ଅନାଇଥିଲା । ବାହାରକୁ ସେ ଅବିଚଳିତ ଖୋଯାଉଥିଲେ ବି ତା' ମନରେ ଅବିଶ୍ରାନ୍ତ ଭାବରେ ଚାଲିଥିଲା ଘୂର୍ଣ୍ଣିଝଡର ତାଣ୍ଡବ ।

ବୋଉ ହସି ହସି କହିଲେ – ମୁହଁହାତ ଧୋଇଧାଇ ହୋଇ ଘର ଭିତରକୁ ଯାଆ । ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା କର । ଯାହା ହେଉ, ତୁ ଠିକ୍ ସମୟରେ ଆସିଲୁ । ସେମାନେ ଅପେକ୍ଷା କରି କରି ଫେରି ଯିବାକୁ ବାହାରିଥିଲେ ।

ବାପା ସେ ସମୟର ମାଟ୍ରିକୁଲେଟ୍ । ପରିବାରର ଦାୟିତ୍ୱ ସମ୍ଭାଳିବା ପାଇଁ ଚାକିରି ନ କରି ଗାଁରେ ଚାଷ ବାସ ବୁଝା ବୁଝି କରୁଥିଲେ । ଦଶ ଏକର ଅଉଲ ଜମି । ଚଳିଯାନ୍ତି ଭଲରେ । କେବଳ ପ୍ରକାଶର ପାଠ ପଢ଼ା ଓ ଝିଅ ମାଳିନୀର ବାହାଘର ଏ ଥିଲା ତାଙ୍କର ଚିନ୍ତା । ପ୍ରକାଶର ଯେତେବେଳେ ଯାହା ଦରକାର ଟଙ୍କା ପଠାନ୍ତି ଧାନ ବିକି । ବାତ୍ୟା ମରୁଡ଼ିରେ ଫସଲ ହାନି ହେଲେବି ନିଜେ କଣ୍ଟି-କାଣ୍ଟି ଚଳି ଟଙ୍କା ପଠାନ୍ତି । ବାପା ମାଆ ସଂସାରର ସବୁ ସ୍ନେହ ମମତା ଅଜାଡ଼ି ଦେଉଥାନ୍ତି ତା ଉପରେ । ତା ଆଖି ଆଗରେ ତ୍ୟାଗର ପ୍ରତିମୂର୍ତ୍ତି ତା ବାପା ମା ସବୁବେଳେ ଝଲସି ଉଠନ୍ତି ।

ପ୍ରକାଶ ବୋଉ କଥା ମାନି ଚୁପଚାପ୍ ଘର ମଧ୍ୟରେ ପ୍ରବେଶ କରି ସେମାନଙ୍କର ସାମ୍‌ନାରେ ବସିଲା ଓ ନମସ୍କାର କଲା । ଦୁଇ ଭଦ୍ରବ୍ୟକ୍ତି ଓ ଦୁଇ ଭଦ୍ରମହିଳାଙ୍କ ଆଖି ପହଁରି ଯାଉଥିଲା ତା ଉପରେ । ତାର ମନେ ହେଉଥିଲା ଏ ସାକ୍ଷାତକାର ବଡ ବଡ ପ୍ରତିଯୋଗିତାମୂଳକ ପରୀକ୍ଷାର ସାକ୍ଷାତକାର ଠାରୁ ଆହୁରି ଆହ୍ୱାନମୂଳକ, ଆହୁରି ଉଦ୍ଦୀପକ ।

-ମୁଁ, ନିଶିକାନ୍ତ ଚୌଧୁରୀ, ଢେଙ୍କାନାଳରେ ସବ୍‌କଲେକ୍ଟର ଅଛି । ଏ ହେଉଛନ୍ତି

ମୋର ମିସେସ୍ । ଏମାନେ ହେଉଛନ୍ତି ମୋର ବଡଭାଇ ଓ ବଡଭାଉଜ । ଆପଣଙ୍କର ଓ.ଏଫ.ଏସ୍ ଟ୍ରେନିଂ କେମିତି ଚାଲିଛି ?

-ଟ୍ରେନିଂ ଦୁଇଦିନ ତଳେ ସରିଗଲା । ଏକ ସପ୍ତାହ ମଧ୍ୟରେ ପୋଷ୍ଟିଂ ଅର୍ଡର ଆସିବ ।

- ହଁ, ସେକ୍ରେଟେରିଏଟ୍‌ରେ ମୋର ସାଂଗ ରଂଜନ ଫାଇନାନ୍ସ ଡିପାର୍ଟମେଣ୍ଟରେ ଡେପୁଟି ସେକ୍ରେଟେରୀ ଅଛି । ମୁଁ ଟିକେ ତା' ସହିତ କଥା ହେଉଛି ।

ଶ୍ରୀ ଚୌଧୁରୀ ମୋବାଇଲ୍ ଫୋନ୍‌ରେ ରଂଜନବାବୁଙ୍କୁ କଥା ପ୍ରସଂଗରେ ପଚାରିଲେ- ନୂଆହୋଇ ଯେଉଁ ଓ.ଏଫ.ଏସ୍. ଅଫିସର୍‌ମାନେ ଟ୍ରେନିଂ ସାରିଲେଣି, ସେମାନଙ୍କ ପୋଷ୍ଟିଂ ବିଷୟ କ'ଣ ଫାଇନାଲ ହେଲାଣି ?

- ପ୍ରାୟ ସବୁ ସରିଯାଇଛି । ସେକ୍ରେଟେରୀ ଦସ୍ତଖତ କଲେ ଅର୍ଡର ଡେସ୍‌ପାଚ୍ କରିଦେବୁ ।

- ହଁ, ଭାଇ, ମୋର ଜଣେ କ୍ଲୋଜ୍ ରିଲେଟିଭ ପ୍ରକାଶ ରାଉତରାୟ । ତାଙ୍କର କେଉଁଠି ପୋଷ୍ଟିଂ ହେଉଛି ?

-ହଁ ଟିକେ ଦେଖିକି କହୁଛି । ହଁ, ମିଳିଗଲା, ତାଙ୍କର ମାଲ୍‌କାନାଗିରିରେ ପୋଷ୍ଟିଂ ।

ପ୍ରକାଶ ଭୟ ଓ ଆଶଙ୍କାରେ ଭାଙ୍ଗିପଡୁଥିଲେ ବି ଅବିଚଳିତ ଓ ନିର୍ଲିପ୍ତ ଦେଖାଯିବା ପାଇଁ ଉଦ୍ୟମ ଜାରି ରଖିଥିଲା । କବାଟ ପାଖରେ ବାପା, ବୋଉଙ୍କର ମୁହଁରେ ଆଶଙ୍କାର ଝଡ଼ ପରିଷ୍କାର ବାରି ହୋଇପଡୁଥିଲା ।

-କୋଷ୍ଟାଲ ବେଲ୍‌ଟରେ ହେଲେ ଭଲ ହୁଅନ୍ତା । ତାକୁ ଟିକେ ଚେଞ୍ଜ୍ କର । କଟକ, ଭୁବନେଶ୍ୱର ଶହେ କିଲୋମିଟର ଭିତରେ କରିବାକୁ ଚେଷ୍ଟାକର ।

- ହଉ, ତୁ ଜମା ବ୍ୟସ୍ତ ହୋନା । ମୁଁ ନିଶ୍ଚୟ କିଛି ଗୋଟାଏ ବ୍ୟବସ୍ଥା କରିବି ।

ତାପରେ ଘରେ ଓ ବାହାରେ ଆଶ୍ୱସ୍ତିର ବାତାବରଣ । ନିଶିକାନ୍ତ ବାବୁ କହିଲେ – ମୋର ଝିଅ ପ୍ରିୟା ଚୌଧୁରୀ ଆଣପଙ୍କ ତଳ ବ୍ୟାଚ୍‌ରେ ରେଭେନ୍ସାରେ ଇକୋନୋମିକ୍‌ସରେ ପିଜି କରୁଥିଲା । ସେ ଆପଣଙ୍କୁ ଜାଣିଛି । ଆପଣ ସେମିନାରରେ ଇଂରାଜୀରେ ଓ ଓଡିଆରେ ଚମତ୍କାର ଭାଷଣ ଦିଅନ୍ତି ବୋଲି କହୁଥିଲା ।

-ହଁ, ତାଙ୍କୁ ମୁଁ ଜାଣେ । ସେ ମଧ୍ୟ ସେମିନାର୍‌ରେ ଆକ୍ଟିଭ୍‌ଲି ପାଟିସିପେଟ୍ କରୁଥିଲେ ।

ହଁ, ଆପଣତ ଏବେ ଛୁଟିରେ ଅଛନ୍ତି, କାଲି ଆଡକୁ ଆମ ଘର ଆଡେ ଆସୁ

ନାହାଁନ୍ତି ?

ପ୍ରକାଶର ମନ ହେଉଥିଲା କହିଦେବ-ସରି, ଆଇ ଆମ୍ ଏନ୍‌ଗେଜ୍‌ଡ୍ । ବାହାରିବାକୁ ବିକଳ ହେଉଥିବା ଏ ସବୁ ଶବ୍ଦ ସୌଜନ୍ୟଦୃଷ୍ଟିରୁ କଣ୍ଠ ପାଖରେ ଅଟକିଗଲେ ।

-ବାପା, ବୋଉ ସଙ୍ଗରେ କଥା ହୋଇ ଯାହା ସ୍ଥିର କରିବି । ହସି ହସି କହିଦେଲା ପ୍ରକାଶ ।

ସେମାନେ କାର୍‌ରେ ଢେଙ୍କାନାଳ ଅଭିମୁଖେ ଯାତ୍ରା କଲେ ।

ପ୍ରକାଶ ମନ ଭିତରର ଝଡ ହୋଇଯାଇଥିଲା ଆହୁରି ପ୍ରଚଣ୍ଡ, ଆହୁରି ଉଦ୍‌ବେଳନମୟ । ମେଘୁଆ ଆକାଶ ପରି ଗମ୍ଭୀର ଦିଶୁଥାଏ ତାର ଚକଲେଟ ରଙ୍ଗର ମୁହଁ । ମନଟା ଘାଂଟି ଚକଟି ହେଉଥାଏ ଅବ୍ୟକ୍ତ ଯନ୍ତ୍ରଣାରେ । ଖାଇସାରି ଶୋଇଲାବେଳକୁ ତା ପାଖରେ ପହଂଚିଲେ ତାର ସ୍ନେହମୟୀ ବୋଉ, ସୁମତିଦେବୀ ।

-ଆରେ ବାବୁ, ତୋ ମୁହଁଟା କାହିଁକି ଶୁଖିଲା ଦିଶୁଛି ? କ'ଣ ହୋଇଛି କହୁନୁ ?

-ବୋଉଲୋ, ଏହା ଭିତରେ ପ୍ରୀତିବୋଲି ଏକ ଝିଅ ସହିତ ମୋର ସଂପର୍କ ବହୁତ ନିବିଡ଼ ହୋଇଯାଇଛି ।

- କିଏ ସେ ପ୍ରୀତି ?

-ମୋ ସଂଗରେ ପଢୁଥିଲା । ଭଲ ଝିଅଟେ । ତାଙ୍କ ଘର ବିଞ୍ଝାରପୁର ପାଖରେ ଥିବା ସୟଦପୁର ଗାଆଁରେ । ତା ବାପା ରିଟାଏଡ଼ ସ୍କୁଲ ଶିକ୍ଷକ । ନିମ୍ନ ମଧ୍ୟବିତ୍ତ ପରିବାର । ଆମରି ଜାତି ।

-ଦେଖିବାକୁ କିପରି ?

-ତାର ଆଖି, ହସ ଓ ଗଢଣ ଚମତ୍କାର ! ଅତି ସୁନ୍ଦର ବ୍ୟବହାର । କୃତୀ ଛାତ୍ରୀ ।

-ଆଉ ରଂଗ ?

-କଳା !

ଚମକି ପଡିଲେ ସୁମତି ଦେବୀ । ସ୍ୱରରେ ଉଦ୍‌ବିଗ୍ନତାର ପ୍ରତିଧ୍ୱନି ? ପଚାରିଲେ-କ'ଣ ଆମଗାଁ କୁନି ଗଉଡୁଣୀ ରଂଗ ?

- ହଁ, କିନ୍ତୁ ମୁଗୁନି ପଥର ପରି ଚିକ୍କଣ କଳା ।

ସୁମତି ଦେବୀଙ୍କ ଆଖି ଛଳ ଛଳ ହୋଇ ଉଠିଲା । ନିଜ ଦୁଃଖ ଆଉ କୋହକୁ ଚାପିରଖି କହିଲେ-ଆରେ ବାବୁ, ରାଜକୁମାର ଭଳି ତୋର ରୂପ । ଏତେ ଭଲ ପଢୁଥିଲୁ ! ସର୍ବଗୁଣସଂପନ୍ନ । ଶେଷକୁ ହାଣ୍ଡିକଳା ରଂଗର ଝିଅକୁ କେମିତି ପସନ୍ଦ କଲୁ ?

ପ୍ରକାଶ ଭାବୁଥିଲା ସେ କେମିତି ବୋଉକୁ ବୁଝାଇବ ଯେ ପ୍ରେମ କି ଭଳି ଅନ୍ଧ । ସେ ଜାତି, ଧର୍ମ, ରଂଗ କିଛି ଦେଖେନା । କେତେବେଳେ କେଉଁ ମୁହୂର୍ତ୍ତରେ ପାହାଡି ଝରଣା ପରି କୁଳୁକୁଳୁ ନାଦ କରି ଦେହ ଓ ମନର ସବୁଜ ପ୍ରାନ୍ତରରେ ବହିଆସେ ମଣିଷ ଜାଣି ପାରେନା । ଅଜଣା ପୁଲକରେ ଭରି ଉଠେ ତାର ଦେହ,ମନ, ପ୍ରାଣ । ପ୍ରେମ ଧୀରେ ଧୀରେ ଗ୍ରାସିଯାଏ ସମଗ୍ର ଚେତନାକୁ । ସେଇ କଳା ରଂଗର ତନୁ ଯେମିତି ଚିକ୍କଣ କଳା ମୁଗୁନି ପଥରରେ ତିଆରି କୋଟି କମକରା କମନୀୟ କୋଣାର୍କର ପ୍ରତିମୂର୍ତ୍ତି ଯାହା ଉପରେ ଝରିପଡେ ସୁଗନ୍ଧିତ ଶେଫାଳି ଆଉ ଯାହାକୁ ଛୁଇଁଯାଏ ଚାନ୍ଦିନୀ ରାତିର ଜ୍ୟୋସ୍ନା ଧାରା । ସେ ଏକ ବୌଦ୍ଧ ଭିକ୍ଷୁପରି ମୌନଭାଷାକୁ ନିରବରେ ପଢୁଥାଏ । ତାର କାକକୃଷ୍ଣ ତନୁର କିଆ, କେତକୀ ଆଉ କଦମ୍ବର ମୁଗ୍ଧ ସୌରଭ ତାକୁ ଗୋଟାପଣେ ବିମୋହିତ କରେ ।

ଉଦ୍‌ବେଗ ଭରାକଣ୍ଠ ଓ ଲୁହ ଛଳ ଛଳ ଆଖିରେ ସୁମତୀ ଦେବୀ କହିଲେ– ବାବୁରେ ! ତୁ ପ୍ରୀତିକୁ ଭୁଲିଯା । କାଲିବୋହୂ ଆମ ଘରକୁ ଆସିଲେ କ'ଣ କହିବେ ସାଇଭାଇ, ବନ୍ଧୁ ବାନ୍ଧବ ? ତା'ଛଡା ଏ ଢ଼େଙ୍କାନାଳର ଚୌଧୁରୀ ଘର ଏ ପ୍ରସ୍ତାବଟା କେତେ ଭଲ । ଝିଅର ବାପା ବଡ଼ ଅଫିସର । ଚାକିରି ଜୀବନରେ ସୁବିଧା ଅସୁବିଧାରେ ବିପଦ ଆପଦରେ ଦରକାର ହେଲେ ସେମାନେ ତୋ ପାଖରେ ଠିଆ ହୋଇ ପଡ଼ିବେ । ଏଇ ଦେଖୁନୁ, ସେ ବାବୁ କହି ନ ଥିଲେ ତୁ ମାଲକାନଗିରି ଚାକିରି କରିବାକୁ ଯାଇଥାନ୍ତୁ । ଆମ ସମସ୍ତଙ୍କର ଜୀବନ ଭୟ ଓ ଆଶଙ୍କାରେ ଦୁର୍ବିସହ ହୋଇ ଯାଇଥାନ୍ତା । ପ୍ରିୟାଟି କେତେ ସୁନ୍ଦର । ଗୋଟିଏ ଚାଉଳରେ ଗଢ଼ା । ସଫା ରଙ୍ଗ, ଶାନ୍ତ ଶିଷ୍ଟ ନମ୍ର ଝିଅଟିଏ । ତୋ ପାଇଁ ଯେମିତି ଭଗବାନ୍ ତାକୁ ଗଢ଼ିଛନ୍ତି । ସେ କାଳି ଝିଅ ପ୍ରୀତି ସହିତ ତୋର ସମ୍ପର୍କ କେହି ଜାଣିବେନି । ପ୍ରିୟାକୁ ବାହାହେବା ପାଇଁ ହଁ କରିଦେ ବାବୁ ! ନ ହେଲେ ଆମ ମୁଣ୍ଡ ତଳକୁ ହୋଇଯିବ । ତୋ ବାପା ଏ ପ୍ରସ୍ତାବରେ ଏପରି ଖୁସି ହୋଇଗଲେ ଯେ ସଂଗେ ସଂଗେ ହଁ କରିଦେଲେ । ଜାତକ ପକାଇଲୁ । ଜ୍ୟୋତିଷ କହିଲେ ରାଜଯୋଟକ । ତା ପରେ କୁଞ୍ଜକାନ୍ତ ମନ୍ଦିରରେ ମହାପ୍ରସାଦ ନିର୍ବନ୍ଧ ହେଲା ।

–ବାହାଘର ଫାଇନାଲ କରିବା ପୂର୍ବରୁ ମୋତେ ଥରେ ପଚାରିଲୁନି ?

–ତୁ'ତ ସବୁବେଳେ କହୁ, ବାପା ବୋଉ ଯେଉଁଠି ବାହାଘର କରିବେ ମୁଁ ରାଜି । ଝିଅ ଦେଖିବାକୁ ଯିବିନାହିଁ । ତଥାପି ମୁଁ ତୋ ବାପାଙ୍କୁ କହିଲି ତତେ ଜଣାଇବାକୁ । ତୋ ବାପାଙ୍କର ତୋ ଉପରେ ଦୃଢ଼ ବିଶ୍ୱାସ । କହିଲେ- ପ୍ରକାଶଟା ଆମର ସୁନା ମୁଣ୍ଡା ।

ସେ ଆମ କଥାରୁ କେବେ ବାହାରି ଯିବନି ।

ପ୍ରକାଶ ସଫେଇ ଦେଲା-ଆଠ ନଅ ମାସ ହେବ ପ୍ରୀତି ସହିତ ସଂପର୍କ ବହୁତ ଆଗେଇ ଗଲା । ତଡେ କହିବି କହିବି ବୋଲି ହେଲାରେ କହି ପାରିଲିନି ।

ସୁମତୀ ଦେବୀ କିଛି ସମୟ ଚିନ୍ତାକରି କହିଲେ-ହଉ, ଯାହା ହେଲାତ ହେଲା । ଏବେ ତୁ ହଁ କରିଦେ । ତୋ ବାପା ହାର୍ଟ ପେସେଣ୍ଟ । ତୁ ମନାକଲେ ସେ ଭାଙ୍ଗି ପଡ଼ିବେ । କ'ଣ ହେବ ତାଙ୍କ ଅବସ୍ଥା ସେକଥା ତୋ ଛଡ଼ା ଆଉ କିଏ ଜାଣିଛି ?

ସୁମତୀ ଦେବୀଙ୍କ ଆଖିରୁ ଝରି ଆସିଲା ଦୁଇ ଟୋପା ଲୁହ ।

ପ୍ରକାଶ ରାତିଯାକ ଶୋଇ ପାରିଲାନି । ଦ୍ୱନ୍ଦ୍ୱ ଓ ଦ୍ୱିଧାର ଯନ୍ତ୍ରଣାରେ ସେ ଅସହାୟ ବୋଧ କରୁଥିଲା । ବୋଉର ଅକାଟ୍ୟ ଯୁକ୍ତିର ପ୍ରଚଣ୍ଡ ଆଘାତରେ ତାର ପ୍ରେମ ଓ ସଂକଳ୍ପର ପାହାଡ଼ ଭୁଶୁଡ଼ି ପଡୁଥିଲା । ସେ ଭାବୁଥିଲା ଜୀବନ ହେଉଛି ବାସ୍ତବ ଗଣିତ । ପ୍ରେମ ହେଉଛି କବିତା, ଛଳ ଛଳ କଳ କଳ ନାଦିନୀ ଝରଣା । ଗଣିତର ସୂତ୍ର କବିତାର ଧାରା ଆଗରେ ଠିଆ କରିଦେଲା ଅଲଙ୍ଘନୀୟ ସେତୁ । ପ୍ରକାଶ ସକାଳୁ ଉଠିଲା ବେଳକୁ କ୍ଳାନ୍ତି ଓ ନିଦର ଦାଉରେ ତା'ଚାହାଣୀ ସଂପୂର୍ଣ୍ଣ ନିସ୍ତେଜ । ଆଗରେ ବୋଉର ଓଦା ଓଦା ପ୍ରଶ୍ନିଳ ଆଖି । ଉଦ୍‌ବେଗ, ଆଶା ଓ ଆକାଂକ୍ଷା ଫେଣ୍ଟା, ଫେଣ୍ଟି ହୋଇ ଲହଡ଼ି ଭାଙ୍ଗୁଛି । ସେ ଆଉ ଅଟକାଇ ନ ପାରି କହିଲା-ବୋଉଲୋ ! ତୁ ଯାହା ଭଲ ଭାବୁଚୁ ସେଇଆ କର ।

ସୁମତୀଦେବୀ ଆନନ୍ଦର ଆତିଶଯ୍ୟରେ କୋଳେଇ ନେଲେ ପ୍ରକାଶକୁ । ପାଟିରୁ ନିଗିଡ଼ି ପଡ଼ିଲା -ମୋ ସୁନା ପୁଅଟା । ଝରି ପଡ଼ିଲା ଦୁଇ ଟୋପା ଆନନ୍ଦାଶ୍ରୁ ।

ପ୍ରକାଶର ପୋଷ୍ଟିଂ ଅର୍ଡ଼ର ଆସିଗଲା ବାଣପୁରରେ ଟ୍ରେଜେରୀ ଅଫିସର୍ ଭାବରେ । ପ୍ରକାଶର ପରିବାର ଓ ପ୍ରକାଶ ଆନନ୍ଦରେ ଆତ୍ମହରା ହେଲେ । ତାପରେ ପ୍ରକାଶର ବାହାଘର ନିଶିକାନ୍ତ ଚୌଧୁରୀଙ୍କର ଏକମାତ୍ର କନ୍ୟା ପ୍ରିୟା ଚୌଧୁରୀ ସହ ମହାସମାରୋହରେ ଅନୁଷ୍ଠିତ ହେଲା । ସୁମତୀଦେବୀ କହିଲେ ମୋର ଗୋଟିଏ ବୋଲି ବୋହୂ । ସାରା ଜୀବନ ବାହାରେ ରହିବ । ବାହାଘର ପରେ ପ୍ରଥମ ବର୍ଷ ଗାଁରେ ରହୁ । ଗାଁରେ ଆମର ଲକ୍ଷ୍ମୀପୂଜା, ରଜ, ଦ୍ୱିତୀୟା ଓଷା । ବୋହୂ ମୋର ସବୁବେଳେ ସହରରେ ରହିଆସିଛି । ଗାଁରେ ରହିଲେ ଶାଶୁଘରର ପରିବାର, ପରମ୍ପରା, ଐତିହ୍ୟ ଓ ବନ୍ଧୁବାନ୍ଧବଙ୍କ ସହ ଭଲ କରି ପରିଚିତ ହେବ ।

ପ୍ରିୟା ମଧ୍ୟ ଶାଶୂଙ୍କ କଥାରେ ରାଜି ହେଲା । ଗାଁ ତାକୁ ମନେହେଲା ଅନନ୍ୟ ପର୍ଯ୍ୟଟନସ୍ଥଳୀ । ଗାଁରେ ଚଳିବାର ସମସ୍ତ ଆଧୁନିକ ସୁବିଧା ସୁଯୋଗ ଉପଲବ୍ଧ । ଅଦେଖା

ପରମ୍ପରା, ଅଜଣା ପର୍ବପର୍ବାଣୀ, ଚାଲି ଚଳଣି, ବିଭିନ୍ନ ଢ଼ଙ୍ଗର ମଣିଷ ଓ ଶାଶୂ ଶ୍ୱଶୁରଙ୍କର ଅସୀମ ସ୍ନେହ ମମତାରେ ସେ ଗାଁ ସହିତ ଏକ ମିଠା ମିଠା ଆକର୍ଷଣରେ ବାନ୍ଧି ହୋଇ ଯାଇଥିଲା । ସବୁଠୁ ବେଶୀ ଭଲ ଲାଗିଥିଲା ସବୁଜିମା ଭରା ନିର୍ମଳ ପରିବେଶ । ସକାଳୁ ଝରକା ଖୋଲିଲେ ଦେଖାଯାଏ ନୀଳ ପର୍ବତ । ତା' ଉପରେ ଲୋହିତବର୍ଣ୍ଣରେ ଝଟକୁଥିବା ସୂର୍ଯ୍ୟ । ଡାମରା କାଉର କା କା ରାବ, ଘରଚଟିଆଙ୍କ କିଚିରି ମିଚିରି ଶବ୍ଦ ଓ କୁକୁଡ଼ାଙ୍କ କ କ ଧ୍ୱନିରେ ନିଦ ଭାଙ୍ଗେ । ପର୍ବତ ପାଖରୁ ଅମାନିଆ ମଳୟ ପବନ ମଝିରେ ମଝିରେ ଘର ଭିତରକୁ ଧସେଇ ପଶି ଆସେ । ଏମିତି ଅନେକ ଅନନ୍ୟ ଅନୁଭୂତି ।

ହସଖୁସି ମିଜାଜର ପ୍ରକାଶ ବାହାରକୁ ହର୍ଷୋତ୍‌ଫୁଲ୍ଲ ଜଣା ପଡୁଥିଲେ ବି ଅପରାଧବୋଧର ଯନ୍ତ୍ରଣା ତା ଛାତିକୁ କୋରି ପକାଉଥିଲା । କ'ଣ କହିବ ସେ ପ୍ରୀତିକୁ ଏକଥା ଭାବି ମ୍ରିୟମାଣ ହେଉଥିଲା । ଶେଷକୁ ପ୍ରୀତିର ନମ୍ବରଟିକୁ ବ୍ଲକ୍ କରିଦେଲା । ଭାବିଲା ଏ ଯନ୍ତ୍ରଣାଦାୟକ ସମ୍ବାଦ ଦେବାକୁ ତା ଜିଭ ଲେଉଟିବ ନାହିଁ । ବରଂ ନିରବରେ ସଂପର୍କ ଛିନ୍ନ କରିଦେବା ମାନବିକତା ଦୃଷ୍ଟିକୋଣରୁ ଶ୍ରେୟସ୍କର ।

ପ୍ରକାଶ ବାଲୁଗାଁରେ ଘରଭଡ଼ା ନେଇ ରହୁଥିଲା । ପ୍ରତି ଶନିବାର ଦିନ ଗାଁକୁ ଆସି ସୋମବାର ଭୋରୁ ବାଣପୁର ଯାଉଥିଲା । ସେ ଦିନ ବାଦାମବାଡ଼ିର ବସ୍‌ଷ୍ଟାଣ୍ଡରେ ସହପାଠୀ ରମେଶ ସହିତ ଦେଖା ହେଲା । ସିଏ ସବୁ ରୋମାଞ୍ଚକର ଖବରର ସୌଦାଗର । କଥା ପ୍ରସଙ୍ଗରେ କହିଦେଲା ରେଭେନ୍‌ସାରେ ପଢୁଥିବା ପ୍ରୀତି ବୋଲି ଝିଅଟି କିଛିମାସ ତଳେ ସୁଇସାଇଡ୍ କରି ଦେଲା । ତା'ପରେ ସେ ଅନେକ ଗରମ ଗରମ ଖବରର ପେଡ଼ି ଖୋଲୁ ଥିଲେ ହେଁ ପ୍ରକାଶ କର୍ଣ୍ଣ କୁହରରେ ଗୁଞ୍ଜରିତ ହେଉ ଥିଲା ସେଇ ଗୋଟିଏ ଦୁର୍ଘଟଣା । ପ୍ରୀତିର ଆତ୍ମହତ୍ୟାର ଲୋମହର୍ଷଣକାରୀ ସମ୍ବାଦ । ପ୍ରକାଶ ଭାବନାର ପୃଥିବୀରୁ ଫେରିଆସି ଅନାଇଲା ବେଳକୁ କଳା ବିଲେଇଟା ସେମିତି ବସିଛି । ତା' ଆଖିର ନିଆଁ ଯେମିତି କାୟା ବିସ୍ତାର କରି ତାରି ଆଡ଼କୁ ମାଡ଼ି ଆସୁଛି । ବିଲେଇ ମୁହଁ ଭିତରେ ସେ ଦେଖୁଛି ପ୍ରୀତି ସାମନ୍ତରାୟର ମୁହଁ । ତାକୁ ଲାଗିଲା ପ୍ରୀତି କଳା ବିଲେଇ ହୋଇ ଆସିଛି ପ୍ରତିଶୋଧ ନେବାପାଇଁ । ଭୟ ଓ ଆଶଙ୍କାରେ ଜଡ଼ସଡ଼ ପ୍ରକାଶ ଯଥା ସମ୍ଭବ ସାହସ ସଂଚୟ କରି ବିଲେଇଟିକୁ ବାହାର କରିଦେଇ ଆଶ୍ୱସ୍ତିରେ ନିଃଶ୍ୱାସ ମାରିଲା । କିନ୍ତୁ ସେ କଳା ବିଲେଇ ପୁଣି ଯେ ନ ଆସିବ ସେ ଗ୍ୟାରେଣ୍ଟି କିଏ ଦେବ ?

ତା ପରଦିନ ଅଫିସର ପିଅନ୍ କାଳିଆକୁ ସିଏ କହିଲା – ତୁ ଯାହା ଟଙ୍କା ନେବୁ ମୁଁ ଦେବି । ତୁ ଜଣେ ଦି'ଜଣ ଲୋକଙ୍କ ସାହାଯ୍ୟନେଇ ସେଇ କଳା ବିଲେଇଟାକୁ

ନେଇ ଖୋର୍ଦ୍ଧାରେ ଛାଡ଼ି ଆସିବୁ । ସେ ଯେମିତି ବାଲୁଗାଁକୁ ଫେରି ନ ପାରେ । ବିଶ୍ୱସ୍ତ ପିଅନ କାଳିଆ ପ୍ରକାଶର ନିର୍ଦ୍ଦେଶକୁ ଅକ୍ଷରେ ଅକ୍ଷରେ କାର୍ଯ୍ୟକାରୀ କଲା ।

ପ୍ରକାଶ ମନରେ ଭରି ଯାଇଥିଲା ଆଶ୍ୱସ୍ତି ଭରା ଆନନ୍ଦ ।

ତିନିଦିନ ପରେ ରାତିରେ ଶୋଇଥିବା ବେଳେ ପୁଣି ଖଡ଼ ଖଡ଼ ଶବ୍ଦ । ଆଖି ଖୋଲିଲା ବେଳକୁ ସେଇ କଳା ବିଲେଇ । ଭୟ ଓ ଆଶଙ୍କା ଭିତରେ ଆଉ ରାତିଯାକ ଶୋଇ ପାରିଲାନି ।

ଅଜାଗା ଘା' ଦେଖି ହୁଏ ନାହିଁ କି ଦେଖେଇ ହୁଏ ନାହିଁ । ତାର ବିଲେଇ ପ୍ରତି ଯେଉଁ ଭୟ ସେ କାହାକୁ କହି ପାରିଲାନି । ଲୋକେ ହସିବେ –ଏତେ ବଡ଼ ଅଫିସର, ଅଥଚ ବିଲେଇକୁ ପ୍ରାଣେ ଭୟ ।

କାଳିଆକୁ ପ୍ରକାଶ ଅତି କର୍କଶ ସ୍ୱରରେ ନିର୍ଦ୍ଦେଶ ଦେଲା –ବିଲେଇକୁ ଯଥାଶୀଘ୍ର ଧରି କାର୍ ଭଡ଼ା କରି କଟକ ସେକଡ଼େ ଜଗତପୁର ପାଖରେ ଛାଡ଼ିଦେବୁ । ଆଗରୁ କେଉଁଠି ଛାଡିଲୁ କେଜାଣି, ସେ ପୁଣି ପଳେଇ ଆସିଲା ।

କଳା ବିଲେଇକୁ ଧରିବାକୁ କାଳିଆ ଯତ୍ପରୋନାସ୍ତି ଉଦ୍ୟମ ଜାରି ରଖିଲା । ହେଲେ କାଳି ବିଲେଇ ଏବେ ସିଆଣିଆ ହୋଇଯାଇଛି । କାଳିଆକୁ ଦେଖୁ ଦେଖୁ କୁଆଡ଼େ ଉଭାନ୍ ହୋଇଯାଉଛି ।

ପରବର୍ତ୍ତୀ ତିନିଦିନ ମଧ୍ୟ ପ୍ରକାଶ ଶୋଇପାରିଲାନି । ଯେତେ ସତର୍କତାର ସହ ଘରର ଅନ୍ଦି କନ୍ଦି ପର୍ଯ୍ୟବେକ୍ଷଣ କରି କବାଟ ବନ୍ଦ କଲେବି ମଝି ରାତିରେ ସେହି ଖଡ଼ ଖଡ଼ ଶବ୍ଦ ଆଉ କାଳି ବିଲେଇ । ପ୍ରକାଶ ପାଇଁ ଜୀବନ ଦୁର୍ବିସହ ମନେହେଲା । କ୍ରମାଗତ ତିନିଚାରିଦିନ ଧରି ରାତି ଅନିଦ୍ରା, ଭୟ ଓ ଆଶଙ୍କା ତାକୁ ନିସ୍ତେଜ କରିଦେଲା । ତାକୁ ଏ ବିପଦରୁ ରକ୍ଷା କରିବା ପାଇଁ ଅତି ଆବେଗରେ ଈଶ୍ୱରଙ୍କୁ ନିବେଦନ କରୁଥାଏ ।

ସକାଳ ଆଠଟା ବେଳେ କାଳିଆ ଦୌଡ଼ି ଦୌଡ଼ି ଆସି କହିଲା –ବାବୁ, ଯାହା ହେଉ ରକ୍ଷା ମିଳିଗଲା । କାର୍‌ରେ ଚାରି ପାଞ୍ଚ ଜଣ ଲୋକ ବ୍ରହ୍ମପୁର ଆଡୁ ଭୁବନେଶ୍ୱର ଆଡ଼କୁ ଯାଉଥିଲେ । କାଳି ବିଲେଇ ପ୍ରତି ତାଙ୍କର କି ଆକର୍ଷଣ । ତାକୁ ଦେଖି ଗାଡ଼ିରୁ ଓହ୍ଲାଇ କଳେ ବଳେ କୌଶଳେ ଧରି ନେଲେ । ସେ ବିଲେଇଟା ବି ଧରା ପଡ଼ିଲା ପରେ ତାଙ୍କ ପାଖେ ଗେହ୍ଲେଇ ହେଉଥାଏ । ସତେ ଯେମିତି ଦଶବର୍ଷର ପରିଚୟ । ଅତୁଟ ସମ୍ବନ୍ଧ । ତାକୁ ନେଇ ସେମାନେ ଯାଜପୁର ଟାଉନ୍ ଯିବେ ବୋଲି କହୁଛନ୍ତି ।

ଆନନ୍ଦରେ ଅଧୀର ହୋଇ ପଡ଼ିଲା ପ୍ରକାଶ । ସେ ଭଦ୍ରବ୍ୟକ୍ତିମାନଙ୍କ ପ୍ରତି

କୃତଜ୍ଞତାରେ ବତୁରି ଯାଉଥିଲା । ତର ତର ହୋଇ ଟ୍ରାଉଜରଟି ପିନ୍ଧି କାର୍ ପାଖରେ ପହଞ୍ଚି ଗଲା । ଦେଖିଲା କାଳି ବିଲେଇ ପଛ ସିଟ୍‌ରେ ଦୁଇଜଣ ବାବୁଙ୍କ ପାଖରେ ଏକ ଲୁହା ପିଞ୍ଜରା ଭିତରେ ମନ ଖୁସିରେ ଖେଳୁଛି । ଆଗ ସିଟ୍‌କୁ ଅନାଇଲା । ଡ୍ରାଇଭର ଜଣେ ଭଦ୍ରମହିଳା । କଳାଶାଢ଼ି, କଳାବ୍ଲାଉଜ, କଳା ଇଅରିଂ, ବେକରେ କଳା ରଂଗର ମାଳି, ଆଖିରେ କଳା ଚଷମା । ଭଦ୍ରବ୍ୟକ୍ତି ଓ ଭଦ୍ର ମହିଳାମାନଙ୍କ ଅପ୍ରତ୍ୟାଶିତ ସାହାଯ୍ୟ ପାଇଁ ତାର ଦେହ ଓ ମନ ଭାବପ୍ରବଣତାର ସୁଅରେ ଭାସିଯାଉଥିଲା । ସେ ସମସ୍ତଙ୍କୁ ଉଲ୍ଲସିତ ମନରେ ନମସ୍କାର କଲା । ଗାଡିକୁ ଡ୍ରାଇଭ କରୁଥିବା ଉକ୍ତ ମହିଳା ତା' ଆଡକୁ ବୁଲି ଅନାଇଲେ ।

ଏ କଣ ଦେଖୁଛି ସେ ! ପ୍ରୀତି ସାମନ୍ତରାୟ । ଆପାଦମସ୍ତକ କଳାରଂଗରେ ଭରପୂର ହୋଇଥିଲା ବେଳେ ମଥାରେ ଝଟକୁଥିଲା ଏକ ଲାଲରଂଗର ସିନ୍ଦୁର ବିନ୍ଦୁ । ପ୍ରକାଶ ଓ ପ୍ରୀତି ପରସ୍ପରକୁ ଅପଲକ ନୟନରେ ଅନାଇ ରହିଥିଲେ । ପ୍ରକାଶକୁ ମନେ ହେଉଥିଲା ଅପରାଧବୋଧ ଆଉ ଅନୁତାପର କଳାହାଣ୍ଡିଆ ମେଘ ଭିତରୁ ଉଙ୍କି ମାରୁଛନ୍ତି ଉଦୀୟମାନ ଲାଲ ଟହ ଟହ ସୂର୍ଯ୍ୟ । ଏତେଦିନର ସ୍ତୁପୀକୃତ ଭୟ ଓ ଆଶଙ୍କାର ହିମବାହ ଆଶ୍ୱସ୍ତିର ସୂର୍ଯ୍ୟାଲୋକରେ ଦ୍ରୁତ ବେଗରେ ତରଳି ଯାଉଥିଲା ।



# ଶୋଷ

ସୁରେଶ ରାୟଗଡ଼ାରେ ଅଫିସ୍ କାର୍ଯ୍ୟ ସାରି ବ୍ରହ୍ମପୁରରେ ଘରେ ପହଞ୍ଚି ଦେଖିଲେ ଯେ, ତାଙ୍କ ଘର ଆଗରେ ଲୋକଗହଳି । ସମସ୍ତଙ୍କ ମୁହଁରେ ଆଶଙ୍କାର କଳା ବାଦଲ । ଏକ ଅଶ୍ୱସ୍ତିକର ନିରବତା ଘର ସାମ୍ନାରେ କାୟା ବିସ୍ତାର କରିଥିଲା ।

ସୁରେଶଙ୍କ ମନରେ ଭୟ ଓ ଆଶଙ୍କା ଲହଡ଼ି ଭାଙ୍ଗୁଥିଲା । ତରତର ହୋଇ ଭିଡ଼ ଭାଙ୍ଗି ଘର ଭିତରକୁ ପଶିଗଲେ । ସାମ୍ନାରେ ଦେଖିଲେ ତାଙ୍କର ପରିଚିତ ଡ଼ାକ୍ତର ମହାପାତ୍ର । ଡ଼ାକ୍ତର ମହାପାତ୍ର ଗୁରୁ ଗମ୍ଭୀର କଣ୍ଠରେ କହିଲେ- ଆପଣଙ୍କ ମିସେସ୍ ପଏଜନ୍ ଖାଇ ସୁଇସାଇଡ୍ କରିବାକୁ ଉଦ୍ୟମ କରିଛନ୍ତି । ଅତି ଶୀଘ୍ର ଏମ୍‌କେସିଜି ମେଡ଼ିକାଲ ହସ୍‌ପିଟାଲକୁ ନେଇ ତୁରନ୍ତ ଚିକିତ୍ସାର ବ୍ୟବସ୍ଥା କରନ୍ତୁ ।

ଭୟରେ, ଆଶଙ୍କାରେ ପଡ଼ୋଶୀମାନେ ଜଡ଼ସଡ଼ । କାହା ପାଟିରୁ କଥା ବାହାରୁ ନଥିଲା । ଦୁଇ ପୁଅ ଶ୍ରୀକାନ୍ତ ଓ ଶ୍ରୀମନ୍ତ ସମସ୍ତଙ୍କୁ ବଲ ବଲ କରି ଚାହୁଁଥିଲେ । ଦୁଇ ଆଖି ଲୁହ ଛଳ ଛଳ ।

ପଡ଼ୋଶୀମାନଙ୍କ ସହାୟତାରେ ସ୍ତ୍ରୀ ସୁରଭିଙ୍କୁ ତାଙ୍କ ନିଜ କାର୍‌ରେ ନେଇ ହସ୍‌ପିଟାଲରେ ପହଞ୍ଚିଲେ । ଡ଼ାକ୍ତରମାନେ ସୁରଭିର ଅବସ୍ଥା ସଂକଟାପନ୍ନ କହି ତାକୁ ତୁରନ୍ତ ଆଇସିୟୁରେ ଆଡ଼ମିସନ୍ କରିବାର ବ୍ୟବସ୍ଥା କଲେ ।

ଆସିଲାବେଳେ ଦୁଇ ପୁଅଙ୍କର ଦାୟିତ୍ୱ ପଡ଼ୋଶୀ ରଘୁବାବୁଙ୍କ ସ୍ତ୍ରୀ ଉପରେ ନ୍ୟସ୍ତ କରି ଆସିଥିଲେ । ବ୍ରହ୍ମପୁରର ହିଲ୍ ପାଟଣାରେ ଏକ ସଂଭ୍ରାନ୍ତ କଲୋନୀରେ ସେ ରହୁଥିଲେ । ତିନି ମହଲା ବିଶିଷ୍ଟ ଘର । ଛଅଟି ଥ୍ରୀ ବିଏଚ୍‌କେ କ୍ୱାର୍ଟର । ପ୍ରଥମ ମହଲାରେ ସୁରେଶଙ୍କର ଭଡ଼ା ଘର । ସୁରେଶ ଥିଲେ ଓରିଏଣ୍ଟାଲ ଇନ୍‌ସୁରାନ୍‌ସ କଂପାନୀର ଆଡ଼ମିନିଷ୍ଟ୍ରେଟିଭ୍ ଅଫିସର୍ । ଅନ୍ୟ ପାଞ୍ଚୋଟି କ୍ୱାର୍ଟରରେ ଜୀବନବୀମା ଓ ବ୍ୟାଙ୍କର ଅଫିସର୍‌ମାନେ ରହୁଥିଲେ । ଛଅଟି ପରିବାର ଭିତରେ ସ୍ନେହ, ସୌହାର୍ଦ୍ଦ୍ୟର ସୁବାସ ମହମହ ହୋଇ ମହକୁଥିଲା । ବାବୁମାନେ ଅଫିସକୁ ଗଲା ପରେ ଭଦ୍ରମହିଳାମାନେ ନିଆରା ମିଳନ ପର୍ବର ମହୋତ୍ସବରେ ମତୁଆଲା ହୁଅନ୍ତି । କିଏ ଚାଟ୍ ପ୍ରସ୍ତୁତ କରି ଆଣିଥାଏ ତ କିଏ ଗରମ ବରା । ଖାଇବା, ଗପିବା କାର୍ଯ୍ୟକ୍ରମ ଏକ ସଙ୍ଗରେ ଚାଲେ । ସେଇ ଆସରରେ

ଅନନ୍ୟ ରଙ୍ଗରେ, ରୂପରେ. ରସରେ ଖୁସିର ଲହଡ଼ି ଖେଳୁଥାଏ । ସେ ଆସରରେ ମୁଖ୍ୟ ନାୟିକା ଥିଲା ସୁରଭି । ହସ, ଖୁସି, ମଉଜର ପର୍ବ ଆୟୋଜନ କରିବାରେ ସିଦ୍ଧହସ୍ତା ଥିଲା । ସୁରଭି ନ ଆସିଲେ ଆସରଟି ଅଲଣା ଅଲଣା ଲାଗେ । ଖୁସିର ବ୍ୟଞ୍ଜନ ସବୁ ଉପାଦାନରେ ରୁଦ୍ଧିମନ୍ତ ହୋଇଥିଲେ ହେଁ ଲୁଣ ବିନା ସ୍ୱାଦହୀନ ମନେହୁଏ ।

ସୁରଭି ସୁଇସାଇଡ୍ ପାଇଁ. ଉଦ୍ୟମ କରିଛି ଜାଣି କଲୋନୀର ଅନ୍ୟ ପାଞ୍ଚଜଣ ଭଦ୍ର ମହିଳା ଭାଙ୍ଗି ପଡ଼ିଥିଲେ । ଜୀବନ ଓ ଯୌବନର ସେହି କଳ କଳ ନାଦିନୀ ଛଳ ଛଳ ଝରଣା କ'ଣ ପାଇଁ ପାହାଡ଼ର କଙ୍କର ଛାତିରେ ନିଃଶେଷ ହେବା ପାଇଁ ନିଷ୍ପତ୍ତି ନେଲା, ସେଇ ଚିନ୍ତାରେ ସେମାନେ ବିଶେଷ ଉଦ୍‌ବିଗ୍ନ ହେଉଥିଲେ । ସୁରଭି ଥିଲା ପ୍ରଗଲ୍‌ଭା ଓ ପରିପୂର୍ଣ୍ଣା ନଦୀ ପରି ଗରିମାପୂର୍ଣ୍ଣା । ତା ମୁହଁରେ ଭସା ବଉଦର ବିଭିନ୍ନ ରଙ୍ଗ ଝଟକୁଥାଏ । ଫୁଲର ବାସ୍ନା ଆଉ ସଂଗୀତର ସୁରରେ ମୁକ୍ତ ଆକାଶର ବିହଙ୍ଗ ପରି ତାର ମନ ଉଡୁଥିଲା ।

ସ୍ୱାମୀ ଉଚ୍ଚପଦସ୍ଥ ଉଚ୍ଚବେତନ ପ୍ରାପ୍ତ ଅଫିସର୍ । ହସ ଖୁସିରେ ନାଚୁଥିବା ଦୁଇ ପୁଅ ସୁକାନ୍ତ ଓ ଶ୍ରୀମନ୍ତ । ସୁକାନ୍ତ ତୃତୀୟ ଶ୍ରେଣୀରେ ଓ ଶ୍ରୀମନ୍ତ ପ୍ରଥମ ଶ୍ରେଣୀରେ ପଢ଼ନ୍ତି । ଘରେ ସବୁ ଆଧୁନିକ ସାଜ ସରଞ୍ଜାମ ଓ ଆସବାବପତ୍ର ପରିପୂର୍ଣ୍ଣ । ସୁରେଶ ଥିଲେ, ଶାନ୍ତ, ନମ୍ର ଓ ମୂଲ୍ୟବୋଧରେ ବିଶ୍ୱାସ କରୁଥିବା ଏକ ନିଆରା ମଣିଷ । ସ୍ୱାମୀ, ସ୍ତ୍ରୀଙ୍କ ଭିତରେ କେବେ ଝଗଡ଼ା ଲାଗିବାର କେହି ଦେଖିନାହାଁନ୍ତି କି ଶୁଣି·ନାହାଁନ୍ତି । ସେହି ଛୋଟ କଲୋନୀର ଏକ ଆଦର୍ଶ ପରିବାର । ସାରା ଘରର କୋଣ ଅନୁକୋଣରେ 'ହଁ' ହଁ' ରାଜୁତି କଲାବେଳେ କ'ଣ 'ନାହିଁ' ଥିଲା ଯେ ସୁରଭି ଏହି ଚରମ ପଦକ୍ଷେପ ନେବାକୁ ବାଧ୍ୟ ହେଲା । ତାହା ସମସ୍ତଙ୍କୁ ବିସ୍ମିତ କରୁଥିଲା ।

ସେମାନେ ଭାବୁଥିଲେ ସ୍ୱାମୀ ସ୍ତ୍ରୀ ଭିତରେ ଥିବା ବିଶ୍ୱାସ ଓ ବୁଝାମଣାର ବନ୍ଧ ଭୁଶୁଡ଼ି ପଡ଼ିଛି । ମୁହୂର୍ତ୍ତକ ଅବିଶ୍ୱାସରେ ଫୁଲର ଉପତ୍ୟକା ଉଜୁଡ଼ି ଯାଏ, ସବୁଜ ଅରଣ୍ୟ ଜଳି ପାଉଁଶ ହୋଇଯାଏ । ଭଙ୍ଗା ସ୍ୱପ୍ନର ଗଭୀର କ୍ଷତମାନେ ରୁଗ୍‌ରୁଗ୍ ଯନ୍ତ୍ରଣାରେ ଛାତି କୋରି ପକାନ୍ତି । ଆଇନାର କାଚପରି ତାର ସ୍ୱପ୍ନଗୁଡ଼ାକ ବୋଧହୁଏ ଭାଙ୍ଗି ଯାଇଥିଲା । ବାହାରକୁ ହସୁଥିଲେ ବି ତାର ଫଟା ଦରସିଆଁ ଛାତି ତଳେ ଯନ୍ତ୍ରଣାକୁ ସାଇତି ରଖିଥିଲା । ଲହୁ ଲୁହାଣ ମନ ଉପରେ ଚନ୍ଦନ ଲେପିବାର ସଫଳ ପ୍ରୟାସ କରୁଥିଲା । ଆକାଶର ଆଲିଙ୍ଗନରେ ଧୂସର ଭୁଇଁରେ କିଭଳି ହସନ୍ତ ଜୀବନ ପନ୍ହେଇ ଉଠିବ ସେଥିପାଇଁ ଉଦ୍ୟମ ଜାରି ରଖିଥିଲା ।

ସେମାନେ ସନ୍ଦେହର ଝାପ୍ସା ଆଲୁଅରେ ସୁରେଶ ଓ ସୁରଭିଙ୍କ ମୁହଁରେ ଅନ୍ୟରଙ୍ଗ ଆବିଷ୍କାର କରିବା ପାଇଁ ପଡ଼ୋଶୀ ମହିଳାମାନଙ୍କ ମନ ଉଦ୍‌ବେଳିତ ହେଉଥିଲା ।

ସଂଜୟବାବୁଙ୍କ ସ୍ତ୍ରୀ ସବିତା କହିଲେ- ସୁରେଶ ବାବୁ ଚୁପ୍‌ସଇତାନ୍ । ବାହାରକୁ ସହଜ, ସରଳ, ଅମାୟିକ ଦେଖାଯାଆନ୍ତି । କେଉଁ ସୁନ୍ଦରୀ ତରୁଣୀର ପ୍ରେମରେ ଉବୁଟୁବୁ ହେଉଛନ୍ତି ଓ ତାକୁ ବିବାହ କରିବାକୁ ନିଷ୍ପତ୍ତି ନେଇଛନ୍ତି, ସେଥିପାଇଁ ସୁରଭି ନିଜକୁ ସମ୍ଭାଳି ପାରିଲାନି ।

ଅନିଲବାବୁଙ୍କ ସ୍ତ୍ରୀ ଅନିମା କହିଲେ- ସୁରେଶବାବୁ ବରମୁଣ୍ଡାରେ ଭଲ ଘରଟିଏ କରୁଛନ୍ତି । ସେଥିପାଇଁ ଟଙ୍କା ଦରକାର ପଡୁଥିବ । ବାପଘର ଯାଇ ପାଞ୍ଚଦଶ ଲକ୍ଷ ଟଙ୍କା ଆଣିବାକୁ ହୁଏତ ତାକୁ ବାଧ୍ୟ କରୁଥିବେ । ତାଙ୍କର ନିମ୍ନ ମଧ୍ୟବିତ୍ତ ପରିବାର । ସେମାନେ ଏତେ ଟଙ୍କା କୁଆଡୁ ଆଣିବେ ? ସୁରେଶବାବୁ ବାରମ୍ବାର ବାଧ୍ୟ କରିବାରୁ ସେ ହୁଏତ ଏପରି କରିଛି ?

କମଳବାବୁଙ୍କ ସ୍ତ୍ରୀ କମଳିନୀ କହିଲେ- ସୁରେଶବାବୁ ବାହାରକୁ ଭଦ୍ରଲୋକର ମୁଖା ପିନ୍ଧିଛନ୍ତି । ନରମାୟା ନାରାୟଣଙ୍କୁ ଅଗୋଚର । ସେ ହୁଏତ ସୁରଭିକୁ ମାନସିକ ଓ ଶାରୀରିକ ନିର୍ଯ୍ୟାତନା ଦେଉଥିବେ । ସୁରଭି କାହାକୁ କହେନା, ସବୁବେଳେ ହସରେ ଉଚ୍ଛୁଳି ପଡୁଥାଏ । କିନ୍ତୁ ମନର ନିଭୃତ କୋଣରେ ବୋଧହୁଏ ଯନ୍ତ୍ରଣାର ନିଆଁ ହୁତୁହୁତୁ ହୋଇ ଜଳୁଥିଲା ।

ବିଭିନ୍ନ ସନ୍ଦେହ ଓ ଅନୁମାନର କୁହୁଡ଼ିରେ ସେ ଦିନ ମହିଳାମାନଙ୍କ ଆସର ଆଚ୍ଛନ୍ନ ଥିଲା ।

ଆଇସିୟୁ ଭିତରେ ସୁରଭି । ଡ଼ାକ୍ତର ଓ ନର୍ସମାନେ ବାରମ୍ବାର ଭିତରକୁ ଯାଇ ବାହାରକୁ ନିର୍ବିକାର ମୁଖମଣ୍ଡଳରେ ଆସୁଥିଲେ । ସୁରେଶଙ୍କ ମନରେ ଆଶଙ୍କାର ବାତାବର୍ତ୍ତ । ସୁରେଶଙ୍କୁ ଭିତରକୁ ଯିବା ପାଇଁ ନର୍ସ ବାରଣ କରିଥିଲେ । ସଂଧ୍ୟା ଅତିକ୍ରାନ୍ତ ପରେ ଘନ ଅଂଧକାର ହସପିଟାଲ ପରିବେଶକୁ ଘେରି ଯାଇଥିଲା । ଆଇସିୟୁ ରୋଗୀମାନଙ୍କର ସହାୟକଙ୍କ ପାଇଁ ଉଦ୍ଦିଷ୍ଟ ପ୍ରତୀକ୍ଷାଳୟରେ ସୋଫା ଉପରେ ସୁରେଶ ବସିଥିଲେ । ଗଲା ଦିନର କଥା ଓ ବ୍ୟଥା ଫର୍ଦ୍ଦ ଫର୍ଦ୍ଦ ହୋଇ ତାଙ୍କ ଆଖି ଆଗରେ ନାଚି ଉଠୁଥିଲା ।

ସଚିବାଳୟର ଉଚ୍ଚ ପଦସ୍ଥ ଅଫିସରଙ୍କ ଝିଅ ସ୍ୱାଗତିକା ସହିତ ତାଙ୍କ ବିବାହ ମହାସମାରୋହରେ ଅନୁଷ୍ଠିତ ହୋଇଥିଲା । ବାହାଘର ପରେ ସ୍ୱାଗତିକାଙ୍କ ସହ ଚାକିରି ସ୍ଥଳ ଭୁବନେଶ୍ୱରରେ ରହୁଥିଲେ । ଦୁଇ ପୁଅ ସୁକାନ୍ତ ଓ ଶ୍ରୀମନ୍ତର ଜନ୍ମ ପରେ ପରିବାରରେ ଖୁସିର ଲହଡ଼ି ଖେଳୁଥିଲା । ବାହାଘରର ସାତ ବର୍ଷ ପରେ ହୃଦରୋଗରେ ପୀଡ଼ିତ ହୋଇ

ସ୍ୱାଗତିକା ସବୁଦିନ ପାଇଁ ବିଦାୟ ନେଲା । ଶେଷ ସମୟରେ ଲୁହ ଛଳ ଛଳ ଆଖିରେ ସୁରେଶଙ୍କର ଦୁଇ ହାତ ଜାବୁଡ଼ି ଧରି କହିଲା – ମୋ ଦୁଇ ପୁଅ ତୁମକୁ ଲାଗିଲେ ।

ସୁରେଶଙ୍କର ଅଦିନିଆ ବର୍ଷା ପରି ଦୁଇ ଟୋପା ଲୁହ ସ୍ୱାଗତିକାର କପୋଳକୁ ଭିଜାଇ ଦେଇଥିଲା । ସେ ଦୁଇ ଟୋପା ଲୁହ ତାଙ୍କ ସମ୍ମତିର ସୂଚନା ଦେଇଥିଲା । ସ୍ୱାଗତିକା ଶାନ୍ତିରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ସ୍ୱାଗତିକାଙ୍କ ବିଦାୟକାଳୀନ ଶବ୍ଦଗୁଡ଼ିକ ସୁରେଶଙ୍କ ମନକୁ ଆନ୍ଦୋଳିତ କରେ । ନିଶାର୍ଦ୍ଧର ନିରବ ମୁହୂର୍ତ୍ତରେ ଶେଷ ଶବ୍ଦଗୁଡ଼ିକ ତାଙ୍କ କର୍ଣ୍ଣ କୁହରରେ ଗୁଞ୍ଜରିତ ହୁଏ । ତାଙ୍କର ଦ୍ୱିତୀୟ ବିବାହ ପାଇଁ ବାପା, ମା, ବନ୍ଧୁବାନ୍ଧବ, ସ୍ୱାଗତିକାର ମା, ବାପା ସମସ୍ତେ ତାଙ୍କୁ ପ୍ରବର୍ତ୍ତେଇ ଥିଲେ । ସାବତ ମାଆ ଆସିଲେ ସୁକାନ୍ତ ଓ ଶ୍ରୀମନ୍ତକୁ ହତାଦାର କରିବ, ଏ ବିଶ୍ୱାସ ଓ ଧାରଣା ତାଙ୍କର ଦୃଢ଼ୀଭୂତ ହୋଇଥିଲା । କଅଁଳ କଢ଼ି ପରି କୋମଳ ଦୁଇ ବାଳକ ଆଗନ୍ତୁକାର ଦୁର୍ବ୍ୟବହାରରେ ମଉଳି ପଡ଼ିବେ, ଏ ଆଶଙ୍କା ତାଙ୍କ ମନ ଆକାଶକୁ ମେଘାଚ୍ଛନ୍ନ କରି ରଖିଥିଲା । ସେଥିପାଇଁ ଦ୍ୱିତୀୟ ବିବାହ ନ କରିବାକୁ ସୁରେଶ ଦୃଢ଼ନିଷ୍ପତ୍ତି ନେଇଥିଲେ ।

ଗାଆଁରୁ ବାପା, ମାଆ ଭୁବନେଶ୍ୱର ଆସି ପିଲାମାନଙ୍କର ଦେଖାଶୁଣା କରୁଥାନ୍ତି । ବାପା ମା'ଙ୍କର ବୟସ ବଢ଼ିବାକୁ ଲାଗିଲା । ବାର୍ଦ୍ଧକ୍ୟଜନିତ ବିଭିନ୍ନ ରୋଗରେ ସେମାନେ ପୀଡ଼ିତ ହେଲେ । ଯେତେବେଳେ ପୁଅ ବୋହୂ ତାଙ୍କର ଯତ୍ନନେବା କଥା, ସେତେବେଳେ ପୁଅର ପରିବାରର ବୋଝ ସମ୍ଭାଳିବା ସେମାନଙ୍କ ପାଇଁ କାଠିକର ପାଠ ହେଲା । ମା' ଲୁହ ଛଳଛଳ ଆଖିରେ କହିଲେ- ବାବୁରେ, ତୁ ଆଉ ଥରେ ବାହା ହେ । ତୋ ସଂସାରର ବୋଝ ଏ ବୟସରେ ଆମେ କ'ଣ ବୋହି ପାରିବୁ ? ଆମେ ଏ ସଂସାରରେ କେତେଦିନ ରହିବୁ ? ତୋ ଆଗରେ ତୋର ଓ ପିଲାମାନଙ୍କର ଲମ୍ବା ଜୀବନ ପଡ଼ିଛି ? ସ୍ତ୍ରୀଟିଏ ବିନା ତୁ କିପରି ଜୀବନ ସାରା ଚଳିବୁ ?

ସୁରେଶ କହିଲେ- ନୂଆ ସ୍ତ୍ରୀ ପିଲା ଦୁଇଟିଙ୍କୁ କିପରି ଦେଖିବ, ସେଇ ଚିନ୍ତାରେ ମୁଁ ମ୍ରିୟମାଣ । ପିଲାମାନଙ୍କ ପ୍ରତି ଦୁର୍ବ୍ୟବହାର ମୁଁ ସହି ପାରିବିନାହିଁ । ମାଆ ସୁରେଶଙ୍କ ହାତ ଧରି ସ୍ନେହ ଭରା କଣ୍ଠରେ କହିଲେ- ମୁଁ ତୋ ଦୁଃଖ ବୁଝୁଛି । ଆମ ଦୂର ସଂପର୍କୀୟ ସନାତନ ଦାଦାଙ୍କର ବୟସ୍କା ଝିଅଟିଏ ଅଛି । ଭାରି ଶାନ୍ତ, ଶିଷ୍ଟ, ସୁଧାର । ମାଛିକୁ ମଅ କହେନାହିଁ । ହସ ଖୁସିଆ ପିଲାଟିଏ । ଝିଅଟି ଶ୍ୟାମଳ ବର୍ଣ୍ଣ, ଗଠନ ବହୁତ ଭଲ । ତାଙ୍କ ଗାଆଁ କଲେଜରେ ବି.ଏ. ପଢ଼ିଛି । ସନାତନ ଦାଦା ଯୌତୁକ ଦେଇ ଖର୍ଚ୍ଚ କରି ଝିଅ

ବାହାଘର କରିବା ଅବସ୍ଥାରେ ନାହାଁନ୍ତି । ତୋତେ ଝିଅଟିକୁ ବାହା ଦେବା ପାଇଁ ତାଙ୍କର ଷୋଳପଣ ଇଚ୍ଛା । ବହୁତ ଥର ଖବର ଦେଲେଣି । ମୁଁ ଭାବୁଛି, ଏଇଠି କଲେ ଭଲ ହେବ । ଝିଅଟିର ଗୁଣ ଗ୍ରାମ ଆମେ ଜାଣିଛେ । ସେ ପିଲାମାନଙ୍କୁ କସ୍ମିନ କାଳେ ହତାଦର କରିବ ନାହିଁ । ଭଲ ସଂସ୍କାରୀ ଘରର ଝିଅ ।

ମାଆର ଅକାଟ୍ୟ ଯୁକ୍ତିର ପ୍ରଚଣ୍ଡ ଆଘାତରେ ସୁରେଶଙ୍କର ଦୃଢ଼ ନିଷ୍ପତ୍ତିର ପାହାଡ଼ଟି ଭୁଶୁଡ଼ି ପଡୁଥିଲା । ବିବାହ ପୂର୍ବରୁ ଝିଅଟି ସହିତ ଦଶ ମିନିଟ୍ ପାଇଁ ଏକାନ୍ତରେ କଥାବାର୍ତ୍ତା ହେବା ପାଇଁ ସେ ସର୍ତ୍ତ ରଖିଥିଲେ । କଥାବାର୍ତ୍ତା ପରେ ସୁରେଶ ଦ୍ୱିତୀୟ ବିବାହ ପାଇଁ ସମ୍ମତି ଦେଲେ ।

ସୁରଭି ସହିତ ସୁରେଶଙ୍କର ବାହାଘର ଭୁବନେଶ୍ୱର ଆର୍ଯ୍ୟସମାଜ ପରିସରରେ ନିରାଡ଼ମ୍ବର ଭାବରେ ଅନୁଷ୍ଠିତ ହେଲା । ଜୀବନ ସାରା ଅଭାବ ଅନଟନରେ ବଢ଼ି ଆସିଥିବା ଝିଅଟି ପ୍ରାଚୁର୍ଯ୍ୟର ପରିବେଶରେ ଆନନ୍ଦରେ ବିଭୋର ହୋଇ ଯାଇଥିଲା । ସୁରେଶ ପ୍ରତିଦିନ ସଂଧ୍ୟାରେ ସୁରଭି ଓ ପିଲାମାନଙ୍କୁ ତାଙ୍କ କାର୍‌ରେ ନେଇ ବିଭିନ୍ନ ମଲ୍ ଓ ପାର୍କ ବୁଲିବାକୁ ଯାଆନ୍ତି । ସୁରେଶ ଓ ପିଲାମାନଙ୍କ ମନରେ ହସ ଓ ଆନନ୍ଦ ଖେଳାଇବାକୁ ସୁରଭି ତାର ଅନବରତ ପ୍ରୟାସ ଜାରି ରଖିଥିଲା । ଯେଉଁ ସ୍ୱପ୍ନ ସେ କେବେ ଦେଖି ନଥିଲା, ସେ ସ୍ୱପ୍ନ ମେଞ୍ଚାକୁ ହାତ ପାହାନ୍ତାରେ ପାଇ ଈଶ୍ୱରଙ୍କ ପାଖରେ କୃତଜ୍ଞତା ଜ୍ଞାପନ କରୁଥିଲା ।

ଭୁବନେଶ୍ୱରରେ ତିନି ବର୍ଷ ଆନନ୍ଦରେ ଅତିବାହିତ ହେଲା ପରେ ସୁରେଶଙ୍କର ବ୍ରହ୍ମପୁରକୁ ବଦଳି ହେଲା । ହିଲ୍‌ପାଟଣାର ନୂଆ ପରିବେଶ, ନୂଆ ପଡ଼ୋଶୀ । ସୁରଭି ଯେ ଦ୍ୱିତୀୟ ସ୍ତ୍ରୀ ଏ କଥା ଗୋପନ ରଖିବାକୁ ଦୁହେଁ ସ୍ଥିର କରିଥିଲେ । ସୁକାନ୍ତ ଓ ଶ୍ରୀମନ୍ତ ସୁରଭି ପାଖରେ ମା' ମା' ବୋଲି ସବୁବେଳେ ଅଳି କରୁଥାନ୍ତି । ସ୍ନେହରେ ସୁରଭି ସେମାନଙ୍କୁ କୋଳେଇ ନେଇ ସେମାନଙ୍କୁ ଗୋଡ଼େ ଗୋଡେ ଜଗିଥାଏ । ସଂଧ୍ୟା ବେଳେ ସେମାନଙ୍କୁ ପାଠ ପଢ଼ାଏ, ହୋମ ଟାସ୍କ କରାଏ, ସକାଳୁ ସକାଳୁ ତାଙ୍କୁ ଖୁଆଇ-ପିଆଇ ସ୍କୁଲ ଡ୍ରେସ୍ ପିନ୍ଧାଇ ସ୍କୁଲକୁ ପଠାଏ । ସୁରେଶ ପିଲାଙ୍କ ବିଷୟ କିଛି ବୁଝନ୍ତିନି । ସେ ସକାଳୁ ଉଠିଲାବେଳକୁ ପିଲାମାନେ ସ୍କୁଲକୁ ଯାଇ ସାରିଥାନ୍ତି । ବ୍ରହ୍ମପୁରରେ ଦୁଇ ବର୍ଷରୁ ଅଧିକ ଆନନ୍ଦରେ ଅତିବାହିତ କରିଥିଲେ । ଜୀବନରେ ଯେବେ ଖୁସି ଓ ସନ୍ତୋଷ ଭରିଯାଇଥାଏ, ସମୟ କେମିତି କଟିଯାଏ, ଜଣାପଡ଼େନା ।

ସେଦିନ ନିଶାର୍ଦ୍ଧରେ ସୁରଭି ଆବେଗର ସହ ତାଙ୍କ ଦୁଇ ହାତକୁ ଛାତିରେ ଜାକିଧରି କହିଲା- ମୁଁ ମାଆ ହେବାକୁ ଚାହେଁ । କେଜାଣି କାହିଁକି ପିଲାଟିଏ ଜନ୍ମ ଦେବାକୁ

ମୋ ମନ ତହଳ ବିକଳ ହେଉଛି ।

ସୁରେଶଙ୍କର ମନ ଆକାଶ ଘଡ଼ଘଡ଼ିର ପ୍ରଚଣ୍ଡ ଶବ୍ଦରେ ପ୍ରକଂପିତ ହେଲା । ତାଙ୍କ ମନ ଓ ଦେହ ବଜ୍ରର ଆଘାତରେ ଦୋହଲି ଗଲା ପରି ଅନୁଭବ କଲେ । ସୁରଭିର ସନ୍ତାନ ଜନ୍ମ ହେବା ପରେ ସୁରଭି ସୁକାନ୍ତ ଓ ଶ୍ରୀମନ୍ତକୁ ହତାଦର କରିବ । ନିଜ ସନ୍ତାନକୁ ସ୍ନେହରେ ଭିଜାଇ ଦେଉ ଦେଉ ଏମାନଙ୍କ ଅଣଦେଖା କରିବ, ପ୍ରଥମ ସ୍ତ୍ରୀର ଦୁଇ ପୁଅଙ୍କ ଶିରି ଦେଖିପାରିବନି, ଏ ଚିନ୍ତା ତାଙ୍କୁ ଅସ୍ତବ୍ୟସ୍ତ କରି ଦେଉଥିଲା । ପ୍ରକୃତିସ୍ଥ ହୋଇ କହିଲେ- ବିବାହ ପୂର୍ବରୁ ଏକାନ୍ତରେ ତୁମେ ମୋତେ କଥା ଦେଇଥିଲ, ସୁକାନ୍ତ ଓ ଶ୍ରୀମନ୍ତର ମାଆ ହୋଇ ସାରା ଜୀବନ ବିତାଇ ଦେବ । ଦେଇଥିବା କଥା ଏବେ ଭାଙ୍ଗୁଛ କାହିଁକି ? ତୁମର ଦୃଢ଼ ପ୍ରତିଶ୍ରୁତି ପରେ ହିଁ ମୁଁ ବାହାଘର ପାଇଁ ରାଜି ହୋଇଥିଲି ।

ସୁରଭିର ଆଖିରେ ଲୁହ ଭର୍ତ୍ତି ହୋଇଯାଇଥିଲା । ସତେ ଯେପରି ମେଘାଚ୍ଛନ୍ନ ଆକାଶ । ଦଲକାଏ ଶୀତଳ ପବନରେ ଓଜାଡ଼ି ହୋଇ ପଡ଼ିବ । ଭଙ୍ଗା ଭଙ୍ଗା କଣ୍ଠ ଥରିଲା ଓଠରେ କହିଲା- ଘରେ ଆମର ଅଭାବ ଲାଗିରହିଥିଲା, ବାହାଘରର ସ୍ୱପ୍ନ ମୋର ମରି ଯାଇଥିଲା । ତୁମ ସହିତ ବାହାଘର ପ୍ରସ୍ତାବରେ ମୋର ବାପା, ମାଆ, ପରିବାର ଓ ମୁଁ ଏପରି ଖୁସି ହୋଇଯାଇଥିଲୁ ଯେ ତୁମର ସବୁ ସର୍ତ୍ତକୁ ମୁଁ ସ୍ୱୀକାର କରିଥିଲି । ମୋର ମଉଳି ଯାଇଥିବା ଜୀବନ ତୁମ ସ୍ପର୍ଶରେ ପଲ୍ଲବିତ ହେଲା । ମନେ ମନେ ସ୍ଥିର କରିଥିଲି ଯେ ଦେଇଥିବା କଥା ଜୀବନ ସାରା ରଖିବି । ଏବେ କିନ୍ତୁ ମନଟା ମାନୁନି । ଯେତେ ବୁଝାଇଲେ ବି ଅମାନିଆ ମନଟା ବୁଝୁନି । ପଡୋଶୀ ଶର୍ମିଳାକୁ ଅନ୍ତସତ୍ତ୍ୱା ହେବାର ଦେଖି, ରାସ୍ତାରେ ଘାଟରେ ଗର୍ଭବତୀ ମହିଳାଟିଏ ଦେଖିଲେ, ମୋ ମନ କାନ୍ଦି ଉଠୁଛି । ସନ୍ତାନଟିଏ ଦଶମାସ ଗର୍ଭରେ ଧରି ରଖିବାକୁ ଓ ଜଠର ଯନ୍ତ୍ରଣାକୁ ଉପଭୋଗ କରିବାର ଇଚ୍ଛାଗୁଡ଼ିକ ଚେଇଁ ଉଠୁଛନ୍ତି । ଯେତେ ବାରଣ କଲେବି ମନ ମାନୁନାହାଁନ୍ତି । ନିଜ ଜନ୍ମିତ ଶିଶୁର ଦରୋଟି ହସ, ତା ମା' ଡାକର ମାଦକତା ପାଇଁ ମନରେ ଆଶା କଅଁଳି ଉଠୁଛି ।

ସୁରଭି ଅନୁଭବ କରୁଥିଲା, ମାଆ ହେବା ପାଇଁ ତା ମନ ଓ ହୃଦୟରେ ଅପ୍ରତିହତ କାମନା, ଅଦମନୀୟ ଅଭୀପ୍ସା । ସବୁ ପାଇ ବି ସେ ଅପୂର୍ଣ୍ଣା, ସବୁ ଥାଇବି ସେ ନିସ୍ୱଃ । ମନ ଆକାଶରେ ଝଡ଼ର ତାଣ୍ଡବ, ପ୍ରଳୟର ଚିତ୍ରପଟ । ଛାତି ତଳେ ଅସରନ୍ତି କୋହର ଲହଡ଼ି । ଉତୁରି ପଡୁଛି ପଞ୍ଜରାଭେଦୀ ଦୀର୍ଘଶ୍ୱାସ । ତାର ଛଳ ଛଳ ମୁହଁର ଦର୍ପଣରେ ଜଳ ଜଳ ଦିଶୁଛି ତା ଥରିଲା ଥରିଲା ଓଠରେ ଧୂସର ଚିତ୍ରପଟ । ତା' ଜଠରର ମାଟି ଖୋଜୁଛି ଚାରାଟିଏ ଯିଏ ସେ ମାଟିର ଛାତିରେ ଅଙ୍କୁରୋଦ୍‌ଗମ ହୋଇ୍ ପଲ୍ଲବିତ ହେବ । ତାର

ତନୁ, ମନ ଓ ହୃଦୟରେ ନୂତନ ସୃଷ୍ଟି ପାଇଁ ବିପ୍ଳବର ଦୁନ୍ଦୁଭି ଶୁଭୁଛି । ସ୍ରଷ୍ଟା ସୃଷ୍ଟିର ଆନନ୍ଦ ଉପଭୋଗ କରିବା ପାଇଁ ବ୍ୟାକୁଳ । ସ୍ରଷ୍ଟା ହିଁ ଜାଣେ ସୃଷ୍ଟିର ଆନନ୍ଦ । ସୃଷ୍ଟିର ବୀଜ ଅଙ୍କୁରୋଦଗମ ନ ହେଲେ ତା ପ୍ରାଣରେ ଉତୁରି ଉଠେ ଶୋଷ । ସେ ଶୋଷ ଅପ୍ରତିହତ, ଅଦମନୀୟ । ସୃଷ୍ଟିର ଜଳରେ ସେ ଶୋଷ ଶାନ୍ତ ହୁଏ । ଅଭୂତପୂର୍ବ ପୁଲକରେ ପୁଲକିତ ହୁଏ ଦେହ, ମନ ଓ ହୃଦୟ । ନାରୀ ଏକ ପ୍ରବହମାନ ପୂର୍ଣ୍ଣଗର୍ଭା ନଦୀ । ସେଥିରେ ବନ୍ଧବାନ୍ଧିଲେ ସେ ବନ୍ଧ ଭାଙ୍ଗି ପ୍ରଳୟ ସୃଷ୍ଟି କରିବ ।

ସୁରେଶଙ୍କର କଟି ଚାରିପଟେ କଇଁନାଡ଼ ପରି କଅଁଳ କଂପିତ ହାତଟିକୁ ବୁଲାଇ ସୁରଭି କହିଲା – ତୁମେ ଭାବୁଛ ମୁଁ ମାଆ ହେଲେ ସୁକାନ୍ତ ଓ ଶ୍ରୀମନ୍ତକୁ ସ୍ନେହ କରିବିନି, ତାଙ୍କ ପ୍ରତି ଈର୍ଷାନ୍ୱିତ ହେବି । ତମର ଏହା ଭୁଲ୍ ଧାରଣା । ନିଜେ ମାଆ ହେଲେ ହିଁ ନାରୀ ପରିପୂର୍ଣ୍ଣା ହୁଏ । ଫଳ, ପତ୍ର, ପୁଷ୍ପ, ଶାଖା, ପ୍ରଶାଖାରେ ଭରପୂର ଏକ ପୂର୍ଣ୍ଣତାପ୍ରାପ୍ତ ଦ୍ରୁମ ପରି ତାର ଜୀବନ ପାତ୍ର ଭରିଯାଏ । ନାରୀଟିଏ ପିଲାଙ୍କ ଲାଳନ ପାଳନ କଲେ ପ୍ରାଣ ପ୍ରାଚୁର୍ଯ୍ୟରେ ତାର ଜୀବନ ବିକଶିତ ହୁଏ । କିନ୍ତୁ ଜଣେ ନାରୀର ଗର୍ଭରେ ଶିଶୁ ନିରବରେ ପଲ୍ଲବିତ ହେଲା ବେଳେ ଯେଉଁ କଂପନ, ଯେଉଁ ଆହ୍ଲାଦ, ଯେଉଁ ସ୍ୱପ୍ନ, ଯେଉଁ ଅମୃତ ଅନୁଭବ ମିଳେ ତାର ଅନନ୍ୟ ସ୍ୱାଦ ସେ ଅନ୍ୟ କେଉଁଠାରୁ ପାଇ ପାରିବ ନାହିଁ । ଅନ୍ତଫାଡ଼ି ଜନ୍ମ ଦେଲାବେଳେ ଅସହ୍ୟ ଯନ୍ତ୍ରଣାର ଜଉଘରେ ଖୁସିର ଯେଉଁ ଫଲ୍ଗୁ ପ୍ରବାହିତ ହୁଏ, ତାହା ଅତୁଳନୀୟ, ଅନୁପମ । କୁଆଁ କୁଆଁ ଶବ୍ଦର ପ୍ରଥମ ପଦପାତରେ ମାଆ ମନରେ ଅଫୁରନ୍ତ ପୁଲକର ପ୍ଲାବନ ସୃଷ୍ଟି ହୁଏ । କଅଁଳ ଛନ୍ ଛନ୍ ଶିଶୁକୁ ଛାତିର ମାଂସଳ ଶେଯରେ ଜାକି ଧରିଲେ, ମାଆ ମନ ଓ ହୃଦୟରେ ଆତ୍ମୀୟତା ଓ ଆବେଗର ସବୁଜିମା ଭରିଯାଏ । ସ୍ତନରୁ ଶିଶୁକୁ କ୍ଷୀର ପାନ କରାଇବା ବେଳେ ମିଠା ମିଠା ଖୁସି ସାରା ଦେହକୁ ସଞ୍ଚରି ଯାଏ । କଅଁଳ ଶିଶୁଟିର ଲହୁ, ଲୁହ, ସିଙ୍ଗାଣି, ଗୁହ, ମୂତରେ ଜଡ଼ସଡ଼ ହେବାରେ ମାଆର ଅନୁଭବ ଅଭୁତପୂର୍ବ । ତାର ଠୁକୁ ଠୁକୁ ଚାଲି ଦେଖିଲେ ମାର ମୁଖମଣ୍ଡଳରେ ପରମ ତୃପ୍ତି ଭରିଯାଏ ।

ସୁରେଶ, ସୁରଭିର ଭାବ ପ୍ରବଣତାରେ ଭାସି ନଯାଇ ନିଜକୁ ଦୃଢ଼ କରିଥିଲେ । ସୁରଭିର କଥାରେ ରାଜି ହେବାକୁ ତାଙ୍କ ବିବେକ ବାଧା ଦେଉଥିଲା । ସୁରଭିର ଲୁହଭିଜା ଆଖି ଓ ବିନମ୍ର ଅନୁରୋଧକୁ ଭାଙ୍ଗି ପାରୁନଥିଲେ ମଧ୍ୟ ବିବେକ ସହିତ ସାଲିସ କରି ପାରୁନଥିଲେ । ବିବାହ ପୂର୍ବରୁ କଥା ଦେଇ ସୁରଭି ଏବେ କଥା ଭାଙ୍ଗୁଥିବାରୁ ବିରକ୍ତିରେ ତାଙ୍କ ମୁହଁ ବିବର୍ଣ୍ଣ ଦିଶୁଥିଲା । ସୁରେଶଙ୍କର କଣ୍ଠରେ ଦୃଢ଼ତା– "ଜୀବନ ବାସ୍ତବତାର ଗଣିତ ।

ଯାହା ପାଇଛ ସେଥିରେ ଖୁସି ହୁଅ । ଅଧିକ ଆଶା କଲେ ଦୁଃଖ ପାଇବ ସୁରଭି ! କିଛି ଲାଭ ହେବ ନାହିଁ"-ଏତିକି କହି ଭାବପ୍ରବଣ ନହେବା ପାଇଁ ରୋକଠୋକ୍ ଶୁଣାଇ ଦେଇ ସକାଳୁ ସକାଳୁ ରାୟଗଡ଼ା ଟୁର୍‌ରେ ଚାଲିଯାଇଥିଲେ । ଆଉ ପଛକୁ ଫେରି ଚାହିଁ ନଥିଲେ ।

ସୁରଭିର ଛାତି ସନ୍ଧି ଭିତରୁ ରୁକ୍ ରୁକ୍ ହୋଇ ଯନ୍ତ୍ରଣାଗୁଡ଼ିକ ଫିଟି ପଡୁଥିଲା । ସେ ଯନ୍ତ୍ରଣା ଧୀରେ ଧୀରେ କାୟା ବିସ୍ତାର କରି ସମଗ୍ର ଶରୀରକୁ ଆବୋରିଗଲା । ଏହା ଶରୀର ଯନ୍ତ୍ରଣା ହୋଇଥିଲେ ତାକୁ ଧୂଳି ପରି ଝାଡ଼ି ଦେଇଥାନ୍ତା ସିଏ । ଏ ଯନ୍ତ୍ରଣା ମନକୁ ଓ ଛାତି ଭିତରର କଲିଜାକୁ ଖିନ୍‌ଭିନ୍ କରି ଦେଉଥିଲା । ନିଜ ଭିତରର ସ୍ତୁପୀକୃତ କ୍ରୋଧ, ଅସହାୟତା, ଅଭିମାନ, ଦୁଃଖ ଓ ପ୍ରତିବାଦ ସ୍ୱରକୁ ନିର୍ଗତ କରିବା ପାଇଁ ବାଟ ଖୋଜୁଥିଲା ।

ପରାମର୍ଶ ଦେଇ ସକାଳୁ ସକାଳୁ ରାୟଗଡ଼ା ଟୁର୍‌ରେ ଚାଲିଯାଇଥିଲେ ସୁରେଶ । ରାୟଗଡ଼ାରୁ ଫେରି ଦେଖନ୍ତି, ଏଭଳି ଅଘଟଣ ଘଟିଯାଇଛି ।

ସୁରେଶ ପ୍ରତୀକ୍ଷାଳୟର ସୋଫା ଉପରେ ଶୋଇ ପଡ଼ିଥିଲେ । ପରଦିନ ସକାଳୁ ନିତ୍ୟକର୍ମ ସାରିଲା ପରେ ଆଇସିୟୁ ସାମ୍ନାରେ ଠିଆ ହୋଇଥିଲେ । ନର୍ସ ତାଙ୍କ ପାଖକୁ ଆସି କହିଲେ- ଆପଣଙ୍କ ମିସେସ୍ ଏବେ ବିପଦମୁକ୍ତ । ଚେତା ଫେରିଲାଣି । ଡାକ୍ତର ଏବେ ଦେଖୁଛନ୍ତି । ଡାକ୍ତର ଗଲାପରେ ଆଉ ପନ୍ଦର ମିନିଟ୍ ପରେ ଆପଣ ପେସେଣ୍ଟଙ୍କୁ ଦେଖା କରିପାରିବେ ।

ଚରମ ଆଶ୍ୱସ୍ତିରେ ସୁରେଶଙ୍କ ମୁହଁରେ ଖୁସିର ରଙ୍ଗ ବୋଳି ହୋଇଯାଇଥିଲା । ମନେ ମନେ ଈଶ୍ୱରଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କଲେ ।

ସୁରେଶଙ୍କର ଆଖି ଆଗରେ ନାଚୁଥିଲା ସ୍ୱାଗତିକାର ଲୁହ ଛଳ ଛଳ ଆଖି, ଆଶଙ୍କାରେ ଶୁଖି ଯାଇଥିବା ମୁହଁ । କାନରେ ପ୍ରତିଧ୍ୱନିତ ହେଉଥିଲା ବିଦାୟକାଳୀନ ଶବ୍ଦ "ମୋ ଦୁଇଟି ପୁଅ ତୁମକୁ ଲାଗିଲେ" । ଯାହା ହେଲେବି ସେ ତାଙ୍କ ନିଷ୍ପତ୍ତିରୁ କେବେ ଟଳିବେ ନାହିଁ । ଜାଣି ଜାଣି ସୁକାନ୍ତ ଓ ଶ୍ରୀମନ୍ତର ଜୀବନକୁ ଦୁର୍ବିସହ ହେବାକୁ ଦେବେ ନାହିଁ । ସୁରଭିର ମାଆ ହେବାର ଇଚ୍ଛାକୁ ପୂର୍ଣ୍ଣହେବାକୁ ଦେବେ ନାହିଁ । କୌଣସି ପରିସ୍ଥିତିରେ ବିବେକ ସହିତ ସାଲିସ୍ କରିବେ ନାହିଁ ।

ସୁରେଶ ଧୀର ପଦକ୍ଷେପରେ ଆଇସିୟୁ ଭିତରକୁ ପ୍ରବେଶ କଲେ । ସେଠିକାର ପରିବେଶ ଦେଖି ଚମକି ପଡିଲେ । ଅନ୍ୟ ଏକ ପୃଥିବୀ । ମୃତ୍ୟୁ ସହ ସଂଘର୍ଷର ଏକ ନିଆରା ରଣକ୍ଷେତ୍ର । ଚାରିଆଡ଼େ ମାଳମାଳ ଅକ୍ସିଜେନ୍ ସିଲିଣ୍ଡର, ସାଲାଇନ୍ । ଜୀବନ

ରକ୍ଷାର ବିଭିନ୍ନ ଆଧୁନିକ ଯନ୍ତ୍ରପାତିର ବୁଢ଼ୀଆଣି ଜାଲରେ ସେ ହଲ୍‌ଚି ଖୁନ୍ଦି ହୋଇଯାଇଛି ।

ପାଖେଇ ଯାଇଥିଲେ ସୁରଭିର ପାଖକୁ । ହାତରେ ଆଉଁଶି ଦେଉଥିଲେ ତାର କପାଳକୁ । ସୁରଭିର ମୁଖ ମଣ୍ଡଳ ମଉଳି ଯାଇଥିବା ଫୁଲପରି ଝାଉଁଳି ପଡ଼ିଛି । ଆଖିରେ ଆଖିଏ ଲୁହ । ପେଟରୁ ହାବୁକା ମାରି ଆସୁଥିବା ଶବ୍ଦ ଗୁଡ଼ିକ ତଣ୍ଟି ପାଖରେ ଅଟକି ଯାଇ ବ୍ୟକ୍ତ ହେବାର ସମସ୍ତ ଶକ୍ତି ହରାଇ ବସୁଥିଲେ । ସୁରେଶ ନିଜ ଭିତରେ ନିଜେ ତରଳି ଯାଉଥିଲେ । ଆଖିରେ ଜକେଇ ଉଠୁଥିଲା ଲୁହ । ସେ ଅନୁଭବ କରୁଥିଲେ, ସ୍ୱାଗତିକା ଯେପରି ତାଙ୍କ କାନରେ ଫିସ୍ ଫିସ୍ କରି କହୁଛନ୍ତି "ସୁରଭିର କଥା ମାନିଯା । ମୋ ପିଲାମାନେ ଗୋଟିଏ ମାକୁ ହରେଇଛନ୍ତି । ତାଙ୍କର ଆଉ ଗୋଟିଏ ମାଆକୁ ଅକାଳରେ ଝଡ଼ିବାକୁ ଦିଅନା ।" ସୁରଭିର ଅଲରା ବାଳକୁ ସାଉଁଳି ଦେଇ ସୁରେଶ କହିଲେ - ତୁମେ ବ୍ୟସ୍ତ ହୁଅନା । ତୁମେ ଯାହା ଚାହୁଁଚ ତାହାହିଁ ହେବ ।

ଆଶ୍ୱସ୍ତିରେ ସୁରଭିର ଓଠରୁ ଝରି ପଡୁଥିଲା ପେନ୍ଥାଏ ହସ ଫୁଲ । ଆଖିରୁ ଝରି ପଡୁଥିଲା ଖୁସି ଓ ସନ୍ତୋଷର ଆଞ୍ଜୁଳାଏ ଜ୍ୟୋସ୍ନା । କଅଁଳ ସୂର୍ଯ୍ୟକିରଣ ଅନ୍ଧାରିଆ ସକାଳକୁ ଉଜ୍ଜ୍ୱଳ କଲାଭଳି ଦିଶୁଥିଲା ସୁରଭିର ମୁହଁ ।



*('ସମାରୋହ' ପତ୍ରିକାର ଅଗଷ୍ଟ ୨୦୧୯ ପୂଜା ସଂଖ୍ୟାରେ ପ୍ରକାଶିତ)*

# ପ୍ରେମିକାର ପୁଅ

ପରେଶ୍‌ବାବୁ ଡେପୁଟି ସେକ୍ରେଟେରୀ ରଥବାବୁଙ୍କ ପ୍ରକୋଷ୍ଠରୁ ବାହାରି ଆସିଲେ । ତାଙ୍କ ମନରେ ଖୁସିର ଲହଡ଼ି ଖେଳିଯାଉଥିଲା । ଏକମାତ୍ର ପୁତ୍ର ପ୍ରଦୀପର ଚାକିରି ହେବା ନିଶ୍ଚିତ ବୋଲି ପ୍ରତିଶ୍ରୁତି ପାଇ ସେ ବହୁତ ଆଶ୍ୱସ୍ତ ଅନୁଭବ କରୁଥିଲେ ।

ତାଙ୍କ ମୁହଁ ଓ ଆଖିରୁ ଉଚ୍ଛୁରି ପଡୁଥିବା ଆନନ୍ଦର ଉଚ୍ଛ୍ୱାସକୁ ନିଜ ମଧ୍ୟରେ ସୀମାବଦ୍ଧ ରଖିବାକୁ ଯଥା ସମ୍ଭବ ଉଦ୍ୟମ କରୁଥିଲେ । ସେ ଅନୁଭବ କରିଥିଲେ- ସମସ୍ତେ ଅନ୍ୟର ଦୁଃଖରେ ଦୁଃଖୀ ହୁଅନ୍ତି । କିନ୍ତୁ ଖୁବ୍ କମ୍ ଲୋକ ଅନ୍ୟର ସୁଖରେ ସୁଖୀ ହୁଅନ୍ତି । ସାଧାରଣ ଜନତାର ମନ ଓ ହୃଦୟରେ ଈର୍ଷା, ପରଶ୍ରୀକାତରତାର ଧୂଆଁ କାୟା ବିସ୍ତାର କରିରହିଥାଏ । ପୁଅର ଚାକିରି ପାଇଁ ପାଇଥିବା ପ୍ରତିଶ୍ରୁତିକୁ କାନକୁ ଦି'କାନ ନକରି କିଛି ଦିନ ପାଇଁ ନିଜ ଛାତି ଭିତରେ ପୋତି ଦେବା ଉଚିତ୍ ହେବ ।

ଡେପୁଟି ସେକ୍ରେଟେରୀ ରଥବାବୁ ପରେଶ୍‌ବାବୁଙ୍କୁ ନିଜ ପ୍ରକୋଷ୍ଠକୁ ଡାକି କହିଲେ- ଆମ ଡିପାର୍ଟମେଣ୍ଟ ଅଧୀନରେ ଥିବା ଗୋଟିଏ କର୍ପୋରେସନ୍‌ରେ ପ୍ରାୟ ତିରିଶଟି ପୋଷ୍ଟ ବାହାରିଛି । ମୁଁ ସିଲେକ୍‌ସନ ବୋର୍ଡର ଚେୟାରମ୍ୟାନ୍ । ଆପଣଙ୍କ ସୁପାରିଶ ଅନୁସାରେ ଜଣକୁ ମୁଁ ଚାକିରି ଦେଇପାରିବି । ଆପଣ ଆମ ଡିପାର୍ଟମେଣ୍ଟର ଜଣେ କର୍ମନିଷ୍ଠ, ଅଧବସାୟୀ କର୍ମଚାରୀ, ଆପଣ ମୋତେ ଆପଣଙ୍କ ପୁଅର ଚାକିରି ପାଇଁ ବହୁତଥର ଅନୁରୋଧ କରିଛନ୍ତି । ଏବେ ସେ ସୁଯୋଗ ଆସିଛି ।

ରଥବାବୁଙ୍କୁ ବିନମ୍ର ନମସ୍କାର କଲେ ପରେଶ୍ ବାବୁ । କୃତଜ୍ଞତାରେ ବତୁରି ଯାଉଥିଲେ । ତାଙ୍କ କଥା ପଦକ ଯେପରି ତାଙ୍କ ଉତ୍ତପ୍ତ ମନ ଓ ହୃଦୟରେ ଶୀତଳ ଜଳ ବର୍ଷଣ କରିଥିଲା ।

ପରେଶ୍‌ବାବୁ ସେକ୍‌ସନ୍ ଅଫିସର । ସଚିବାଳୟରେ ଅବସ୍ଥାପିତ ଅନ୍ୟ କର୍ମଚାରୀମାନେ ଆସିବା ପୂର୍ବରୁ ଅଫିସ୍‌ରେ ପହଞ୍ଚନ୍ତି ଓ ଅନ୍ୟମାନେ ଅଫିସ୍ ଛାଡ଼ିବା ପରେ ସେ ଘରକୁ ଫେରନ୍ତି । ରଥବାବୁ ଯେତେ ରାତି ପର୍ଯ୍ୟନ୍ତ ଅଫିସରେ ରହନ୍ତି, ସେ ନିର୍ବିକାର ଚିତ୍ତରେ ବିନା ଦ୍ୱନ୍ଦ୍ୱ ଓ ଦ୍ୱିଧାରେ ସେ ମଧ୍ୟ ସେପର୍ଯ୍ୟନ୍ତ ରହନ୍ତି । ତାଙ୍କ କର୍ମନିଷ୍ଠା, ସାଧୁତା ଓ ନମ୍ରତା ସମସ୍ତଙ୍କୁ ବିସ୍ମିତ କରେ । ଉପସ୍ଥିତ ଉଚ୍ଚ ଅଫିସର୍‌ମାନଙ୍କର ତାଙ୍କ

ଉପରେ ଅଖଣ୍ଡ ଆସ୍ଥା ଓ ବିଶ୍ୱାସ । କିନ୍ତୁ ଅନ୍ୟ କର୍ମଚାରୀମାନେ ବାହାରକୁ କିଛି ନ କହୁଥିଲେ ହେଁ ସେମାନଙ୍କ ଛାତି ଭିତରେ ଅସନ୍ତୋଷ ଓ ଈର୍ଷା କୁହୁଳୁ ଥାଏ ।

ପତ୍ନୀ ପ୍ରଭାତୀ ପରେଶ୍‌ବାବୁଙ୍କ ଉପରେ ସବୁବେଳେ ବିରକ୍ତ ହୁଅନ୍ତି । କ୍ଲାନ୍ତ ହେଲା ପର୍ଯ୍ୟନ୍ତ ପ୍ରଭାତୀଙ୍କ ଅଭିଯୋଗ ଫର୍ଦ୍ଦ ଲମ୍ବି ଚାଲିଥାଏ- ତୁମେ ଦୁନିଆ ବାହାର ଲୋକ । ଅବୁଝା, ଅବାଗିଆ । ତମ ସାଙ୍ଗମାନେ ଅଫିସକୁ ଡେରିରେ ହଲିହଲି ଯାଆନ୍ତି । ଦିନ ଥାଉଁ ଥାଉଁ ଘରେ ପହଁଞ୍ଚନ୍ତି । ତମେ ସକାଳୁ ଉଠୁ ଉଠୁ ଅଫିସ ଯିବା ପାଇଁ ଛଟପଟ । ଅଫିସ୍‌ରୁ କେତେବେଳେ ଫେରିବ ତାର ଠିକଣା ନାହିଁ । ରାତିରେ ଅଫିସ୍‌ରେ ଶୋଇ ଯାଉନ । କେଇ ଘଣ୍ଟା ପାଇଁ ଘରକୁ କାହିଁକି ଆସୁଛ । ଦିନ ନାହିଁ, ରାତି ନାହିଁ, କାହିଁକି ଏତେ ଖଟୁଛ ? କଣ ହାତୀ ତୁମ ମୁଣ୍ଡରେ ସୁନା କଳସ ଢ଼ାଳିବ ? ସବୁବେଳେ କାଣ୍ଟିକୁଣ୍ଟି ହୋଇ ଚଳୁଛ । କେଉଁଦିନ ଖୋଲା ହାତରେ ଖୋଲା ମନରେ ଖର୍ଚ୍ଚ କରିବା ମୁଁ ଆଜି ଯାଏ ଦେଖିନି ।

ପରେଶ୍ ବାବୁ, ନିବାବିଷ୍ଣୁ । ନିର୍ବିକାର, ସ୍ଥିତପ୍ରଜ୍ଞ । ପ୍ରଭାତୀଙ୍କର ସାରଗର୍ଭକ ଭାଷଣ ପରେ ପ୍ରତିକ୍ରିୟା ସ୍ୱରୂପ ପରେଶ୍‌ଙ୍କ ମୁହଁରେ ଖେଳିଯାଏ ଚେନାଏ ହାସ । ତାପରେ ନିରବତା କିଛି ସମୟ ପାଇଁ ଘରର ପରିବେଶକୁ ଗୁମ୍‌ସୁମ୍ କରିଦିଏ ।

ପୁଅ ପ୍ରଦୀପର ଚାକିରି ହେଲାପରେ ସେ ପ୍ରଭାତୀଙ୍କ ସବୁ ପ୍ରଶ୍ନର ଉତ୍ତର ଦେବେ । ତାଙ୍କର ଅଧ୍ୟବସାୟ ଓ କର୍ମନିଷ୍ଠା ପାଇଁ ତାଙ୍କ ପୁଅ ସରକାରୀ ଚାକିରି ପାଇବାକୁ ଯାଉଛି । ଆଡ଼ିସନାଲ୍ ସେକ୍ରେଟାରୀ ଭୁବନେଶ୍ୱର ଖଣ୍ଡଗିରି ପାଖରେ ପ୍ଲଟଟିଏ ତାଙ୍କ ପାଇଁ ଯୋଗାଡ଼ କରି ଦେଇଥିଲେ । ଶସ୍ତାରେ । ନ ହେଲେ ସେ କିଏ ଆଉ ଭୁବନେଶ୍ୱର ଭଳି ମହରଗିଆ ସହରରେ ପ୍ଲଟ କିଏ । ସବୁ ଈଶ୍ୱରଙ୍କର ଆଶୀର୍ବାଦ । ପୁଅର ଚାକିରି ହେବା ପାଇଁ ଡେପୁଟି ସେକ୍ରେଟେରୀଙ୍କ ଦୃଢ଼ ପ୍ରତିଶ୍ରୁତି ବିଷୟରେ ସେ ସାଙ୍ଗମାନଙ୍କୁ କହି ନାହାଁନ୍ତି କିମ୍ବା ପ୍ରଭାତୀକୁ ଜଣାଇ ନାହାଁନ୍ତି । ତାଙ୍କର ବିଶ୍ୱାସ, କହିଦେଲେ ହେଲା କାମ ହେବ ନାହିଁ । ଈଶ୍ୱର ସବୁବେଳେ ଗର୍ବ ଗଞ୍ଜନ କରନ୍ତି । କାହାର ଅହଂକାର, ଗର୍ବ, ଆସ୍ଫାଳନ ସେ ସହ୍ୟ କରନ୍ତି ନାହିଁ । ପୁଅର ସରକାରୀ ଚାକିରି ତାଙ୍କର କର୍ମନିଷ୍ଠା ଓ କଠିନ ପରିଶ୍ରମ ପାଇଁ ଈଶ୍ୱରଙ୍କର ପୁରସ୍କାର ବୋଲି ସେ ଅନୁଭବ କରନ୍ତି । ନଚେତ୍ କେତେ କୃତୀ ଛାତ୍ର ଚାକିରିଟିଏ ପାଇଁ ବାର ଓଳି ଶୁଣ୍ଢିପିଣ୍ଡା ହେଉଥିବା ବେଳେ ତାଙ୍କ ପୁଅ ସରକାରୀ ଚାକିରି ପାଇବାର ଆଶା ଆଜି ଉଜ୍ଜ୍ୱଳ । କିଛିଦିନ ପରେ ବାସ୍ତବତାରେ ରୂପାନ୍ତରିତ ହେବ ।

ପରେଶବାବୁଙ୍କ ଗୋଟିଏ ପୁଅ ପ୍ରଦୀପ ଓ ଗୋଟିଏ ଝିଅ ପ୍ରତିମା । ପ୍ରଦୀପ

ବିକମ୍ ପାସ କରି ବିଭିନ୍ନ କୋଚିଂ ଦୁଇ ବର୍ଷ ହେବ ନେଲାଣି । କିନ୍ତୁ ଚାକିରିର ନାଁ ଗନ୍ଧ ନାହିଁ । ବିଭିନ୍ନ ପ୍ରତିଯୋଗିତା ପରୀକ୍ଷାରେ ପ୍ରତିଦ୍ୱନ୍ଦ୍ୱିତା ଏତେ ତୀବ୍ର ଯେ ଚାକିରିଟିଏ ପାଇବା କଷ୍ଟସାଧ୍ୟ । ଝିଅ ପ୍ରତିମା କ୍ୟାପିଟାଲ ହାଇସ୍କୁଲରେ ଦଶମ ଶ୍ରେଣୀର ଛାତ୍ରୀ । ପୁଅ ଝିଅ ଦୁହେଁ ଶାନ୍ତ, ଶିଷ୍ଟ, ନମ୍ର । ପରେଶଙ୍କର କାର୍ବନ୍ କପି । ପ୍ରଦୀପ କୃତୀ ଛାତ୍ର । ମାଟ୍ରିକ୍ ଠାରୁ ବିକମ୍ ପର୍ଯ୍ୟନ୍ତ ସବୁ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଛି ।

ପରେଶ୍ ମନେ ମନେ ଭାବନ୍ତି, ପ୍ରଦୀପର ଚାକିରି ହୋଇଗଲା ପରେ ବାପ ପୁଅ ମିଶି ପ୍ରତିମାର ବାହାଘର ପାଇଁ ଆବଶ୍ୟକୀୟ ଅର୍ଥ ସଞ୍ଚୟ କରିବେ । ଈଶ୍ୱରଙ୍କ କୃପାରୁ ତାର ବାହାଘର ଭଲ ଜାଗାରେ ଭଲରେ ଭଲରେ ହୋଇଯିବ ବୋଲି ତାଙ୍କର ଆଶା ।

ପରେଶ୍‌ବାବୁଙ୍କ ବାପା, ମା ଗାଁରେ ରହନ୍ତି । ସେ ପ୍ରତି ମାସରେ ଥରେ ଗାଁ ଆଡ଼େ ଯାଇ ବୁଲି ଆସନ୍ତି । ବାପା ମାଆଙ୍କ ପାଇଁ ସବୁ ଆବଶ୍ୟକୀୟ ଜିନିଷ ଓ ମାସକ ପାଇଁ ସବୁ ଔଷଧ ନେଇ ଦେଇ ଆସନ୍ତି । ପରେଶ୍‌ବାବୁଙ୍କ ଗୋଟିଏ ବୋଲି ଭଉଣୀ, ରୀତା । ପ୍ରୋଭିଡେଣ୍ଟ ଫଣ୍ଡରୁ ଟଙ୍କା ଉଠାଇ ୧୫ ବର୍ଷ ତଳେ ତାର ବାହାଘର ଜାକ୍‌ଜମକରେ ଗାଁରେ  କରିଥିଲେ । ବାପା, ମାଆ ପରେଶ୍‌ବାବୁଙ୍କ ଉପରେ ଭାରି ଖୁସି ହୋଇଯାଇଥିଲେ । ବାପା, ମାଆ କହନ୍ତି- ପୁଅଟା ଆମର ମୁଣ୍ଡ ଉପରୁ ପାହାଡ଼ ଭଳି ବୋଝଟିଏ ଏକା ଏକା ଉଠାଇ ଦେଲା । ଭାଗ୍ୟରେ ଥିଲେ ଏପରି ପୁଅ ମିଳେ ।

ବାପା ମାଆ ପରେଶବାବୁଙ୍କ ସହିତ ଭୁବନେଶ୍ୱରେ ରହିବାକୁ କେବେ ଚାହିଁ ନାହାନ୍ତି । ଗାଁର ଖୋଲା ମେଲା ପରିବେଶ ଉଭୟଙ୍କୁ ବହୁତ ଭଲ ଲାଗେ । ଗାଁ ଲୋକ, ଚୁଡ଼ାବାଲା, ମୁଢ଼ିବାଲା, ପରିବାବାଲା, ଗଉଡୁଣୀ ପ୍ରଭୃତି ବିଭିନ୍ନ ଲୋକମାନଙ୍କ ସଂଗେ ଗପସପରେ ସକାଳଟା କିପରି ସନ୍ଧ୍ୟାରେ ରୂପାନ୍ତରିତ ହୋଇଯାଏ ଜଣା ପଡ଼େନା । ଆଉ ସବୁଠୁ ବଡ଼କଥା ହେଲା ସ୍ୱାଧୀନତା । ନିଜ ଇଚ୍ଛାରେ ଖାଇବା, ନିଜ ଇଚ୍ଛାରେ ଚଳିବା, ନିଜ ଇଚ୍ଛାରେ ଖର୍ଚ୍ଚ କରିବାରେ ଯେଉଁ ସ୍ୱଚ୍ଛନ୍ଦତା, ତାହା ଗାଁରେ ହିଁ ଭରପୂର ମିଳେ । ବାପା ଏବେବି ପୁରୋହିତ କାର୍ଯ୍ୟ କିଛି କରନ୍ତି । ଯାହା ଅର୍ଥ ଓ ସମ୍ମାନ ମିଳେ ଦୁହିଁଙ୍କର ଆନନ୍ଦର ସୀମା ନଥାଏ । ମାଆ କହେ- ଏବେ ହାତ, ଗୋଡ଼ ଚଳୁଛି । ଆମେ ଯାଇ କାହିଁକି ପୁଅବୋହୂଙ୍କ ଉପରେ ବୋଝ ହେବୁ । ଯେବେ ହାତ ଗୋଡ଼ ଅଚଳ ହେବ, ତେବେ ଯାଇଁ ଯିବୁ ।

ପ୍ରତି ମାସ ଦ୍ୱିତୀୟ ଶନିବାର ଓ ରବିବାର ଛୁଟି । ପରେଶ ଶୁକ୍ରବାର ଅଫିସ୍ ସାରି ଗାଁକୁ ଆସି ରାତି ୮ଟା ବେଳେକୁ ଗାଁରେ ପହଞ୍ଚନ୍ତି । ମାଆ କେତେ ଜାତି ଭଜା, ତରକାରୀ

କରି ତାଙ୍କ ବାଟକୁ ଚାତକ ପରି ଚାହିଁ ରହିଥାଏ । ଦେଖିଲେ କୋଟି ନିଧି କରେ । ସନ୍ଧ୍ୟା ସାଢ଼େ ୭ଟା ପରେ ଗାଁ ପୁରା ନିଶୁନ୍ । ଖାଁ ଖାଁ ଲାଗେ । ପରେଶବାବୁ ବସ୍‌ରୁ ଓହ୍ଲାଇ ଘର ଆଡ଼େ ମୁହାଁଇଲେ ପ୍ରଥମେ ଆସେ ଗାଁ ଆମ୍ବତୋଟା । ତା ପରେ ଧାଡ଼ି ଧାଡ଼ି ଘର ରାସ୍ତାର ଦୁଇ ପାର୍ଶ୍ୱରେ । ଗାଆଁ ମଝିରେ ତାଙ୍କ ଘର ।

କିନ୍ତୁ ସେଦିନ ଗାଆଁବସ୍‌ର ଚକ ପଙ୍କ୍‌ଚର ହେବା ଯୋଗୁ ପରେଶ ଗାଆଁରେ ପହଞ୍ଚିଲା ବେଳକୁ ରାତି ଆଠଟା ହୋଇଯାଇଥିଲା । ବୋଧହୁଏ ସେଦିନର ତିଥି ଥିଲା ପୂର୍ଣ୍ଣମୀ । ରାସ୍ତାର ଉଭୟ ପାର୍ଶ୍ୱରେ ଥିବା ଆମ୍ବ ଗଛର ଛାଇ ଆଉ ପୂନେଇଁ ରାତିର କଇଁଫୁଲିଆ ଜହ୍ନ ବିଞ୍ଚି ଚାଲିଥିଲା ମୁଠାମୁଠା, ମିଠା ମିଠା ସ୍ମୃତି । କେତେ ଅଜଣା, ଅଚିହ୍ନା ଫୁଲର ସୁରଭି ପଥକୁ ସୁରଭିତ କରୁଥିଲା । ଆମ୍ବତୋଟାର ନୀଳ ପଣତ ତଳେ ଅନ୍ଧାର ଆଲୁଅର ଲୁଚକାଳି ଖେଳ ବେଶ ମନୋହର ଥିଲା ।କିନ୍ତୁ ତୋଟା ଭିତରୁ ହଠାତ୍ ତାଙ୍କ ଆଗରେ ଆବିର୍ଭୁତ ଏକ ନାରୀ ମୂର୍ତ୍ତୀ ଦେଖି ପରେଶ୍‌ବାବୁ ଚମକି ପଡ଼ିଲେ । ତାଙ୍କ ଛାତି ଭିତରଟା ହଲ୍‌ଚଲ୍ ହୋଇଗଲା ।

- "ପରେଶ୍ ଭାଇ । ଟିକେ ଶୁଣିବେ" । ନାରୀର କଣ୍ଠ ସ୍ୱର ।

ପରେଶ୍‌ବାବୁଙ୍କୁ ସେ ସ୍ୱର ଚିହ୍ନା ଚିହ୍ନା ଲାଗୁଥିଲା । ଆମ୍ବତୋଟାର ଗହଳ ଅନ୍ଧାରର ନିର୍ଜନତା ଭିତରେ ଏକାକିନୀ ନାରୀକୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇଥିଲେ ।

-କିଏ ତୁମେ ? - ଭୟ, ଆଶଙ୍କା, କୌତୁହଳ ସବୁ ଫେଣ୍ଟାଫେଣ୍ଟି ହୋଇ ତାଙ୍କ ମନ ଭିତରେ ଡିଆଁ ମାରୁଥିଲେ ।

- ସୁମି, ତୁମ ସୁମି

- କ'ଣ କେଶବ ଦାଦାଙ୍କ ଝିଅ ?

- ହଁ ।

ପରେଶ୍‌ବାବୁଙ୍କ ଆପାଦ ମସ୍ତକ ଏକ ଅଦ୍ଭୁତ ଶିହରଣ ଅନୁଭବ କଲେ । ନିଜକୁ ପ୍ରକୃତିସ୍ଥ କରି କହିଲେ, - କ'ଣ ହେଲା ସୁମି ? ଭଲ ଅଛୁ ?

ସୁମି କହିଲା -ତୁମ ସାଙ୍ଗରେ କଥା ହେବି ବୋଲି ଛଅ ମାସ ହେବ ଭାବୁଛି । ଗାଁର ରକ୍ଷଣଶୀଳ ପରିବେଶ ଭିତରେ ସୁଯୋଗ ସୁବିଧା ପାଇନି । ଶୁଣିଲି, ଆଜି ତୁମର ଆସିବାର ଅଛି । ଘଣ୍ଟାଏ ହେବ ଏଠି ଅପେକ୍ଷା କରିଛି ।

ପରେଶ୍‌ବାବୁଙ୍କ ପାଟି ଥଥ ମମ ହେଉଥିଲା । ପେଟ ଭିତରୁ ବାହାରି ଆସୁଥିବା ଶବ୍ଦ ସବୁ ଆକ୍ତାମାକ୍ତା ହୋଇ ଓଠ ପାଖକୁ ଆସିଲାବେଳେକୁ ବ୍ୟକ୍ତ ହେବାର ଶକ୍ତି ସବୁ

ହରେଇ ବସୁଥିଲେ ।

କିଛି ସମୟର ନିରବତା । ଦୁଃଖ, ଅଶାନ୍ତି, ଯନ୍ତ୍ରଣା ଓ ଅପମାନ ବୋଧର ମିଶାମିଶି ଭାବଟିଏ ସୁମିର ହୃଦୟରୁ ଝରି ଆସୁଥିଲା । ତାହା ଧୀରେ ଧୀରେ ଲୁହ ହୋଇ ସୁମିର ଆଖିଧାରାରୁ ନିରବରେ ବହିବାକୁ ଲାଗିଲା । ତାର ଆଖିର ଲୁହରେ ଧୋଇ ହୋଇଯାଉଥିଲା ତାଙ୍କ ଉପରେ ସୃଷ୍ଟି ହୋଇଥିବା ପ୍ରସ୍ତ ପ୍ରସ୍ତ ଅଭିମାନ ସବୁ । ନିରବତାର ଲୁହ ଧାର କୋହମିଶା କାନ୍ଦରେ ପରିଣତ ହେଲା । କୋହ ଭରା କଣ୍ଠରେ ସେ କହିଲା – ମୋ ପୁଅ ରମେଶ ବି.ଏ. ପାସ୍ କରି ଘରେ ବସିଛି । ଘରେ ବଢ଼ିଲା ଝିଅ । ତାକୁ ବାହା କରିବାକୁ ମୁଁ କିଛି ଥଳ କୂଳ ପାଉନି । ରମେଶର ବାପା ଛଅ ମାସ ହେବ ବାବାଜୀ ହୋଇ ବୃନ୍ଦାବନ ଚାଲିଯାଇଛନ୍ତି । ମୁଁ କଣ କରିବି ଜାଣିପାରୁନି । ଚାରିଆଡ଼େ ମୋତେ ଅନ୍ଧାର ଦିଶୁଛି । ରମେଶ ପାଇଁ ଚାକିରିଏ ଯୋଗାଡ଼ କରି ଦେଲେ ଆମେ ବଞ୍ଚି ଯାଆନ୍ତୁ । ନହେଲେ ଆମେ ଭାସିଯିବୁ ।

ପରେଶ୍ ବାବୁଙ୍କ ଆଖି ଓଦା ଓଦା ହୋଇ ଆସିଲା, ବାଷ୍ପାକୁଳ କଣ୍ଠରେ କହିଲେ – କାଲି ସକାଳେ ଆମ ଘରକୁ ରମେଶକୁ ପଠାଇବୁ । ତାର ସାର୍ଟିଫିକେଟ୍‌ର କପି ନେଇ ଆସିବ । ମୁଁ ଚେଷ୍ଟା କରିବି । ତେଣିକି ଭଗବାନଙ୍କ ଇଚ୍ଛା ।

– ତୁମକୁ ଜୀବନରେ କିଛି ମାଗିନି । ପୁଅ ପାଇଁ ତମକୁ ହାତପାତି ମାଗୁଛି । ମୋ ପୁଅ ତୁମକୁ ଲାଗିଲା ।

ସୁମି ଆଉ କିଛି କହିବାକୁ ଚାହୁଁଥିଲେହେଁ କୋହର ଉଚ୍ଛ୍ୱାସ ତାର କଣ୍ଠରୁଦ୍ଧ କରି ଦେଉଥିଲା ।

ପରେଶ୍‌ଙ୍କ ହୃଦୟରେ ଦୁର୍ବିସହ ଯନ୍ତ୍ରଣା । ମନଟା ପରସ୍ତ ପରସ୍ତ ହୋଇ ଭାଙ୍ଗି ପଡୁଥିଲା । ଅପରାଧବୋଧର ତୀବ୍ର ଆଘାତ ତାଙ୍କ ଛାତିକୁ କୋରି ଦେଉଥିଲା ।

ଘରେ ପହଞ୍ଚିଲା ପରେ ବାପା ମାଆ ତାଙ୍କୁ ଦେଖି ଆନନ୍ଦରେ ଅଧିର ହୋଇ ପଡ଼ିଲେ । ଖାଇ ସାରି ରାତିରେ ଶୋଇବାକୁ ଗଲାବେଳକୁ ଅତୀତର ପୃଷ୍ଠା ପରେଶ୍ ବାବୁଙ୍କ ଆଖି ଆଗରେ ଫର୍ଦ୍ଦ ଫର୍ଦ୍ଦ ହୋଇ ଝଲସି ଉଠୁଥିଲା ।

ସେ ଗ୍ରୀଷ୍ମଛୁଟିରେ କଲେଜରୁ ଘରକୁ ଫେରିଥାନ୍ତି । ବିଜେବି କଲେଜରେ ଆଇ.ଏ.ର ୧ମ ବର୍ଷ ଛାତ୍ର । ବାପା କାହାର ଘର ପ୍ରତିଷ୍ଠା ପୂଜା କରିବା ପାଇଁ ଯାଇଥାନ୍ତି । ମାଆ ଗାଁ ପୋଖରୀକୁ ଗାଧୋଇବାକୁ ଯାଇଥାଏ । ପରେଶ୍ ଘରେ ସକାଳେ ବସି ଖବରକାଗଜ ଉପରେ ଆଖି ବୁଲାଇ ଆଣୁଥିବା ସମୟରେ ଘର ଭିତରକୁ ଦୌଡ଼ି ପଶିଆସିଲା

ଖଣ୍ଡାୟତ ସାହିର କେଶବ ଦାଦାଙ୍କ ଝିଅ ସୁମି । ଫିସ୍ ଫିସ୍ କରି କହିଦେଲା ପାଟି ଚୁପ୍ । ମୁଁ ଏଇ ସିନ୍ଦୁକ ସନ୍ଧିରେ ଲୁଚିଛି । କାହାକୁ କହିବନି । ଆମେ ଲୁଚକାଳି ଖେଳୁଛୁ ।

ଗାଁ ହାଇସ୍କୁଲର ନବମ ଶ୍ରେଣୀ ଛାତ୍ରୀ ସୁମିତା ରାଉତ । କଅଁଳ ଛନ୍ ଛନ୍ କୁମାରୀ କନ୍ୟା । ଆଦ୍ୟ ଯୌବନରେ ଛଳଛଳ କଳ କଳ । ଶିରି ଶିରି ପବନରୁ ପଣତେ ପବନ ଆଣି ମଳୟ ଘର ଭିତରକୁ ଧସେଇ ପଶି ଆସୁଥିଲା । ପରେଶ ବସିଥିଲା ଖଟ ଉପରେ । ସାମ୍ନାରେ ସିନ୍ଦୁକ ସନ୍ଧିରେ ଲୁଚିଛି ସୁମି । ତା ମୁହଁଟି ସ୍ପଷ୍ଟ ଦେଖାଯାଉଅଛି । ସାମ୍ନାରେ ହାତ ପାହାନ୍ତାରେ କୋଣାରକୀ ଅଳସୀ କନ୍ୟା । ହାସ୍ୟମୟୀ, ଲାସ୍ୟମୟୀ । ପରେଶ ତାକୁ ଅପଲକ ନୟନରେ ଅନାଇ ରହିଥିଲା । ଲାଜ ଓ ହସର ଅପୂର୍ବ ସମୀକରଣରେ ତା ଚେହେରା ଶିଶିରସିକ୍ତ ରକ୍ତ ଗୋଲାପଟିଏ ପରି ଲୋଭନୀୟ ହୋଇଉଠିଲା । ଏକ ଅବର୍ଣ୍ଣନୀୟ ଆବେଗ ଓ ଉତ୍କଣ୍ଠାରେ ପରେଶ ହତବାକ୍ ହୋଇ ଯାଇଥିଲା । ତା ମନ ସମୁଦ୍ରର ଢେଉ ପରି ଅସ୍ଥିର, ଅଧିର ଓ ଉଦ୍‌ଗ୍ରୀବ । ପରେଶ ଧୀର ପଦକ୍ଷେପରେ ଯାଇ ଦୁଇ ବ୍ୟଗ୍ର ବାହୁରେ ସୁମିକୁ ଆଲିଙ୍ଗନ କଲା । ସୁମିର କମ୍ପିତ ବକ୍ଷ ଉପରେ ତାର ଉତ୍ତପ୍ତ କପୋଳକୁ ଆଉଜାଇ ଦେଲା । ଦୁଇ ଜଣଙ୍କ ଆଖି, ଓଠ ଚଞ୍ଚଳ ହୋଇ ଉଠିଲା । ଦୁହେଁ ନିଜ ଭିତରେ ତରଳି ଯାଉଥିଲେ । ପ୍ରଥମ ପ୍ରେମ, ପ୍ରଥମ ସ୍ପର୍ଶ , ଅନନ୍ୟ ସେ ଅନୁଭୂତି ।

ଦ୍ୱାର ମୁହଁରେ ପାଦଶବ୍ଦ । ପରେଶ ବାହାରି ଆସିଲା ବାହାରକୁ । ମାନି, ସାନି, ରୁବିର ପ୍ରଶ୍ନ - ସୁମି ଏଠି କେଉଁଠି ଲୁଚିଛିକି ? ତାକୁ କେତେବେଳୁ ଖୋଜୁଛୁ, ପାଉନୁ । ପରେଶ ଉତ୍ତର ଦେଲା- ସୁମି ? ନାଇଁତ । ସିଏ ଆମଘର ଆଡ଼େ ଆସିନି ।

ଲୁଚକାଳି ଖେଳରେ ସୁମି ଜିତି ଯାଇଥିଲା । କିନ୍ତୁ ନିଜକୁ ହଜେଇ ଦେଇଥିଲା ପରେଶ ଭାଇର ପ୍ରଥମ ସ୍ପର୍ଶର ଅପୂର୍ବ ମାଦକତାରେ । ମନ ହେଉଥିଲା ସେ ନିଆଁରେ ପତଙ୍ଗଭଳି ଝାସ ଦେବା ପାଇଁ । ସାଙ୍ଗମାନେ ଚାଲିଗଲା ପରେ ସିନ୍ଦୁକ ସନ୍ଧିରୁ ବାହାରି ତା ଘରକୁ ତରତର ହୋଇ ଚାଲିଗଲା । ମନରେ ଭୟ ଆନନ୍ଦ, ଆଶା ଆଉ ଆଶଙ୍କା ଫେଣ୍ଟା ଫେଣ୍ଟି ହୋଇ ନୃତ୍ୟ କରୁଥିଲେ ।

ଦିନେ ପରେଶ୍ ଦେଖିଲା ଝରକା ବାଟେ । ସୁମି ଯାଉଛି ସ୍କୁଲକୁ ଏକୁଟିଆ । ଛାତିରେ ଛାତିଏ ବହିର ବୁଜୁଳି । କାଗଜରେ କିଛି ଲେଖିଦେଇ ଗୋଡ଼ିରେ ଜାକି ଅତି ସନ୍ତର୍ପଣରେ ଫିଙ୍ଗିଦେଲା । କାଗଜରେ ଲେଖାଥିଲା - "ଆଜି ସନ୍ଧ୍ୟା ୭ଟାରେ । ସୁନାରି ଡୁବୁରିର ପଥର ଚଟାଣ" । ସୁମି କୌତୁହଳରେ କାଗଜ ଟୁକୁରାଟିକୁ ପଢ଼ି ଦେଇ ହୋଇଥିଲା ଆନମନା । ସେ ଜାଣିଦେଲା ପରେଶ ଭାଇର ଚିଠି । ପରେଶ ଭାଇ ଘରର ଝରକାରୁ

ଆସିଛି । ପରେଶ ଭାଇର ଅକ୍ଷର ।

ଗାଆଁର ପରିବେଶରେ କୁମାରୀମାନେ ସନ୍ଧ୍ୟା ଦୁଇ ଘଣ୍ଟା ପାଇଁ ହୋଇଯାଆନ୍ତି ସ୍ୱାଧୀନ । ଗାଁର ଅଲିଖିତ ସଂବିଧାନରେ ଗାଁ ଆମ୍ବ ତୋଟାକୁ ଯିବା ପାଇଁ ଅବାଧ ସ୍ୱାଧୀନତା । ଦଳ ଦଳ ହୋଇ ଯାଇ ନିତ୍ୟକର୍ମ ସାରି ପୋଖରୀରେ ଧୋଇ ଧାଇ ହୋଇ ଘରକୁ ଫେରନ୍ତି । ସାଙ୍ଗମାନଙ୍କ ମେଳରୁ ଖସି ଯାଇ ପହଞ୍ଚେ ତୋଟାର ଗୋଟାଏ ପାର୍ଶ୍ୱରେ ଥିବା ସୁନାରି ଡୁବୁରିର ପାଦଦେଶର ପଥର ଚଟାଣ । ତାକୁ ଘେରି ରହିଛି କୋରେହି ଓ କାଶତଣ୍ଡୀର ବୁଦା । ସମାଜର ଶୃଙ୍ଖଳା ବାହାରେ ଅନ୍ୟ ଏକ ସଂକୁଚିତ କ୍ଷୁଦ୍ର ଓ ଏକାନ୍ତ ନିଭୃତ ପୃଥିବୀ । କେହି ଯାଆନ୍ତିନି ସନ୍ଧ୍ୟା ପରେ ସେଠିକି । ରାତି ଓହ୍ଲାଇ ଆସୁଥିଲା । ପତଳା କୁହୁଡ଼ି ଆଉ ଜ୍ୟୋସ୍ନା ବିଞ୍ଚି ହୋଇ ପଡୁଥିଲା । ମଧୁଛନ୍ଦା ରାତିର ଯାଦୁକାରୀ ରୂପ । ପରେଶ ସୁମିକୁ ଦେଖି ଆନନ୍ଦରେ ଅଧିର ହୋଇ ପଡ଼ିଲା । ଅଗ୍ନିଶିଖା ଭଳି ଜ୍ୱଳନ୍ତ ଆଦ୍ୟ ଯୌବନ । ଉଜ୍ଜ୍ୱଳ ଦୀପ ପରି ଆଖି । ତାର ବଢ଼ନ୍ତ ଦେହ ନାଲି ଛିଟ ରଂଗର ଫ୍ରକ୍‌ଟିକୁ ଛିଣ୍ଡାଇ ଦେଇ ବାହାରକୁ ବାହାରି ଆସିବାକୁ ଅସ୍ତବ୍ୟସ୍ତ ହେଉଥିଲା ।

ଏକ ଅବ୍ୟକ୍ତ ଆବେଗରେ ଦୁହେଁ ଦୁହିଁଙ୍କୁ ନିରବରେ ଆଲିଙ୍ଗନ କରି କିଛି ସମୟ ରହିଥିଲେ । ମିଳନର ଭାଷା ସବୁବେଳେ ନିରବ । ସେ ଭାଷାରେ ହୃଦୟର ବହୁ କଥା ଅବ୍ୟକ୍ତ ରହିଯାଏ । ଗ୍ରାମ ସଂବିଧାନର ଚଉହଦୀ ଭିତରେ ଅଧିକାଂଶ ସନ୍ଧ୍ୟାରେ ଲାଗିରହିଥାଏ ଗୋପନରେ ସେ ଦୁହିଁଙ୍କ ମିଳନ ପର୍ବ ।

ଗ୍ରୀଷ୍ମଛୁଟୀ ସରିବାକୁ ଦିନଟିଏ ବାକି ଅଛି । ପରେଶ ସୁମିକୁ କୋଳକୁ ଆଉଜେଇ ନେଇ ପଚାରିଲା- ଏପରି କିଛି କଥା ଅଛି,ଯାହାକୁ ଯେତେ କହିଲେ ବି କ୍ଲାନ୍ତ ଲାଗେନା । ବାରମ୍ବାର କହିଲେ ବି ପ୍ରତିଥର ପ୍ରଥମଥର କହିଲା ଭଳି ଉତ୍ତେଜକ ଆଉ ଉଦ୍ଦୀପକ ମନେ ହୁଏ ।

ସୁମି ଲାଜୁଆ ହସଟିଏ ହସି କହିଲା -ମୁଁ କହିବି ।

ପରେଶ ତାର ଦୁଇ ହାତକୁ ତା ଛାତିରେ ଜାକିଧରି କହିଲା – କୁହ ସୁମି !

ସୁମି ହସି ହସି କହିଲା - ଏତେ ଦୂରରେ ନୁହେଁ । ମୁଁ କେବଳ ତୁମ କାନରେ କହିବି ।

ପରେଶ ଆଜ୍ଞାଧୀନ ଛାତ୍ରପରି ଆହୁରି ପାଖକୁ ଘୁଞ୍ଚ ଆସିଲା । ପରେଶର କାନ ପାଖକୁ ମୁହଁନେଇ ଓଦା ଓଦା କଣ୍ଠରେ ସୁମି କହିଲା- ମୁଁ ତୁମକୁ ଭଲ ପାଏ ।

ପୂଜା ଛୁଟି,ଧାନ କଟା ଛୁଟି ଓ ଗ୍ରୀଷ୍ମ ଛୁଟିରେ ପରେଶ ଗାଁକୁ ଆସିଲେ ସମସ୍ତଙ୍କ

ଅଜ୍ଞାତରେ ସେ ଛୋଟିଆ ନିରୋଳା ପୃଥିବୀରେ ଦିବସ ରଜନୀର ସନ୍ଧିକ୍ଷଣରେ ସେମାନଙ୍କ ମିଳନପର୍ବ ଜମି ଉଠେ। କିନ୍ତୁ ଦୁହେଁ କେବେ ଲକ୍ଷ୍ମଣରେଖା ଅତିକ୍ରମ କରିନଥିଲେ। ବିବାହ ପରେ ହିଁ ସଂଭୋଗ, ଏ ଧାରଣା ତାଙ୍କ ମନ ଓ ଚେତନାରେ ଦୃଢ଼ୀଭୂତ ହୋଇଥିଲା।

ସୁମି ଗାଁ ସ୍କୁଲରେ ମାଟ୍ରିକ୍ ପାସ୍ କରି ଘରେ ରହିଲା। ଫ୍ରକ୍ ଛାଡ଼ି ଶାଢ଼ି ପିନ୍ଧିଲା। ପରେଶ୍ ବିଏ ପାସ୍ କରି ଗୋଟିଏ କଂପାନୀରେ ଚାକିରି ପାଇ ୬ ମାସ ଟ୍ରେନିଂ ପାଇଁ ହାଇଦ୍ରାବାଦ ଚାଲିଗଲା। ଗାଁର ସାଧୁ ପରିଡ଼ାଙ୍କ ବଡ଼ ପୁଅ ସହିତ ସୁମିର ବାହାଘର ପ୍ରସ୍ତାବ ଆସିଲା। ସାଧୁ ପରିଡ଼ା ଗାଁର ଜଣେ ସମ୍ମାନୀୟ ବ୍ୟକ୍ତି। ଆଠ ଏକର ଭଲ ଫସଲ ହେଉଥିବା ଚଷ ଜମି, ଚାରି ବଖରା କୋଠାଘର, ଘରକୁ ଲାଗି ବଡ଼ ବାଡ଼ି। ପୁଅ ସନାତନ ଶାନ୍ତ, ଶିଷ୍ଟ, ନମ୍ର ଓ ଧର୍ମ ପରାୟଣ। ଆଇ.ଏ. ପାସ୍ କରିବା ପରେ ଗାଁ ମଝି ଦାଣ୍ଡରେ ଡେଜରାତି ଦୋକାନ କରିଥିଲା। ଦୋକାନ ଚଳାଇବାରେ ସନାତନର ବିଶେଷ ଦକ୍ଷତା ଥିଲା। ସାଧୁ ପରିଡ଼ା ଆଦର୍ଶବାଦୀ। ଯାନି ଯୌତୁକ କିଛି ଦାବୀ କରିନଥିଲେ। ସୁମି ବାପା ମାଆଙ୍କର ଆନନ୍ଦ କହିଲେ ନ ସରେ। ତାଙ୍କ ପାଦ ତଳେ ଲାଗୁ ନଥିଲା। ଏ ପରି ପ୍ରସ୍ତାବ ହାତ ଛଡ଼ା କରିବାକୁ ସେମାନେ ଚାହିଁ ନଥିଲେ। ସୁମିର ବାପା, ମାଆ ଯେତିକି ଉଲ୍ଲସିତ ହେଉଥିଲେ, ସୁମି ସେତିକି ବ୍ୟସ୍ତ ବିବ୍ରତ ହେଉଥିଲା। ଅଜାଣତରେ ଆଖିରୁ ଧାର ଧାର ଲୁହ ବୋହି ଯାଉଥିଲା। ଗୋପନରେ ସମସ୍ତ ବିଷୟ ଜଣାଇ ଚିଠିଟିଏ ଲେଖି ପରେଶ୍ ପାଖକୁ ପଠାଇ ଦେଲା। ବାପା, ମାଙ୍କ ପାଖରେ ପ୍ରତିବାଦର ସ୍ୱର ଉଠାଇବାକୁ ସିଏ ସାହସ ଜୁଟାଇ ପାରିନଥିଲା।

ଚିଠିଟା ପାଇ ପରେଶ୍ ଆସି ଗାଁରେ ପହଞ୍ଚିଲା। ସୁମିକୁ ବାହାହେବା ପାଇଁ ମାଆଙ୍କ ଆଗରେ ଦୃଢ଼ ଇଚ୍ଛା ପ୍ରକାଶ କଲା। ଲୁହ ଛଳ ଛଳ ଆଖିରେ ମାଆ କହିଲେ – ଆରେ ବାବୁ। ଆମେ ମିଶ୍ରଘର। ବ୍ରାହ୍ମଣଙ୍କ ଭିତରେ ଶ୍ରେଷ୍ଠ। ପଣ୍ଡା ବ୍ରାହ୍ମଣ ଘରେତ ଆମେ ଆଜି ପର୍ଯ୍ୟନ୍ତ ବନ୍ଧୁବାନ୍ଧିନୁ। ସୁମି ଚଷା ଘରର ଝିଅ। ସେ ଆମ ଠାକୁର ଘର, ଈଶାଣ କୋଣ ଛୁଇଁ ପାରିବନି। ପ୍ରଳୟ ହୋଇଯିବ। ବ୍ରାହ୍ମଣ ସମାଜ ଆଉ ରାଉତ ଘର ଭିତରେ ବିବାଦ ଓ ସଂଘର୍ଷ ମୁଣ୍ଡ ଟେକିବ। ଜାତି ପାଇଁ ଏ ଲୋକେ ରକ୍ତରେ ହୋରି ଖେଳିବେ। ଆମେ ଦୁଇ ଜଣ ଏ ସବୁ ସହିପାରିବୁନି। ଅକାଳରେ ଆମେ ଝଡ଼ି ପଡ଼ିବୁ। ଏତେ ଅଶାନ୍ତି ଭିତରେ ତୁ ତାକୁ ବାହା ହୋଇ ଶାନ୍ତି କିପରି ପାଇବୁ? ଏବେ ତୋର, ସୁମିର ସଂପର୍କ ବିଷୟ ଜଣା ପଡ଼ିଲେ, ସୁମିର ବାହାଘର ଭାଙ୍ଗିଯିବ। ସୁମିଟା ଏତେ ଭଲ ପିଲା, ଗାଁ ଲୋକେ ତା ମଥାରେ କଳଙ୍କ କାଳିମା ବୋଳିଦେବେ। ସେ ଏ କୂଳର ହେବ

ନାହିଁକି ସେ କୂଳର ହେବ ନାହିଁ । ଆଗପଛ ସବୁ ବିଚାର କର ।

ପରେଶର ମନ ଭିତରେ ମୁଣ୍ଡ ଟେକିଥିଲା ଅନେକ ପ୍ରଶ୍ନ, ଅନେକ ଦ୍ୱନ୍ଦ୍ୱ । କ'ଣ କରିବ କିଛି ନିଷ୍ପତ୍ତି ନେଇ ପାରୁନଥିଲା । ଅସହାୟବୋଧ ଓ ଅପରାଧବୋଧର ଗହଳ ଅନ୍ଧାର ତାକୁ ଘେରି ଯାଇଥିଲା । ଅସୁମାରି ଅବସାଦ, ଦୁଃଖ ଓ ଯନ୍ତ୍ରଣାରେ ତାର ଛାତି କୋରି ହୋଇ ଯାଉଥିଲା । କିଂକର୍ତ୍ତବ୍ୟବିମୂଢ଼ ହୋଇ ହାଇଦ୍ରାବାଦ୍ ଫେରିଯାଇଥିଲା ।

ସୁମିର ବାହାଘର ସାଧୁ ପରିଡ଼ାଙ୍କ ପୁଅ ସନାତନ ସହ ଅନୁଷ୍ଠିତ ହେଲା । ତାର ବର୍ଷକ ପରେ ଏଜି ଅଫିସ୍‌ର ଆକାଉଣ୍ଟସ୍ ଅଫିସର୍ ରଘୁନାଥ ମିଶ୍ରଙ୍କ ଏକମାତ୍ର ଝିଅ ସହ ପରେଶର ଶୁଭ ପରିଣୟ ହେଲା । ପରେଶ ସେକ୍ରେଟେରିଏଟ୍‌ରେ ଚାକିରି ପାଇ କଂପାନୀ ଚାକିରି ଛାଡ଼ିଦେଲା । ଭୁବନେଶ୍ୱର ସରକାରୀ କ୍ୱାର୍ଟର । ବଦଳି ନାହିଁ । ଜୀବନ ସାରା ଭୁବନେଶ୍ୱରରେ ରହିବ । ତା ବାପା, ମାଆ, ଶାଶୂ, ଶ୍ୱଶୁର ଓ ସହଧର୍ମିଣୀଙ୍କ ମନରେ ଅସୀମ ଆନନ୍ଦ ।

ପରେଶ୍ ସକାଳୁ ଉଠିଲା ବେଳକୁ ଦେଖିଲେ ଘର ଦ୍ୱାରରେ ସୁମିତାର ପୁଅ ରମେଶ ତାଙ୍କୁ ଅପେକ୍ଷା କରି ବସିଛି । ଭଦ୍ର ଓ ନମ୍ର ସ୍ୱଭାବର ପିଲା । ତାର ସମସ୍ତ ସାର୍ଟିଫିକେଟ୍‌ର କପି ଓ ଚାକିରି ପାଇଁ ଦରଖାସ୍ତ ପତ୍ର ତା'ଠାରୁ ନେଇ ଆସିଲେ । ଗାଁ ଛାଡ଼ି ଭୁବନେଶ୍ୱରରେ ରହି ପଢ଼ାପଢ଼ି କରିବାକୁ ଓ କୋଚିଂ ନେବାକୁ ପରାମର୍ଶ ଦେଲେ ।

ପରେଶ ଭୁବନେଶ୍ୱର ଫେରିଆସିଲା ପରେ, ପୁଅ ପ୍ରଦୀପ୍‌ର ଓ ସୁମି ପୁଅ ରମେଶର ଦରଖାସ୍ତ ଓ ସାର୍ଟିଫିକେଟ୍‌ର କପି ଯଥା ସ୍ଥାନକୁ ସ୍ପିଡ୍ ପୋଷ୍ଟରେ ପଠାଇଦେଲେ । ପୁଅ ପ୍ରଦୀପ ଚାକିରି ପାଇଗଲେ ତାଙ୍କର ଏକ ବଡ଼ ମନସ୍କାମନା ପୂର୍ଣ୍ଣ ହେବ । ତା ମଟର ସାଇକେଲ ତେଲ ଖର୍ଚ୍ଚ ଓ ତାର ପ୍ରତିଦିନର ଜଳଖିଆ ଖର୍ଚ୍ଚ ଇତ୍ୟାଦି ଖର୍ଚ୍ଚ କମିଗଲେ ତାଙ୍କ ଦରମା ପଇସା ବଳି ପଡ଼ିବ । ପୁଣି ସେ ରୋଜଗାର କଲେ ସେ ଯାହା ଦେଲେବି ତାହା ତାଙ୍କ ଆୟର ପରିମାଣକୁ ଯଥେଷ୍ଟ ବଢ଼ାଇଦେବ । ଝିଅ ବାହାଘର ପାଇଁ ପ୍ରତିମାସରେ ଟଙ୍କା ସଞ୍ଚୟ କରିବେ । ଭୁବନେଶ୍ୱରରେ ପ୍ଲଟଟିଏ ପଡ଼ିଛି ଅନେକ ଦିନରୁ । ଘରଟିଏ ନିର୍ମାଣ କରିବା ପାଇଁ ଚେଷ୍ଟା କରିବେ ।

ପ୍ରଦୀପ ଚାକିରି କଲାପରେ ସେ ମାଆ, ପୁଅକୁ କହିପାରିବେ ଯେ ତାଙ୍କ ସାଧୁତା, କର୍ମନିଷ୍ଠା ଓ ଅଧ୍ୟବସାୟ ଯୋଗୁଁ ପୁଅ ସରକାରୀ ଚାକିରି ପାଇ ପାରିଲା । ତାଙ୍କ ମନରେ ଗୁମୁରି ଉଠୁଥିଲା ବିଜୟର ଉଚ୍ଛ୍ୱାସ । ହୃଦୟରେ ଖେଳୁଥିଲା କେତେ ଆଶା ଓ ସ୍ୱପ୍ନ । ଚାକିରି ହେବା ବିଷୟ ପରେଶବାବୁ ସ୍ତ୍ରୀ କିମ୍ବା ପୁତ୍ର କାହାକୁ ଜଣାଇ ନଥିଲେ । ଆଗରୁ କହିଦେଲେ

ହେଲା କାମ ନ ହୋଇ ରହିଯିବ ବୋଲି ତାଙ୍କର ବିଶ୍ୱାସ । ଆଶା ଓ ଆନନ୍ଦର ଢେଉଗୁଡ଼ିକୁ ମନ ଓ ହୃଦୟର ଚାରି କାନ୍ଥ ଭିତରେ ସୀମାବଦ୍ଧ ରଖିବାକୁ ସ୍ଥିର କରିଥିଲେ ।

ପରେଶବାବୁ ଅଫିସ୍‌ରୁ ଫେରିଲାବେଳେ ଦେଖିଲେ ପୁଅ ପ୍ରଦୀପ ଏକ ଅଟୋରିକ୍ସା ଡ୍ରାଇଭର ସଂଗରେ ଝଗଡ଼ା କରୁଛି । ସେ ତରତର ହୋଇ ସେଠାକୁ ଗଲେ । ପ୍ରଦୀପକୁ ବୁଝାଶୁଝା କରି ଘରକୁ ପଠାଇଦେଲେ । ତାର ନୂଆ ହୀରୋ ହଣ୍ଡା ମଟର ସାଇକେଲରେ ଅଟୋରିକ୍ସା ବାଲା ବଡ଼ ଦାଗ ଲଗାଇଦେଲା ବୋଲି ସେ ଚିତ୍କାର କରୁଥାଏ । ଅଟୋରିକ୍ସା ବାଲା ନିରୁତ୍ତର, ନିରବ । ସେ ଯେପରି ଗାଳିର ହଳାହଳକୁ ନିର୍ବିକାର ଚିତ୍ତରେ ପାନ କରିବାକୁ ମନସ୍ଥ କରିଛି । ପଛକୁ ବୁଲି ଅଟୋରିକ୍ସା ଡ୍ରାଇଭରକୁ ଅନାଇଲେ । ତାଙ୍କ ମନହେଲା, ତାର ଧୈର୍ଯ୍ୟ, ସହିଷ୍ଣୁତା ପାଇଁ ତାକୁ ଧନ୍ୟବାଦ ଦେବେ ।

ଆରେ ଏକଣ ! ରମେଶ । ତୁଏଠି ?

ପରେଶବାବୁ ଆଶ୍ଚର୍ଯ୍ୟ ହୋଇଗଲେ ଅଟୋରିକ୍ସା ଡ୍ରାଇଭର ଭାବେ ସୁମିର ପୁଅକୁ ଦେଖି ।

-ମଉସା ! ନମସ୍କାର ।

-ଆରେ ତୁ କଣ ଅଟୋରିକ୍ସା ଚଳାଉଛୁ । କଣ ହେଲା ? ଭୁବନେଶ୍ୱରକୁ କେବେଠୁ ଆସିଲୁଣି ?

-ଭୁବନେଶ୍ୱରକୁ ଆସି ପଢ଼ାପଢ଼ି କରିବା ପାଇଁ ଆପଣ ପରାମର୍ଶ ଦେଇଥିଲେ । ମୋର ଜଣେ ସାଙ୍ଗ ଶହୀଦନଗରରେ ଛୋଟ ଘରଟିଏ ଭଡ଼ା ନେଇ ରହୁଛି । ତା ସାଙ୍ଗରେ ରହି ପଢ଼ାପଢ଼ି କରୁଛି ଓ କୋଚିଂ ନେଉଛି । ଟିଉସନ୍ କରି ମୋର ଖର୍ଚ୍ଚ ତୁଲାଇବି ବୋଲି ଭାବିଥିଲି । ବର୍ତ୍ତମାନ ସୁଦ୍ଧା ଟିଉସନ୍ ମିଳିନି । ଘର ପାଖ ଅଟୋ ରିକ୍ସା ବାଲାଠାରୁ ଦିନ ୩ ଟାରୁ ସଂଧ୍ୟା ୬ ଟା ପର୍ଯ୍ୟନ୍ତ ଅଟୋରିକ୍ସା ଭଡ଼ାରେ ଆଣି ଚଳାଉଛି ।ଯାହା ମିଳୁଛି ମୋର ବର୍ତ୍ତମାନର ଖର୍ଚ୍ଚ ଚଳିଯାଉଛି । ଯେବେ ଟିଉସନ୍ ମିଳିବ, ଏହି କାମ ଛାଡ଼ି ଦେବି ।

ପରେଶବାବୁଙ୍କ ଆଖି ଛଳ ଛଳ ହୋଇଗଲା । ଯୁବକର କର୍ମନିଷ୍ଠା, ଦୃଢ଼ସଂକଳ୍ପ ଦେଖି ଅଭିଭୂତ ହେଲେ ।

ଆଜି ଇଣ୍ଟରଭ୍ୟୁର ତାରିଖ । ସକାଳୁ ସକାଳୁ ଅଫିସ୍‌ରେ ପହଞ୍ଚି ଯାଇଛନ୍ତି ପରେଶ ବାବୁ । ଡେ଼ପୁଟି ସେକ୍ରେଟେରୀ କହିଛନ୍ତି ଇଣ୍ଟରଭ୍ୟୁ ପୂର୍ବରୁ ସେ ତାଙ୍କ ବିଶ୍ୱସ୍ତ ପିଅନ ନରହରିକୁ ତାଙ୍କ ପାଖକୁ ପଠାଇବେ । ସେ ଚାହୁଁଥିବା ନାମଟିକୁ ଗୋଟିଏ ଲଫାପାରେ ଲେଖି ଅଠାମାରି ନରହରି ହାତରେ ପଠାଇ ଦେବେ ।

ପରେଶବାବୁ ବହୁତ ସତର୍କ ଓ ହୁସିଆର । ପୁଅର ନାମ, ପ୍ରଦୀପ କୁମାର ମିଶ୍ର, ଜନ୍ମ ତାରିଖ ଓ ଶିକ୍ଷାଗତ ଯୋଗ୍ୟତା ସବୁ ଭଲ କରି ଲେଖି ଲଫାପାଟିକୁ ସଯତ୍ନରେ ତଳ ଡ୍ରଅର ଫାଇଲ୍ ତଳେ ରଖିଦେଲେ । ନରହରି ଯେ କୌଣସି ସମୟରେ ଆସି ଯାଇପାରେ । ବାହାରକୁ ଚୁପ୍‌ଚାପ୍ ଦେଖାଯାଉଥିଲେ ବି ଭିତରେ ଭିତରେ ସେ ଆନନ୍ଦରେ କୁରୁଳି ଯାଉଥିଲେ । ନରହରି ଆସି ସାମ୍ନାରେ ଠିଆ ହୋଇଗଲା ।

-ବାବୁ କଣ ଭାବୁଛନ୍ତି ? ଦିଅନ୍ତୁ ।

ପରେଶ ବାବୁ ତଳ ଡ୍ରଅରେ ଫାଇଲ୍ ମେଳରୁ ଲଫାପାଟିକୁ ଖୋଜୁଛନ୍ତି । ପାଉ ନାହାଁନ୍ତି । ସେ ବ୍ୟସ୍ତ ଓ ବିବ୍ରତ । ବେଳେବେଳେ ଯାହାକୁ ଅତି ଯତ୍ନ ଓ ସତର୍କତା ସହିତ ମଣିଷ ରଖିଥାଏ, ଠିକ୍ ସମୟରେ ସେ ମିଳେନା ।

ନରହରି କହିଲା - ଆପଣ ଖୋଜନ୍ତୁ । ମୁଁ ଟଏଲେଟ୍‌ରୁ ଆସୁଛି ।

ପରେଶବାବୁ ଲଫାପାଟିକୁ ନପାଇ ଆଉ ଗୋଟିଏ ଧଳା କାଗଜ ଆଣି ଲେଖିବାକୁ ଆରମ୍ଭ କଲେ । କାଗଜ ଉପରେ ସୁମିର ମୁହଁ । ଲୁହରେ ଛଳ ଛଳ । "ମୋ ଜୀବନରେ ତୁମକୁ କିଛି ମାଗିନି । ପୁଅ ପାଇଁ ତୁମକୁ ହାତ ପତାଇ ମାଗୁଛି । ମୋ ପୁଅ ତୁମକୁ ଲାଗିଲା" । ପରେଶଙ୍କର କାନରେ ଏ ଶବ୍ଦ ଗୁଡ଼ା ଗୁଞ୍ଜରିତ ହେଉଥିଲା । ପୁଣି ଶୁଣୁଥିଲେ- "ରମେଶ ପାଇଁ ଚାକିରିଟିଏ ଯୋଗାଡ଼ କରିଦେଲେ ଆମେ ବଞ୍ଚି ଯାଆନ୍ତୁ । ନ ହେଲେ ଭାସିଯିବୁ"

ପରେଶବାବୁଙ୍କ ଆଖି ଓଦା ଓଦା ହୋଇଗଲା । କାଗଜରେ ଲେଖିଲେ- ରମେଶ ଚନ୍ଦ୍ର ପରିଡ଼ା, ବି.ଏ. । ଲଫାପାରେ ଅଠାମାରି ନରହରି ହାତକୁ ବଢ଼ାଇ ଦେଲେ ।

ତାଙ୍କ ଆଖି ଆଗରେ ନାଚି ଉଠୁଥିଲା ସୁମିର ହସ ହସ ମୁହଁ । କୃତଜ୍ଞତାରେ ଜହ୍ନ ତା ମୁହଁରେ ଖେଳୁଥିଲା । ଅସରନ୍ତି ଆତ୍ମସନ୍ତୋଷରେ ପରେଶବାବୁଙ୍କ ମୁହଁରୁ ଝରି ପଡୁଥିଲା ଆଞ୍ଜୁଳା ଆଞ୍ଜୁଳା ଜ୍ୟୋତ୍ସ୍ନା । ଅପରାଧବୋଧର ଗହଳ ଅଂଧାରକୁ ଚିରି ତାଙ୍କ ମନ ଆକାଶରେ ସୂର୍ଯ୍ୟ ଉଦୟ ହେଉଥିଲେ । ଅନେକ ଦିନ ପରେ ତାଙ୍କ ମୁହଁରେ ଉକୁଟି ଉଠିଲା ନିର୍ମଳ ଆନନ୍ଦର ଏକ ନିଆରା ହସ ।



*('କଥାକଳିକା' ପତ୍ରିକାର ଡିସେମ୍ବର ୨୦୧୯ ସଂଖ୍ୟାରେ ପ୍ରକାଶିତ)*

# ମୂଖା

ସର୍ବେଶ୍ୱର ନିତ୍ୟାନନ୍ଦପୁର ଗ୍ରାମରେ ପହଞ୍ଚି ହରି ସାର୍‌ଙ୍କ ଫଟୋଚିତ୍ର ଉପରେ ସୁନ୍ଦର ରଜନୀଗନ୍ଧା ମାଳଟିଏ ଅର୍ପଣ କଲେ । ସାର୍‌ଙ୍କ ମମତାପୂର୍ଣ୍ଣ ଚାହାଣୀ ଦେଖି ତାଙ୍କ ଆଖି ଲୁହ ଛଳ ଛଳ ହୋଇଯାଇଥିଲା । ସାର୍‌ଙ୍କ ଏକାଦଶାହ କାର୍ଯ୍ୟକ୍ରମ ମହାସମାରୋହରେ ଅନୁଷ୍ଠିତ ହେଉଥିବାର ଦେଖି ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ଅଞ୍ଚଳର ପ୍ରସିଦ୍ଧ ଟେଣ୍ଟ୍ ହାଉସ୍ ଦ୍ୱାରା ଅତ୍ୟାଧୁନିକ ସାଜସଜ୍ଜାରେ ପରିବେଶ ଆକର୍ଷଣୀୟ ଦିଶୁଥିଲା । ସମସ୍ତ ଅଞ୍ଚଳ ଆଲୋକରେ ଉଦ୍‌ଭାସିତ ହେଉଥିଲା । ଗାଁ ରାସ୍ତାରେ କାର୍ ଓ ମଟରସାଇକେଲ୍‌ର ଲମ୍ବା ଧାଡ଼ି । ବିଭିନ୍ନ ସ୍ୱାଦିଷ୍ଟ ବ୍ୟଞ୍ଜନର ମହ ମହ ବାସ୍ନାରେ ସମଗ୍ର ପରିବେଶ ଆମୋଦିତ ହେଉଥିଲା । ସବୁଆଡ଼େ ଜନାରଣ୍ୟ । ସାର୍‌ଙ୍କ ଯୋଗ୍ୟ ପୁଅ ସମ୍ବିତ୍ ବାପାଙ୍କ ଏକାଦଶାହ କାର୍ଯ୍ୟକ୍ରମର ଭବ୍ୟ ଆୟୋଜନ କରିଥିବା ଦେଖି ସର୍ବେଶ୍ୱରଙ୍କ ମୁହଁରୁ ଝରିପଡୁଥିଲା ସନ୍ତୋଷ ଓ ଖୁସିର ଆଞ୍ଜୁଳା ଆଞ୍ଜୁଳା ଜ୍ୟୋସ୍ନା । ସର୍ବେଶ୍ୱର ଭାବୁଥିଲେ ସୁପୁତ୍ରର ସମ୍ମାନୀୟ ପିତାଙ୍କ ପ୍ରତି ଏହା ନିଆରା ଶ୍ରଦ୍ଧାଞ୍ଜଳି ।

ସାର୍‌ଙ୍କ ଧର୍ମପତ୍ନୀ ଅର୍ଥାତ ମାଉସୀଙ୍କୁ ଥରେ ଦେଖା କରିବା ପାଇଁ ସର୍ବେଶ୍ୱରଙ୍କ ମନ ଛଟ୍‌ପଟ ହେଲା । ସେ ସମ୍ବିତ୍ ପାଖକୁ ଯାଇ ମାଉସୀଙ୍କୁ ସାକ୍ଷାତ୍ କରିବାର ବଳବତୀ ଇଚ୍ଛା ପ୍ରକାଶ କଲେ । ହଠାତ୍ ସମ୍ବିତର ମୁହଁର ରଙ୍ଗ ବଦଳି ଗଲା । ବିରକ୍ତିର ମେଘ ଯେମିତି ତା ମୁହଁକୁ ଢ଼ାଙ୍କି ଦେଉଥିଲା । ଚିଡ୍‌ଚିଡ଼ା ସ୍ୱରରେ କହିଲା - "ଆପଣ ବୋଉକୁ କାହିଁକି ଦେଖା କରିବେ ? ତା ମନ ଭଲ ନାହିଁ । ତାକୁ ଡିଷ୍ଟର୍ବ କରନ୍ତୁ ନାହିଁ ।

ସର୍ବେଶ୍ୱରଙ୍କ ମନ ମାନିଲାନି । ସମ୍ବିତ୍‌ର ସହଧର୍ମିଣୀ ସ୍ମିତାକୁ ସେ ଦେଖା କରି ମାଉସୀଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କ ମନ ବ୍ୟାକୁଳ ହେଉଥିବା କଥା ପ୍ରକାଶ କଲେ । ସ୍ମିତାର ହସ ହସ ସଜଫୁଟା ଗୋଲାପପରି ମୁହଁରୁ ଉତୁରି ପଡ଼ିଲା ଅସନ୍ତୋଷର ଧୂଆଁ । ରୋକଠୋକ୍ ଭାବରେ କହିଦେଲା- "ବୋଉଙ୍କୁ ଆଜି କେହି ଦେଖା କରି ପାରିବେନି । ତାଙ୍କ ମନର ଅବସ୍ଥା ଭଲ ନାହିଁ ।" ଏହି ଶବ୍ଦ ଗୁଡ଼ାକ ସର୍ବେଶ୍ୱରଙ୍କ ଛାତିରେ ତୀର ଭଳି ଗଳି ଯାଉଥିଲା ।

ସାର୍ ଓ ତାଙ୍କ ସ୍ତ୍ରୀ ସର୍ବେଶ୍ୱରଙ୍କୁ ପୁଅ ଭଳି ଦେଖନ୍ତି । ସ୍ନେହ ମମତା ତାଙ୍କ

ଉପରେ ଅଯାଚିତ ଭାବେ ଓଜାଡ଼ି ଦିଅନ୍ତି । ପ୍ରତି ସପ୍ତାହରେ ଆଗରୁ ତାଙ୍କ ସହିତ ଫୋନ୍‌ରେ କଥା ହୁଅନ୍ତି । ଭଲରେ ମନ୍ଦରେ ସର୍ବେଶ୍ୱର ହରି ସାର୍‌ଙ୍କ ଘରେ ଠିଆ ହୋଇପଡ଼ନ୍ତି । ସାର୍ ଓ ମାଉସୀ କୋଟିନିଧି କରନ୍ତି । ଏଇ ଦଶବର୍ଷ ହେବ ଓଡ଼ିଶା ବାହାରେ ଚାକିରି କରିବାରୁ ଆଉ ଯୋଗାଯୋଗ କରିପାରିନାହାଁନ୍ତି । ଅଥଚ ମାଉସୀଙ୍କୁ ମୁହୂର୍ତ୍ତକ ପାଇଁ ଦେଖିବାକୁ ତାଙ୍କ ମନ । ସର୍ବେଶ୍ୱର ଦୁଃଖରେ ମ୍ରିୟମାଣ ହେଉଥିଲେ । ଦୁଇ ଶହ କିଲୋମିଟର ଦୂରରୁ ଆସି ଆଜି ଭଳି ଦିନରେ ମାଉସୀଙ୍କୁ ଦେଖା ନ କଲେ ତାଙ୍କ ଛାତି ଭିତରଟା କୋରି ହୋଇଯିବ । ମନଟା ସବୁବେଳେ ଘାଣ୍ଟିଚକଟି ହେବ ।

ହରି ସାର୍‌ଙ୍କ କଥା ମନେ ପଡ଼ିଲେ ସର୍ବେଶ୍ୱରଙ୍କ ଆଖି ଓଦା ଓଦା ହୋଇଯାଏ । ଗାଁରେ ପଢୁଥିବା ସମୟରେ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରତିଦିନ ସାର୍‌ଙ୍କ ଘରକୁ ଯାଆନ୍ତି । ଘର ନୁହେଁ, ମନ୍ଦିର । ନୂଆଁଣିଆ ଚାଳଘର । ଲିପା, ପୋଛାରେ ପରିଷ୍କାର । ଝୋଟିର ଝଲକରେ କାନ୍ଥଗୁଡ଼ିକ ଚମକୁଥାଏ । ପ୍ରତି ବଖରାରେ ଦେବଦେବୀଙ୍କ ସୁନ୍ଦର ଫଟୋଚିତ୍ର । ଧୂପର ମହ ମହ ବାସ୍ନାରେ ସକାଳ ଓ ସନ୍ଧ୍ୟାରେ ଘରଟି ସୁରଭିତ ହୁଏ । ସାର୍‌ଙ୍କ ପିଣ୍ଡାରେ ମସିଣା ପାରି ସର୍ବେଶ୍ୱର ଓ ତାଙ୍କ ତିନି ଜଣ ସାଙ୍ଗ ସକାଳୁ ସକାଳୁ ବସି ପଢନ୍ତି । ପଢ଼ିବାରେ ଓ ପଢ଼ାଇବାରେ ହରି ସାର୍‌ଙ୍କ ଅସରନ୍ତି ଆନନ୍ଦ । ଘଣ୍ଟା ଘଣ୍ଟା ଧରି ପଢ଼ାଇ ଚାଲିଥାନ୍ତି । ନାହିଁ କ୍ଳାନ୍ତି, ଶ୍ରାନ୍ତି, ଅବସାଦ । ନିର୍ବିକାର ଚିତ୍ତରେ ବିଦ୍ୟାଦାନ କରଥାନ୍ତି ।

ପ୍ରତିଦାନ ପାଇଁ କେବେ ହାତ ପତାନ୍ତି ନାହିଁ । ସେଥିପାଇଁ ମନରେ ନଥାଏ ଗ୍ଳାନି, ଚିନ୍ତା କିମ୍ବା ଚେତନା । ଦେବାରେ ପାଆନ୍ତି ଆନନ୍ଦ । ପାଇବା ପାଇଁ ନାହିଁ ଆଶା ଓ ଅଭୀପ୍‌ସା ।

ଆଜି ମଣିଷ ଶାନ୍ତି ଓ ସନ୍ତୋଷର ଜୀବନକୁ ପଛକରି ଅର୍ଥ ଆଉ ସ୍ୱାର୍ଥର ସ୍ୱପ୍ନରେ ମସ୍‌ଗୁଲ । ପ୍ରାପ୍ତି ଆଉ ପ୍ରାଚୁର୍ଯ୍ୟର ପରିବ୍ୟାପ୍ତି ପାଇଁ ନିରବଚ୍ଛିନ୍ନ ଉଦ୍ୟମ ଜାରି ରଖିଛି । ସହରରେ ଆଜି ଟିଉସନ୍‌କୁ ବ୍ୟବସାୟ କରି ଶିକ୍ଷକମାନେ ଅଜସ୍ର ଅର୍ଥ ରୋଜଗାର କରୁଛନ୍ତି । କିନ୍ତୁ ସାର୍ ଥିଲେ ଏକ ନିଆରା ବ୍ୟକ୍ତି । ସାଧୁତା, ତ୍ୟାଗ ଓ ମାନବିକତାର ମୂର୍ତ୍ତୀମନ୍ତ ବିଗ୍ରହ ।

ସହଧର୍ମିଣୀ ସରିତା ଦେବୀ ଥିଲେ ସବୁ ଛାତ୍ରଛାତ୍ରୀଙ୍କର ଓ ସର୍ବେଶ୍ୱରଙ୍କର ଅତି ଆଦରଣୀୟା ମାଉସୀ । ମା' ଠାରୁ ମମତାମୟୀ ଥିଲେ ଏ ମାଉସୀ । ସ୍ନେହର ସ୍ରୋତସ୍ୱିନୀ କଳକଳ ନାଦରେ ବହିଯାଏ । କଣ୍ଠରୁ ଉତୁରି ପଡ଼େ ଅମୃତବୋଳା ମିଠା କଥା, ମଳୟର ଅମୀୟ ସ୍ପର୍ଶ ପରି ମନ ଓ ହୃଦୟର ଗଭୀରତମ ପ୍ରଦେଶକୁ ଛୁଇଁଯାଏ । ପାଠ ପଢ଼ିଲା

ବେଳେ ଛୋଟ ବାଉଁଶ ଡାଲାରେ ପିଲାଙ୍କ ହାତକୁ ବଢ଼ାଇଦିଅନ୍ତି ମୁଢ଼ି, ବାଦାମ, ନଡେଡ୍ ଖଇ, କାକୁଡ଼ି । ସେ ଖାଦ୍ୟରେ ଥାଏ ମାଉସୀଙ୍କର ମମତାର ସ୍ୱାଦ ।

ଘରେ ଖେଳୁଥିଲା ଆଣ୍ଠୁଆ ଗୋପାଳ । ସମ୍ବିତ୍ ତାଙ୍କର ଏକମାତ୍ର ପୁଅ । କେତେବେଳେ ଏରୁଣ୍ଡି ବନ୍ଧ ଡେଇ ଧସେଇ ପଶି ଆସେତ କେତେବେଳେ ଠାକୁର ଘରେ ପଶି ଠାକୁର ଭୋଗକୁ ପାଟିରେ ପୁରେଇଦିଏ । ମାଉସୀ ତା ପଛେ ପଛେ ଅନବରତ ଗୋଡ଼ାଇଥାନ୍ତି । ସେଥିରେ ତାଙ୍କର ଆନନ୍ଦ । ସେଇ ଛୋଟିଆ ଘରେ ଖେଳୁଥାଏ ଖୁସି ଆଉ ଶାନ୍ତିର ଲହଡ଼ି ।

ଦଶ ବର୍ଷ ତଳେ ସର୍ବେଶ୍ୱର ସାର୍‌ଙ୍କ ପୁଅ ସମ୍ବିତ୍ ସାଙ୍ଗରେ ଭୁବନେଶ୍ୱରରେ ଦେଖା ହୋଇଥିଲା । ଓଡ଼ିଶା ସରକାରଙ୍କ ପଦସ୍ଥ ଅଫିସର ଭାବରେ ସେ ନିଯୁକ୍ତ ହୋଇଥିଲା । ସପରିବାର ନୂଆପଲ୍ଲୀରେ ରହୁଥିଲା । ବରମୁଣ୍ଡାରେ ଏକ ସୁଦୃଶ୍ୟ ପ୍ରାସାଦ ନିର୍ମାଣରେ ବ୍ୟସ୍ତ ଥିଲା ବୋଲି କହୁଥିଲା । ସମ୍ବିତ୍‌କୁ ଦେଖି ସର୍ବେଶ୍ୱରଙ୍କ ପେଟ ପୁରିଯାଇଥିଲା । ସାର୍ ଆଉ ମାଉସୀଙ୍କ ସ୍ୱପ୍ନ ଆଜି ସାର୍ଥକ ହୋଇଛି । ଅସରନ୍ତି ସ୍ନେହ ମମତା ଦେଇ ସମ୍ବିତ୍‌କୁ ମଣିଷ କରିଥିଲେ । ସେମାନଙ୍କର ମହାନ୍ ତ୍ୟାଗ ଓ ଆଶୀର୍ବାଦ ଏକମାତ୍ର ପୁଅର ଚଲାପଥକୁ କୁସୁମିତ କରିଛି । ମହାନ୍ ପିତାମାତାଙ୍କର ମହାନ୍ ସନ୍ତାନ ।

ସର୍ବେଶ୍ୱର ବୁଝି ପାରୁ ନଥିଲେ ମାଉସୀଙ୍କୁ ଦେଖା କରିବା କଥା କହିବାରୁ ସମ୍ବିତ୍ ଓ ସ୍ମିତା ବିରକ୍ତିରେ ବିବର୍ଣ୍ଣ ଦେଖା ଯାଉଛନ୍ତି କାହିଁକି ?

ସର୍ବେଶ୍ୱର ଅବସରପରେ ପୁରୀରେ ଘରଟିଏ କରି ସେଠାରେ ସପରିବାର କାଳାତିପାତ କରୁଛନ୍ତି । ସାର୍‌ଙ୍କ ଦେହାନ୍ତ ବିଷୟ ଶୁଣି ଦୁଃଖରେ ଭାଙ୍ଗି ପଡ଼ିଥିଲେ । ଦଶବର୍ଷ ହେବ ଓଡ଼ିଶା ବାହାରେ ରହି ସାର୍ ଓ ମାଉସୀଙ୍କୁ ଦେଖା କରିପାରିନଥିଲେ ବୋଲି ଅନୁତାପର ଅଗ୍ନିରେ ସର୍ବେଶ୍ୱର ଜଳିଯାଉଥିଲେ । ସାର୍ ତାଙ୍କୁ ଋଣୀ କରି ଛାଡ଼ି ଚାଲିଗଲେ ବୋଲି ସେ ମର୍ମେ ମର୍ମେ ଅନୁଭବ କରୁଥିଲେ ।

ସର୍ବେଶ୍ୱର ନଛୋଡ଼ବନ୍ଧା । ମାଉସୀଙ୍କୁ ନିଶ୍ଚୟ ଦେଖା କରିବେ ଓ ତାଙ୍କ ପାଦ ଛୁଇଁ ତାଙ୍କୁ ନମସ୍କାର କରିବେ । ତାଙ୍କୁ ମନ ଭରି ଦର୍ଶନ କରିବେ । ମାଉସୀ ତାଙ୍କ ପଣତକାନିରେ ତାଙ୍କ ଲୁହକୁ ପୋଛି ଦେଲେ ତାଙ୍କ ହୃଦୟର ଯନ୍ତ୍ରଣା ଉପଶମ ହେବ । ମାଉସୀଙ୍କୁ ଦେଖାକରିବାକୁ ଶେଷ ଚେଷ୍ଟା କଲେ । ଘରର କୋଣ, ଅନୁକୋଣରେ ଆଖି ଦୁଇଟିକୁ ଆବେଗର ସହ ପହଁରାଇ ଆଣିଲେ । ନିରାଶ ହୋଇ ଫେରି ଆସୁଥିଲେ ।

"ବାବୁ ସର୍ବେଶ୍ୱର" -ବାଷ୍ପାକୁଳ କଣ୍ଠର ଚିହ୍ନା ଚିହ୍ନା ସ୍ୱର । ପଛକୁ ଫେରି

ଚାହିଁଲେ ସେ । ଠାକୁର ଘରର ଅନ୍ଧାରିମୂଲକରେ ଛୋଟ ଲଣ୍ଠନଟିଏ ଜଳୁଛି ଗୋଟିଏ କୋଣରେ । ଝାପ୍‌ସା ଝାପ୍‌ସା ଆଲୁଅରେ ସେ ଦେଖିପାରୁଥିଲେ ମାଉସୀଙ୍କୁ । ସର୍ବେଶ୍ୱରଙ୍କ ଆଖି ଓଦା ଓଦା ହୋଇ ଆସିଲା । ମାଉସୀଙ୍କ ଆଖିରେ ଲୁହ ଭର୍ତ୍ତି । ସତେ ଯେପରି ମେଘାଛନ୍ନ ଆକାଶ । ଦଲକାଏ ଶୀତଳ ପବନର ସ୍ପର୍ଶରେ ଓଜାଡ଼ି ହେଇପଡ଼ିବ । ଦଉଡ଼ିଯାଇ ମାଉସୀଙ୍କ କୋଳରେ ମୁଣ୍ଡରଖି କାନ୍ଦିଲେ । ମାଉସୀଙ୍କ ଆଖିରୁ ଲୁହ ଓଜାଡ଼ି ହୋଇ ପଡୁଥିଲା । ଲୁହର ଭାଷାରେ ଦୁହେଁ ନିରବରେ କଥା ହେଉଥିଲେ । ଲୁହ ସରୁ ନଥିଲା । କୋହ ଥମୁ ନଥିଲା । ସର୍ବେଶ୍ୱର ଭାବୁଥିଲେ, ମାଉସୀ ବହୁଦିନ ପରେ ତାଙ୍କ ଇପ୍‌ସିତ ସନ୍ତାନଟିକୁ ପାଇ ଯେପରି ଆଶ୍ୱସ୍ତ ହେଉଥିଲେ । ମନ ଖୋଲି ହୃଦୟର ନିଭୃତକୋଣର ଅକୁହା କଥାକୁ କହିବା ପାଇଁ ତାଙ୍କ ହୃଦୟରେ ଉଦ୍‌ବେଳନ । କିଛି ସମୟ ପରେ ମାଉସୀଙ୍କ ଲୁହଭିଜା ଦୁଇହାତକୁ ଜାବୁଡ଼ି ଧରି ସର୍ବେଶ୍ୱର କହିଲେ – 'କଣ ଏସବୁ ଏମିତି ଘଟିଗଲା ?'

ଅସ୍ପଷ୍ଟ କଣ୍ଠରେ ମାଉସୀ କହିଲେ – ତୁ ମୋ ପୁଅପରି । ମନର କଥା ତୋତେ ନ କହି କାହାକୁ କହିବି ? ଆଜି ପର୍ଯ୍ୟନ୍ତ ଯେଉଁ ବ୍ୟଥା ଲୋକଲୋଚନ ଆଢୁଆଳରେ ଲୁଚାଇ ରଖିଛି ତୋତେ କହିଦେଲେ ମନ ଶାନ୍ତ ହେବ । ତୋତେ ମୁଁ ମନେ ମନେ ଖୋଜୁଛି । ଜାଣିଥିଲି, ତୁ ନିଶ୍ଚୟ ଆସିବୁ ।

ମାଉସୀ ତାଙ୍କ ହୃଦୟର କଥା ଓ ମନର ବ୍ୟଥାକୁ ଖୋଲିବାକୁ ପ୍ରସ୍ତୁତ ହୋଇ ଛଳ ଛଳ ଆଖିରେ କହିଲେ – ଦିନେ ତୋ ସାରଙ୍କର ଗାଧୁଆ ଘରେ ଗୋଡ଼ ଖସିଗଲା, ସିଏ ପଡ଼ିଗଲେ । ତାଙ୍କର ଚେତା ବୁଡ଼ିଗଲା । ତାଙ୍କୁ ପଡ଼ିଶା ଲୋକମାନେ ଧରାଧରି କରି ବାହାରକୁ ଆଣିଲେ । କିଛି ସମୟ ପରେ ତାଙ୍କର ଚେତା ଫେରିଲା। । କିନ୍ତୁ ଚେତା ଫେରିବା ପରେ ଜଣା ପଡ଼ିଲା ଯେ ତାଙ୍କର ଡାହାଣ ଅଙ୍ଗଟା ଅଚଳ ହୋଇ ଯାଇଛି । କଟକ କି ଭୁବନେଶ୍ୱରରର ଭଲ ଡାକ୍ତରଖାନାକୁ ନେଇ ଚିକିତ୍ସା କଲେ ସିଏ ସୁସ୍ଥ ହୋଇ ଯିବେ ବୋଲି ସମସ୍ତେ କହିଲେ । ସଙ୍ଗେ ସଙ୍ଗେ ମୁଁ ସମ୍ବିତ ପାଖକୁ ଖବର ପଠାଇଲି । ସିଏ ଖବର ପାଇକି ବି ଆସିଲା ନାହିଁ କି ଟଙ୍କା ପଠାଇଲା ନାହିଁ । କିଛି ଉତ୍ତର ବି ଦେଲା ନାହିଁ । ମୁଁ ଶୁଣିବାକୁ ପାଇଲି ସିଏ କୁଆଡ଼େ ଭୁବନେଶ୍ୱରରେ ଗୋଟେ ବଡ଼ କୋଠାଘର ତୋଳୁଛି । ସେ ଘରର ଛାତ ପଡ଼ିବ । ସେଥିରେ ବହୁତ ଟଙ୍କା ଖର୍ଚ୍ଚ ହେଉଛି । ତାର ପୁଅ ଦୁଇଟାଙ୍କ ଇଂଜିନିୟରିଙ୍ଗ ପାଠ ପଢ଼ାରେ ମାସକୁ ମାସ ବହୁତ ଟଙ୍କା ଖର୍ଚ୍ଚ ହେଉଛି ।

ମୋର ଆଉ କିଛି ଚାରା ନଥିଲା । ମୋ ହାତ ଶୂନ୍ୟ । ସମ୍ବିତର ଭୁବନେଶ୍ୱରେ ପାଠପଢ଼ା ବେଳେ ମୋ ଗହଣା ସବୁ ବିକ୍ରି ହୋଇ ଯାଇଛି । ତୁ ତ ଜାଣୁ ସେ ସମୟର

ଜଣେ ପ୍ରାଇମେରୀ ସ୍କୁଲ ଶିକ୍ଷକର ପେନସନ୍ କେତେ କମ୍ । ଆମ ଦୁହିଁଙ୍କ ଚଳିବା ଆଉ ଔଷଧ ଖର୍ଚ୍ଚକୁ ସେ ଟଙ୍କା ନିଅଣ୍ଟ । ତୋ ସାର୍‌ଙ୍କୁ ତୁ ଭଲ ଭାବରେ ଜାଣିଛୁ । ସିଏ ଭାଙ୍ଗିଯିବେ ପଛେ ନଇଁବେ ନାହିଁ । ଅର୍ଥ ଅଭାବରୁ ତୋ ସାର୍ ବିନା ଔଷଧରେ ବିନା ଚିକିତ୍ସାରେ ପଡ଼ି ପଡ଼ି କିଛି ଦିନ ପରେ ଚାଲିଗଲେ ।

ସର୍ବେଶ୍ୱର ଆଖିରେ ଆଖିଏ ଲୁହ, ଛାତିରେ ଛାତିଏ କୋହ ନେଇ ମାଉସୀଙ୍କ ପାଦଛୁଇଁ ନମସ୍କାର କଲେ । ଆସନ୍ତା କାର୍ତ୍ତିକ ମାସରେ ତାଙ୍କ ପୁରୀ ଘରେ ରହି ହବିଷ କରିବାକୁ ମାଉସୀଙ୍କୁ ଅନୁରୋଧ କଲେ । ତାଙ୍କୁ ଲାଗୁଥିଲା, ମାଉସୀ ଯେପରି ନିରବତାର ଭାଷାରେ ସମ୍ମତି ଦେଉଛନ୍ତି ।

ବାହାରକୁ ବାହାରି ଆସିଲେ ସର୍ବେଶ୍ୱର । ଆଲୋକର ଭବ୍ୟ ପଟୁଆର ସମ୍ବିତ୍‌ର ଅହଙ୍କାର ଓ ଆତ୍ମବଡ଼ିମାର ରୋଷଣି ଭଳି ତାଙ୍କୁ ପ୍ରତୀୟମାନ ହେଲା । ସାର୍‌ଙ୍କ ପାଇଁ ଏହି କାର୍ଯ୍ୟକ୍ରମ ଶ୍ରଦ୍ଧାଞ୍ଜଳି ନୁହେଁ ବରଂ ଉପହାସ । ଆଜି ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ମହାସମାରୋହରେ ଏକାଦଶାହ କାର୍ଯ୍ୟ କରୁଥିବା ସମ୍ବିତ୍ ଯଦି ଏହାର କିୟଦଂଶ ସାର୍‌ଙ୍କ ଜୀବିତ ଅବସ୍ଥାରେ ଦେଇଥାନ୍ତା, ସାର୍‌ଙ୍କ ରୋଗ ଓ ଯନ୍ତ୍ରଣାର ଉପଶମ ହୋଇଥାନ୍ତା । ସମ୍ବିତ୍ ପ୍ରତି ଘୃଣା ଓ ବିଦ୍ୱେଷ ସର୍ବେଶ୍ୱରଙ୍କ ମନ ଓ ହୃଦୟରେ ପୁଞ୍ଜୀଭୂତ ହେଉଥିଲା ।

ସର୍ବେଶ୍ୱର ଦେଖୁଥିଲେ - ସମ୍ବିତ୍ ଲୁହ ଛଳ ଛଳ ଆଖିରେ ସାର୍‌ଙ୍କ ଫଟୋ ସାମ୍ନାରେ ଠିଆ ହୋଇଛି ଏକ ନାଟକର୍ ଅଭିନେତା ପରି । ଫଟୋ ଚାରି କଡେ ବିଛାଡ଼ି ହୋଇଥିବା ଫୁଲ ଗୁଡିକୁ ସଜାଡି ଦେଉଛି । ଅତିଥି ମାନଙ୍କ ଗହଣରେ ସାର୍‌ଙ୍କ ଫଟୋକୁ ବିନମ୍ର ପ୍ରଣାମ କରୁଛି । ଫଟୋଗ୍ରାଫର ବିଭିନ୍ନ କୋଣରୁ ଫଟୋ ଉଠାଉଛି ।

ସର୍ବେଶ୍ୱରଙ୍କୁ ମନେ ହେଉଥିଲା, ଏକ କୃତଘ୍ନ ଅବିବେକୀ , ଅମଣିଷ ଅତି ଭଲ ମଣିଷର ମୁଖା ପିନ୍ଧି ଆଗନ୍ତୁକମାନଙ୍କ ସାମ୍ନାରେ ନିଖୁଣ ଅଭିନୟ କରୁଛି ।

ସମ୍ବିତ୍ କିମ୍ବା ତାର ଧର୍ମପତ୍ନୀ ସ୍ମିତାକୁ ଦେଖା ନକରି ସର୍ବେଶ୍ୱର ପୁରୀ ଫେରି ଆସୁଥିଲେ । ଆଖି ଆଗରେ ଭାସୁଥିଲା ମାଉସୀଙ୍କର ଲୁହ ଛଳ ଛଳ ଆଖି , ବେଦନାରେ ଜଡସଡ଼ ମୁହଁ ।



*('ମହକ' ପତ୍ରିକାର ୨୦୧୯ ରଜ ସଂଖ୍ୟାରେ ପ୍ରକାଶିତ)*

# ଅନନ୍ୟ ଅନୁରାଗ

ଜୀବନ ଜ୍ୟୋତି ଜରାଶ୍ରମର ପନ୍ଦର ନମ୍ବର ବେଡ଼ରେ ନାରାୟଣ ବାବୁ ଶୋଇଛନ୍ତି । ଭୀଷଣ ଜ୍ୱରରେ ଦେହ କଂପୁଛି । ଜ୍ୱର ପ୍ରାୟ ୧୦୪ ଡିଗ୍ରୀ ହେବ । କାହାକୁ ଡାକିବାକୁ ଚାହୁଁଥିଲେ ବି ପେଟରୁ ହାବୁକାମାରି ଆସୁଥିବା ଶବ୍ଦର ଢେଉସବୁ ଓଠର ଦ୍ୱାର ବନ୍ଧ ପାଖରୁ ବାଧାପାଇ ଫେରିଯାଉଥାନ୍ତି ।ଏଠି କାହାକୁବା ଡ଼ାକିବେ ? କିଏ ଏତେ ରାତିରେ ତାଙ୍କ କଥା ଶୁଣିବ ? ତାଙ୍କର ନିଜର ବୋଲି ଏଠି କେହି ନାହାଁନ୍ତି । ଆଖି ପତା ଉପରେ ପାହାଡ଼ର ଓଜନ ସତେ ଯେପରି ଲଦି ହୋଇପଡ଼ିଛି । ଶୋଷର ଜ୍ୱାଳାରେ ତଣ୍ଟି ପାଟି ଶୁଖି ଶୁଖି ଯାଉଛି ।

ନାରାୟଣ ବାବୁ ହଠାତ୍ ଅନୁଭବ କଲେ କେହି ଜଣେ ତାଙ୍କ ପାଟିରେ ପାଣି ମୁନ୍ଦିଏ ମୁନ୍ଦିଏ ଦେଲେ । ତାଙ୍କର ତଣ୍ଟିର ତଣ୍ଟିଫଟା ଶୋଷ ଶୀତଳ ଜଳର ସ୍ପର୍ଶରେ ଶାନ୍ତ ହୋଇଯାଇଥିଲା । କେହି ଜଣେ ତାଙ୍କ ଉଷ୍ମ କପାଳ ଉପରେ ଓଦା କନା ଘଣ୍ଟା ଘଣ୍ଟା ଧରି ପକାଇ ଚାଲିଥାନ୍ତି । ଆଶ୍ୱସ୍ତିରେ ନିଟୋଳ ନିଦରେ ସେ ଶୋଇ ପଡ଼ିଥିଲେ ।

ସକାଳୁ ଡେରିରେ ଉଠିଲାବେଳକୁ ସାମ୍ନାରେ ଜରାଶ୍ରମର ଡାକ୍ତର ମିଶ୍ର ଠିଆ ହୋଇଥିଲେ । ପରୀକ୍ଷା ନୀରିକ୍ଷା କରି ଔଷଧ ଓ ପଥି ପାଇଁ ଜରାଶ୍ରମର ତତ୍ତ୍ୱାବଧାରକଙ୍କୁ ପରାମର୍ଶ ଦେଲେ । ରାତିରେ କପାଳରେ ଓଦାକନା କ୍ରମାଗତ ଭାବରେ ଦିଆ ହୋଇଥିବାରୁ ଜ୍ୱର ହ୍ରାସ ପାଇଲା ବୋଲି ମତ ପ୍ରକାଶ କଲେ । ଦୁଇଦିନ ଔଷଧ ସେବନ ପରେ ଜ୍ୱର ସଂପୂର୍ଣ୍ଣ ଛାଡ଼ିଗଲା ।

ଅମାବାସ୍ୟାର ଘନ ଅନ୍ଧାର ରାତିର ନିଶବ୍ଦ ପ୍ରହରରେ କିଏ ତାଙ୍କୁ ମୁନ୍ଦିଏ ମୁନ୍ଦିଏ ପାଣି ଦେଇ ତାଙ୍କ ଶୋଷ ଶାନ୍ତ କଲା ଓ ଘଣ୍ଟା ଘଣ୍ଟା ଧରି କପାଳରେ ଓଦା କନା ଦେଉଥିଲା, ସେ ଭାବନା ତାଙ୍କ ମନକୁ ଆନ୍ଦୋଳିତ କରୁଥିଲା । ସେ ରହୁଥିବା ବିରାଟ ପ୍ରକୋଷ୍ଠର ଷୋହଳ ଜଣ ଅନ୍ତେବାସୀଙ୍କୁ ଓ ଆଶ୍ରମର କର୍ମଚାରୀଙ୍କୁ ଜଣ ଜଣ କରି ପଚାରିଲେ । ସମସ୍ତେ ମନା କଲେ । ତାଙ୍କ ପ୍ରକୋଷ୍ଠକୁ ଲାଗି ବୃଦ୍ଧାମାନଙ୍କର ପ୍ରକୋଷ୍ଠ । ସେଠାରୁ କେହି ତାଙ୍କ ପ୍ରକୋଷ୍ଠକୁ ଆସନ୍ତିନି । ତାହା ଥିଲା ଜରାଶ୍ରମର ଅଲିଖିତ ସମ୍ବିଧାନ ।

ତାଙ୍କର ଦିବଙ୍ଗତା ସହଧର୍ମିଣୀ ଲକ୍ଷ୍ମୀ ତାଙ୍କର ଅସହ୍ୟ ଯନ୍ତ୍ରଣା ସହି ନ ପାରି ରାତ୍ରିର ଅଂଧାରରେ ଲୁଚି ଲୁଚି ଆସି ତାଙ୍କ ସେବା ଶୁଶ୍ରୂଷା କରି ଚାଲିଯାଇଛନ୍ତି ବୋଲି ତାଙ୍କୁ ହୃଦ୍‌ବୋଧ ହେଉଥିଲା । ଏହା ଅସମ୍ଭବ ବୋଲି ଜାଣିପାରୁଥିଲେ ହେଁ ସେ ବିଶ୍ୱାସ ତାଙ୍କ ମନ ଓ ହୃଦୟକୁ ରୁନ୍ଧି ଦେଇଥିଲା ।

ଲକ୍ଷ୍ମୀଙ୍କର ସ୍ମୃତି ତାଙ୍କ ଆଖି ଆଗରେ ଚଳଚ୍ଚିତ୍ର ପରି ନାଚି ଉଠୁଥିଲା । ଲକ୍ଷ୍ମୀ ସିନା ଚାଲିଯାଇଛନ୍ତି, ତାଙ୍କର ସ୍ମୃତି ବଞ୍ଚି ରହିଛି ଓ ଚିରକାଳ ବଞ୍ଚି ରହିଥିବ । ଥୁରୁ ଥୁରୁ ମାଂସର କଣ୍ଠେଇଟି ଚୁଡ଼ି ଛମ୍ ଛମ୍ କରି ଚାଲିଯାଉଥିଲା । ଦର ପାଚିଲା ବାଳର ସନ୍ଧିରେ ସିନ୍ଦୂର ଚେନାଏ ଢ଼ାଳିଦେଇ ବୁଢ଼ା ବରଗଛର ଓହଳ ପରି ପଣତ କାନିକୁ ନରମ କାନ୍ଧରେ ଓହଳେଇ ଦେଇଥିଲା । କାମ କରି ଚାଲିଥିବ ଯେ କରି ଚାଲିଥିବ । ଲକ୍ଷ୍ମୀଙ୍କର ପ୍ରାର୍ଥନା, ଘଣ୍ଟ, ଘଣ୍ଟା, ଶଙ୍ଖ ଧ୍ୱନି ଓ ମୁଠେ ପାଣି କାଚର ରୁଣୁଝୁଣୁ ଶବ୍ଦର ଝଙ୍କାରରେ ନାରାୟଣ ବାବୁଙ୍କ ପାହାନ୍ତିଆ ଗାଢ଼ ନିଦ ଧୀରେ ଧୀରେ ଅଳସ ଭାଙ୍ଗେ ।

ଅବସରପ୍ରାପ୍ତ ନାରାୟଣବାବୁ ଥିଲେ ଲକ୍ଷ୍ମୀଙ୍କ ଅନୁଶାସନ ଭରା ସ୍କୁଲର ଅବାଧ, ବିଶୃଙ୍ଖଳିତ ଛାତ୍ର । ଲକ୍ଷ୍ମୀ ଯୋକ ଭଳି ତାଙ୍କ ପଛେ ପଛେ ଲାଗିଥିବେ । ତାଙ୍କୁ ଠିକ୍ ସମୟରେ ଖାଇବାକୁ ଦେବା, ଠିକ୍ ସମୟରେ ଔଷଧ ଦେବା ଓ ଠିକ୍ ସମୟରେ ଶୋଇବାର ବ୍ୟବସ୍ଥା କରିବା ଲକ୍ଷ୍ମୀଙ୍କର ନିତିଦିନିଆ କାର୍ଯ୍ୟ । ନାରାୟଣ ବାବୁ ବଡ଼ ଅଗଡ଼ ଧାତୁଆ । ଟିଭି ଦେଖୁଥିବେ ତ ଦେଖୁଥିବେ । ଖବରକାଗଜ ପଢୁଥିବେତ ପଢୁଥିବେ । ଔଷଧ ଠିକ୍ ସମୟରେ ଖାଇବା ତାଙ୍କ ଦେଇ କେବେ ହୁଏନି । ସକାଳୁ ଉଠି ଖାଲିପେଟରେ ଥାଇରଏଡ୍ ଓ ଗ୍ୟାସ ଔଷଧ ଖାଇବା ତାଙ୍କର ନିତାନ୍ତ ଜରୁରୀ । ପାଣି ଗ୍ଲାସ ଓ ଔଷଧ ଧରି ଲକ୍ଷ୍ମୀ ପଛେ ପଛେ ଗୋଡ଼ାଇ ଥିବେ । ଗେଟ୍ ପାଖରେ ଠିଆ ଠିଆ ଔଷଧ ବଟିକା ଦୁଇଟି ଗିଳିଦେଇ ନିର୍ବିକାର ଚିତ୍ତରେ ପ୍ରଭାତ ଭ୍ରମଣରେ ବାହାରି ପଡ଼ନ୍ତି । ଲକ୍ଷ୍ମୀ ଆକଟ କରି କହନ୍ତି- ବୁଢ଼ାଟିଏ ହେଲଣି । ପିଲାଳିଆ ଗୁଣ ଗଲାନି । ସେଇଠି ଗଞ୍ଜି, ଗାମୁଛା ରଖିଦେଇ ଖୋଜୁଥିବତ ଖୋଜୁଥିବ । ଔଷଧ ଖାଇବା କଥା ମନେପଡୁନି । ନିଜ କଥା ଜମା ଚିନ୍ତା କରୁନ । କେମିତି ଚଳିବ ?

ନାରାୟଣବାବୁ ହସି ହସି କହନ୍ତି-ମୋ ବିଷୟରେ ଚିନ୍ତା କରିବାକୁ ତୁମେତ ଅଛ । ମୁଁ ଚିନ୍ତା କରିବି କାହିଁକି ?

ଲକ୍ଷ୍ମୀ ଚଢ଼ାଗଳାରେ କହନ୍ତି -ମୁଁ କଣ ତୁମ କଥା ବୁଝିବାକୁ ସବୁବେଳେ ଥିବି ?

ନାରାୟଣ ବାବୁ ପରିହାସ ଛଳରେ ତତ୍‌କ୍ଷଣାତ୍ କହନ୍ତି – ତୁମେ ଗଲେ, ମୁଁ ଆଉ ଜଣେ ଲକ୍ଷ୍ମୀକୁ ନେଇ ଆସିବି । ଏତକ କହି ଜିଭ କାମୁଡି ପକାନ୍ତି । ମୁହଁରେ ଅପରାଧବୋଧର ଚିହ୍ନ ସ୍ପଷ୍ଟ ବାରି ହୋଇପଡ଼େ ।

ଲକ୍ଷ୍ମୀ ସଙ୍ଗେ ସଙ୍ଗେ ମୁରୁକୁନ୍ଦି ହସ ମୁହଁରେ ଖେଳାଇ କହନ୍ତି-ତା ଯଦି କରନ୍ତ, ମୁଁ ବହୁତ ଖୁସି ହୁଅନ୍ତି । ଭଗବାନ ତୁମକୁ ସଦ୍‌ବୁଦ୍ଧି ଦିଅନ୍ତୁ, ତୁମେ ତାହାହିଁ କର ।

କଥାର ମୋଡ଼ ବଦଳାଇ ନାରାୟଣ ବାବୁ କହନ୍ତି –ଯଦି ମୁଁ ଆଗେ ଚାଲିଯାଏ, ତୁମେ କିପରି ଚଳିବ ?

ଲକ୍ଷ୍ମୀ ଧପ୍‌ଧପ୍ ପାଦରେ ତୀବ୍ର ଗତିରେ ଚାଲି ଆସି ତାଙ୍କ ହାତ ପାପୁଲିଟିକୁ ନାରାୟଣ ବାବୁଙ୍କ ପାଟି ପାଖରେ ଦେଇ ପାଟି ବନ୍ଦ କରିବାକୁ ଚେଷ୍ଟା କରନ୍ତି । ତୂଣୀରର ଶର ଭଳି ସେତେବେଳେ ଶବ୍ଦଗୁଡ଼ିକ ବାହାରି ଆସି ଲକ୍ଷ୍ୟ ସ୍ଥଳ ଭେଦ କରିସାରିଥାଏ । ଲକ୍ଷ୍ମୀଙ୍କ ଆଖି ଓଦା ଓଦା ହୋଇଯାଏ । ହସର ଜହ୍ନରେ ଝଲକୁ ଥିବା ମୁହଁଟି ଉଜୁଡ଼ା ଉପବନ ପରି ଉଦାସ ଓ ମେଘାଛନ୍ନ ହୋଇଯାଏ । ଆଖିର ଉପକୂଳରେ ଲୁହର ଲହଡ଼ି ମୁଣ୍ଡ ପିଟିବାକୁ ଆରମ୍ଭ କରେ । କିଛି ସମୟ ପରେ ପ୍ରକୃତିସ୍ଥ ହୋଇ କହନ୍ତି-ମୁଁ ଠାକୁରଙ୍କୁ ସବୁବେଳେ ଡାକୁଛି, ମୁଁ ଅଇସୁଲକ୍ଷଣୀ ହୋଇ ଦୁନିଆରୁ ବିଦାୟ ନିଏ । ମୋର ବିଶ୍ୱାସ, ଭଗବାନ୍ ମୋ ଡାକ ନିଶ୍ଚୟ ଶୁଣିବେ ।

ସତକୁ ସତ ଲକ୍ଷ୍ମୀଙ୍କ ଡାକ ଭଗବାନ ଶୁଣିଲେ । ଲକ୍ଷ୍ମୀଙ୍କର ଦେହାନ୍ତ ପରେ ନାରାୟଣବାବୁ ଦାରୁଣ ଧକା ସହିନପାରି ଛଅ ମାସ ପାଇଁ ହୋଇଗଲେ ନିର୍ବାକ, ନିସ୍ପନ୍ଦ । ତାଙ୍କର ଯୋଗ ଭଲ ଥିଲା । ସେତେବେଳେ ପୁଅ ଶୁଭକାନ୍ତ ଓ ବୋହୂ ଶୁଭସ୍ମିତା ଉଭୟେ ଭୁବନେଶ୍ୱର ଘରେ ରହୁଥିଲେ । ସେମାନଙ୍କ ସେବା, ଶୁଶ୍ରୂଷା, ଯତ୍ନ ଫଳରେ ନାରାୟଣବାବୁ ଛଅ ମାସ ପରେ ସଂପୂର୍ଣ୍ଣ ସୁସ୍ଥ ହେଲେ । ଶୁଭକାନ୍ତ ଭୁବନେଶ୍ୱରର ଟିସିଏସ୍‌ରେ ସଫ୍ଟୱ୍ୟାର ଇଂଜିନିୟର ଭାବରେ ଅବସ୍ଥାପିତ ହୋଇଥାଏ । ଶୁଭସ୍ମିତା ଇଂଜିନିୟରିଂ ଡିଗ୍ରୀ ହାସଲ କରିଥିଲେ ହେଁ ସୁଗୃହିଣୀ ଭାବରେ ତାର କର୍ତ୍ତବ୍ୟ ସୁଚାରୁ ରୂପେ ସଂପାଦନ କରୁଥିଲା ।

ଦିବାଶର୍ବରୀ ନାରାୟଣବାବୁଙ୍କ ମନ ଓ ହୃଦୟରେ ଲକ୍ଷ୍ମୀଙ୍କ ସ୍ମୃତି ନାଚି ଉଠୁଥାଏ । ଲକ୍ଷ୍ମୀଙ୍କ ବିନା ଜୀବନ କିଭଳି ରଙ୍ଗହୀନ, ରସହୀନ, ଖାପଛଡ଼ା ଆଉ ଅଡୁଆ ଅଡୁଆ ଲାଗୁଥାଏ । ମଣିଷର ହାତ ପାହାନ୍ତାରେ ଯାହା ଥାଏ, ମଣିଷ ତାକୁ ଖୋଜେନା । ଯେତେବେଳେ ତାହା ହଜିଯାଏ, ପ୍ରତି ମୁହୂର୍ତ୍ତରେ ତାର ସ୍ମୃତି ଛାତିକୁ କୋରିଦିଏ । କଲିଜାକୁ ଛିନ୍‌ଭିନ୍ କରିଦିଏ । ଯେତେ ଯାହା କଲେବି ବୋହୂ ବୋହୂ ,ସ୍ତ୍ରୀ, ସ୍ତ୍ରୀ । ସ୍ତ୍ରୀ ଗଲାପରେ

ଯେଉଁ ଶୂନ୍ୟ ସ୍ଥାନ ସୃଷ୍ଟି ହୁଏ, ତାକୁ କେହି କେବେ ପୂର୍ଣ୍ଣ କରି ପାରେନା । ସ୍ତ୍ରୀକୁ ମନ ଖୋଲି ଅନ୍ତରର କଥା କହିହୁଏ । ମନ ଖୋଲି ଗାଳି ଦେଇହୁଏ । ଖିଙ୍କାରି, ମିଙ୍କାରି ହୋଇ ଗର୍ଜନ ତର୍ଜନ କରି ବିନା ଦ୍ୱିଧାରେ କଡ଼ା ଭାଷା ପ୍ରୟୋଗ କରିହୁଏ । ତା ଉପରେ ଥାଏ ଅଖଣ୍ଡ ଅଧିକାରବୋଧ । ମୁଣ୍ଡ ବ୍ୟଥା ଟିକିଏ ହେଲେ, ଦେହ ଟିକେ ଭିଡ଼ି ମୋଡ଼ି ହେଲେ ମୁଣ୍ଡ ଚିପିବାକୁ ଓ ଦେହ ଘଷିବାକୁ ଆଦେଶ ନିର୍ବିକାର ଚିତ୍ତରେ ମୁହଁର ବାକ୍ସରୁ ବାହାରି ପଡେ ।

ବୋହୂ ସବୁ ଆଦେଶ ମାନିବାକୁ ପ୍ରସ୍ତୁତ ଥିଲେ ହେଁ ନାରାୟଣବାବୁଙ୍କୁ ମାଡ଼ି ମାଡ଼ି ପଡ଼େ । କିଛି କହିଲା ପୂର୍ବରୁ ବାରମ୍ବାର ଭାବନ୍ତି, ହେଜନ୍ତି । ଶବ୍ଦଗୁଡ଼ିକ ଯେପରି ଅରୁଚିକର ନହୁଏ, ସେଥିପ୍ରତି ସେ ଅଧିକ ଯତ୍ନଶୀଳ । ପରିବର୍ତ୍ତିତ ପରିସ୍ଥିତିରେ ତାଙ୍କ ଆଚରଣ ଓ ଉଚ୍ଚାରଣରେ ଅନେକ ପରିବର୍ତ୍ତନ ଘଟିଛି । ଲକ୍ଷ୍ମଣଗାରର ବନ୍ଧନୀ ଭିତରେ ଥିବା ମାପଚୁପା ଜୀବନକୁ ଆପଣେଇ ନେବାକୁ ଦୁଇ ବର୍ଷ ହେବ ସର୍ବଦା ନିଜକୁ ପ୍ରସ୍ତୁତ ରଖୁଥିଲେ ।

ସେଦିନ ଅଫିସରୁ ଫେରି ଶୁଭକାନ୍ତ ଯେତେବେଳେ କହିଲା ଯେ ତାର ଚେନାଇକୁ ବଦଳି ହୋଇଛି ଓ ଶୁଭସ୍ମିତା ଏଲ୍ ଆଣ୍ଡ ଟି କମ୍ପାନୀରେ ଚେନାଇରେ ଚାକିରି ପାଇଛି ନାରାୟଣ ବାବୁଙ୍କ ପାଦ ତଳୁ ମାଟି ଖସି ଖସି ଯାଉଥିଲା । ବାହାରକୁ ଅବିଚଳିତ ଦେଖା ଯାଉଥିଲେ ବି ମନ ଗହନରେ ବହୁଥିଲା ଅବିଶ୍ରାନ୍ତ ଘୁର୍ଣ୍ଣିଝଡ଼ । ସେ ଅପଲକ ନୟନରେ ତାଙ୍କ ନିଜ ହାତ ଗଢ଼ା ତ୍ରିତଳ ପ୍ରାସାଦକୁ ଅନାଇ ରହିଥିଲେ । ଏଜି ଅଫିସ୍‌ରେ ଚାକିରି ସମୟରେ କାଣ୍ଟି କୁଣ୍ଡି ଚଳି ବରମୁଣ୍ଡାର ଏ ଘରଟିକୁ ସେ ନିଜ ରକ୍ତରେ ନିର୍ମାଣ କରିଥିଲେ । ମାଉସୀମା ମନ୍ଦିରରୁ ପ୍ରତିଦିନ ସାଇକେଲ ପେଲି ପେଲି ବରମୁଣ୍ଡାକୁ ଘର କାମ ତଦାରଖ କରିବାକୁ ଆସୁଥିଲେ । ଖରାତରାରେ, ବର୍ଷା, ବିଜୁଳିରେ ସେ ଶାଗୁଣାର ଆଖିରେ ଶ୍ରମିକଙ୍କ କାମକୁ ତନଖି କରି ଦେଖୁଥିଲେ । ସେ ସେମାନଙ୍କୁ ଦେଉଥିବା ପ୍ରତି ଟଙ୍କାର କଡ଼ା ଗଣ୍ଡାରେ ହିସାବ ନେଉଥିଲେ । ସିମେଣ୍ଟ, ରଡ଼, କେଉଁଠାରେ ଶସ୍ତାରେ ମିଳିବ ବୋଲି ରସୁଲଗଡ଼ରୁ ପୋଖରୀପୁଟ ପର୍ଯ୍ୟନ୍ତ ଟାଇଁ ଟାଇଁ ଖରାରେ ପଇଁତରା ମାରୁଥିଲେ ।

ଶୁଭକାନ୍ତ ଓ ଶୁଭସ୍ମିତା ତାଙ୍କୁ ସେମାନଙ୍କ ସଂଗରେ ଚେନାଇରେ ରହିବା ପାଇଁ ଅନୁରୋଧ କଲେ । ତାଙ୍କର ସୁବିଧା ପାଇଁ ଏକ କାମବାଲି ଓ ସେବିକାକୁ ନିଯୁକ୍ତି କରିବେ ବୋଲି ଆଶ୍ୱାସନା ଦେଲେ ।

ଭୁବନେଶ୍ୱର ଛାଡ଼ି ଚେନାଇ ଯିବା ଚିନ୍ତା କଲାବେଳକୁ ସେ ଅଣନିଶ୍ୱାସୀ ଅନୁଭବ କରୁଥିଲେ । ନିଜର ମାତୃଭାଷାରେ ନିଜ ଲୋକମାନଙ୍କ ସହ ଆଳାପ ଆଲୋଚନାର ନିଆରା ଆନନ୍ଦ ସେ ଚେନାଇରେ ପାଇପାରିବେ ନାହିଁ । ପୁଅ, ବୋହୂ ଅଫିସ୍ ଗଲାପରେ ତାଙ୍କ ନିଃସଙ୍ଗ ଜୀବନର ଯନ୍ତ୍ରଣା ତାଙ୍କ ମନକୁ ଅଶାନ୍ତ କରିଦେବ । ତାଙ୍କର ବହୁ ଅନ୍ତରଂଗ ବନ୍ଧୁ ମେଞ୍ଚାଏ ସ୍ୱପ୍ନ ନେଇ ପୁଅ ବୋହୂଙ୍କ ପାଖରେ ରହିବା ପାଇଁ ଆମେରିକା, ବାଙ୍ଗାଲୋର, ବମ୍ବେ ଓ ଚେନାଇ ଯାଇଥିଲେ । ଜୀବନ ଏପରି ଦୁର୍ବିସହ ହେଲା ସେମାନେ ବିଭିନ୍ନ ଆଳ ଦେଖାଇ ଛାଟିପିଟି ହୋଇ ପଳାଇ ଆସିଲେ । ଚେନାଇରେ ପିଞ୍ଜରାବଦ୍ଧ ପକ୍ଷୀ ପରି ଜୀବନ ଯାପନ କଥା ଚିନ୍ତା କଲାବେଳକୁ ତାଙ୍କର ଆଖି ଦୁଇଟି ବେଦନାର ଲୁହରେ ଜକେଇ ଆସୁଥିଲା ।

ନାରାୟଣ ବାବୁ ଭୁବନେଶ୍ୱର ଛାଡ଼ି କେଉଁଆଡ଼େ ଯିବେ ନାହିଁ ବୋଲି ଦୃଢ଼ ନିଷ୍ପତ୍ତି ଦେଇଥିଲେ ଓ ଶୁଭକାନ୍ତଙ୍କୁ ସ୍ପଷ୍ଟ ଭାବେ ଜଣାଇଦେଲେ । ତାଙ୍କର ତ୍ରିତଳ ପ୍ରାସାଦର ତଳ ମହଲାରେ ପୁଅ ବୋହୂଙ୍କ ସହ ସେ ରହୁଥିଲେ । ଫାଷ୍ଟ ଫ୍ଲୋର ଓ ସେକେଣ୍ଡ ଫ୍ଲୋରରେ ବ୍ୟାଙ୍କ ଅଫିସରମାନେ ଭଡ଼ା ଦେଇ ରହୁଥିଲେ । ନାରାୟଣ ବାବୁ ଏକୁଟିଆ ଥ୍ରି ବିଏଚ୍ କେ ଘରେ ରହିବେ କିପରି ? ଦେହ ପା ଭଲ ମନ୍ଦ, ସୁବିଧା ଅସୁବିଧାରେ କିଏ ତାଙ୍କ ପାଖରେ ଠିଆ ହେବ, ଏହି ଚିନ୍ତାରେ ଶୁଭକାନ୍ତ ଓ ନାରାୟଣବାବୁ ମ୍ରିୟମାଣ ହେଉଥିଲେ । ଶୁଭକାନ୍ତ ତାଙ୍କର ନିକଟ ସଂପର୍କୀୟମାନଙ୍କ ସହିତ ଫୋନ୍‌ରେ କଥା ହେଲେ । ତାଙ୍କ ବାପା ସେମାନଙ୍କ ପାଖରେ ରହିବାର ବନ୍ଦୋବସ୍ତ କରିବା ପାଇଁ ସେମାନଙ୍କୁ ଅନୁରୋଧ କଲେ । ଯେଝା ଜଂଜାଳ ଯେଝାକୁ ବଳେଇ ଯାଉଛି । ନିଜ ନିଜ ସମସ୍ୟାରେ ସମସ୍ତେ କଣ୍ଠାଗତ । ନୂଆ ଦାୟିତ୍ୱକୁ ଆବୋରି ଆଣି ସମସ୍ୟାର ବୋଝ ବୋହିବାକୁ ସେମାନେ ରାଜି ନ ହେବା ସ୍ୱାଭାବିକ ।

ଅନନ୍ୟୋପାୟ ହୋଇ ଶୁଭକାନ୍ତ ଓ ଶୁଭସ୍ମିତା ଉଦ୍‌ବିଗ୍ନ ମନରେ ନାରାୟଣବାବୁଙ୍କୁ ଖଣ୍ଡଗିରିରେ ଥିବା ଜୀବନ ଜ୍ୟୋତି ଜରାଶ୍ରମରେ ଛାଡ଼ି ଦେଇ ଆସିଲେ । ରାଜଧାନୀର ଏକ ସମ୍ଭ୍ରାନ୍ତ ସ୍ଥାନରେ ତ୍ରିତଳ ପ୍ରାସାଦ ନିର୍ମାଣ କରି ସେ ଆଜି ଆଶ୍ରୟହୀନ, ଏ କଥା ଚିନ୍ତା କଲାବେଳେ ନାରାୟଣ ବାବୁଙ୍କ ମୁହଁରେ ଅସହାୟତାର ମେଞ୍ଚା ମେଞ୍ଚା ପ୍ରଲେପ ବୋଳି ହୋଇ ଯାଉଥିଲା । ଆଧୁନିକ ଜୀବନର ବିଡ଼ମ୍ବନାକୁ ସେ ମର୍ମେ ମର୍ମେ ଅନୁଭବ କରୁଥିଲେ । ଆସ୍ତେ ଆସ୍ତେ ଜରାଶ୍ରମର ପରିବେଶ ସହିତ ସେ ପରିଚିତ ହେଲେ । ଅନ୍ୟ ଅନ୍ତେବାସୀଙ୍କ ସଙ୍ଗେ ବନ୍ଧୁତା ଓ ଆଳାପ ଆଲୋଚନା କରି ସମୟ ବିତାଇବାକୁ ଲାଗିଲେ ।

ତାଙ୍କୁ ମନେ ହେଲା ରାଜଧାନୀର ସଂପର୍କହୀନ, କଂକ୍ରିଟ୍ କଙ୍କାଳର ମରୁଭୂମିରେ ଜୀବନଜ୍ୟୋତି ଜରାଶ୍ରମ ସବୁଜିମାରେ ଖିଲିଖିଲି ହସୁଥିବା ଏକ ସୁନ୍ଦର ମରୁଦ୍ୟାନ । ବିଗତ ଦିନର ସ୍ମୃତିର ବୁଢ଼ିଆଣୀ ଜାଲରୁ ମୁକୁଳି ଆସିବା ପରେ ପୁଣି ତାଙ୍କ ମନକୁ ଆଲୋଡ଼ିତ କଲା ସେଇ ପ୍ରଶ୍ନବାଚୀ । ସାଇଁ ସାଇଁ ନିଶା ଗର୍ଜୁଥିବା ସମୟରେ କିଏ ତାଙ୍କୁ ସେବା ଶୁଶ୍ରୂଷା କରି ଜରାଶ୍ରମରୁ ରାତ୍ରିର ଅନ୍ଧାରରେ ଉଭାନ୍ ହୋଇଗଲା ?

ସେଦିନ ଜରାଶ୍ରମରେ ଜଣେ ନବାଗତା ବୟସ୍କା ଭଦ୍ର ମହିଳାଙ୍କୁ ଦେଖି ପଚାରିଲେ- କ'ଣ ଆପଣ ନୂଆ ଆସିଛନ୍ତି କି ?

ହସି ହସି ସେ ଉତ୍ତର ଦେଲେ-ହଁ, ମୁଁ ଏକ ସପ୍ତାହ ହେବ ଆସିଛି । ଆପଣ ବୋଧହୁଏ ୧୫ ନମ୍ବର ବେଡ଼ର ଅନ୍ତେବାସୀ ?

ନାରାୟଣ ବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ -ହଁ, କିନ୍ତୁ ଆପଣ ଜାଣିଲେ କେମିତି ?

ଓଠରେ ଲାଜ ଲାଜ ହସ ଫୁଟେଇ ମହିଳା ଜଣକ ଉତ୍ତର ଦେଲେ- ସେଦିନ ମଝି ରାତିରେ ମୁଁ ଉଠିଲା ବେଳକୁ ଶୁଣିଲି ପାଖ ପ୍ରକୋଷ୍ଠରେ କେହି ଜଣେ ଭୀଷଣ ଜ୍ୱରରେ କମ୍ପୁଛନ୍ତି । ନିଶାର୍ଦ୍ଧରେ ସମସ୍ତେ ନିଘୋଡ଼ ନିଦରେ ଶୋଇ ଯାଇଛନ୍ତି । ଅନ୍ଧାର ରାତିରେ ଶବ୍ଦକୁ ଅନୁସରଣ କରି ଥିରି ଥିରି ପଦରେ ଆସି ଦେଖେ ୧୫ ନମ୍ବର ଲେଖା ଯାଇଥିବା ବେଡ଼ । ସେଇ ବେଡ଼ରେ ଶୋଇଥିବା ବ୍ୟକ୍ତି ପ୍ରବଳ ଜ୍ୱରରେ ଅସ୍ତବ୍ୟସ୍ତ ହେଉଛନ୍ତି । ପାଣି ଟୋପାଏ ପାଇଁ ତାଙ୍କ ପାଟି ଓ ଜିଭ ତହଳ ବିକଳ ହେଉଛନ୍ତି । ମୁନ୍ଦିଏ ମୁନ୍ଦିଏ ପାଣି ଦେବାପରେ ଶୋଷର ଜ୍ୱାଳା ଶାନ୍ତ ହେଲା ଭଳି ଅନୁମାନ କଲି । ଦେହରେ ହାତ ମାରିଲି । ତାତିରେ ଖଇ ଫୁଟୁଛି । ଅନନ୍ୟୋପାୟ ହୋଇ କପାଳରେ ଓଦା କନା ଦେଇ ଚାଲିଲି । ଜ୍ୱର କମିବା ପରେ ମୋ ବେଡ଼ରେ ଆସି ଶୋଇ ପଡ଼ିଲି । ତା ପରଦିନ ଝରକା ପାଖରେ ଠିଆ ହୋଇ ଦେଖିଲି ଆପଣ ସେଇ ୧୫ ନମ୍ବର ବେଡ଼ରେ ବସିଛନ୍ତି । ସାମାନ୍ୟ ସତେଜ ଦେଖା ଯାଉଥିଲେ । ଜ୍ୱର ଉପଶମ ହେବାର ସଂକେତ ଦେଖି ଆଶ୍ୱସ୍ତ ହେଲି ।

ନାରାୟଣବାବୁ କୃତଜ୍ଞତାରେ ତରଳି ଯାଉଥିଲେ । ଛଳ ଛଳ ଆଖିରେ ବାଷ୍ପାକୁଳ କଣ୍ଠରେ କହିଲେ - ଆପଣ ମୋତେ ଚିର ଋଣୀ କରିଦେଲେ । ବିପଦ ସମୟରେ ଆପଣଙ୍କର ଏ ଉପକାର ମୁଁ ଜୀବନରେ କେବେ ଭୁଲିପାରିବି ନାହିଁ । ମୋ ନାଁ ନାରାୟଣ ବଳବନ୍ତରାୟ । ଆପଣଙ୍କ ନାଁ ?

ବୃଦ୍ଧାଙ୍କ କଣ୍ଠରୁ ଉତୁରି ଆସିଲା - ଲକ୍ଷ୍ମୀ, ଲକ୍ଷ୍ମୀ ସାମନ୍ତରାୟ ।

ଚମକି ପଡ଼ିଲେ ନାରାୟଣବାବୁ । ଲକ୍ଷ୍ମୀ ନାଁ ଶୁଣି ତାଙ୍କ ତାଳୁରୁ ତଳିପା ପର୍ଯ୍ୟନ୍ତ ଏକ ଅଦ୍ଭୁତ ଶିହରଣ ଖେଳିଗଲା । ଭାବପ୍ରବଣତାର ଉଜାଣି ସୁଅରେ ଭାସି ଯାଉ ଯାଉ ନିଜକୁ ପ୍ରକୃତିସ୍ଥ କରି କହିଲେ-ହଉ ଲକ୍ଷ୍ମୀଦେବୀ ! ପରେ କଥା ହେବା ।

ନାରାୟଣବାବୁ ସେଦିନ ଭାବନା ସମୁଦ୍ରରେ ଉବୁଟୁବୁ ହେଉଥିଲେ । ତାଙ୍କୁ ଲାଗୁଥିଲା, ଲକ୍ଷ୍ମୀ ଯେପରି ଅନ୍ୟ ଏକ ରୂପରେ ତାଙ୍କ ପାଖକୁ ଆସିଛନ୍ତି । ତାଙ୍କ ପତ୍ନୀ ଥିଲେ ଗୌରବର୍ଣ୍ଣା, ଡେଙ୍ଗା ଓ ତନୁପାତେଳୀ । ନବାଗତା ଲକ୍ଷ୍ମୀ ଶ୍ୟାମଳୀ, ମଧ୍ୟମ ଉଚ୍ଚତା ଓ କୁନ୍ଦିଲା କୁନ୍ଦିଲା ଚେହେରା । କିନ୍ତୁ କଣ୍ଠ ସ୍ୱର ଏକା ଭଳି । ଆତ୍ମୀୟତା ଆଉ ମିଠା ମିଠା ମମତାର ସ୍ରୋତସ୍ୱିନୀ । ଆଖି ଦୁଇଟି ଏକା ଭଳି । ସେଇ ସ୍ନେହଭରା ଆଖିକୁ ଅନାଇଦେଲେ ସେ ହୋଇ ଉଠୁଛନ୍ତି ମାୟାମଗ୍ନ ।

ସେଦିନ ନାରାୟଣବାବୁ ଅଳସ ଅପରାହ୍ନରେ ବାହାରେ ବୁଲୁଥିବା ବେଳେ ଦେଖିଲେ, ଲକ୍ଷ୍ମୀ ଜରାଶ୍ରମର ଚଉହଦୀ ଭିତରେ ଥିବା ବଟବୃକ୍ଷର ସିମେଣ୍ଟ ଚାନ୍ଦିନୀ ଉପରେ କ'ଣ ଲେଖୁଛନ୍ତି । ସେ ଧୀର ପଦପାତରେ ପାଖକୁ ଯାଇ ପ୍ରଶ୍ନ କଲେ - କ'ଣ ଲେଖୁଛନ୍ତି ?

ଲକ୍ଷ୍ମୀ ହସି ହସି କହିଲେ-କବିତା ।

- ଏ ବୟସରେ କବିତା ?

- କବିତା ସହିତ ବୟସର ସଂପର୍କ ନାହିଁ । କବିତା ସହିତ ମନର ସଂପର୍କ । ମନରେ କବିତା ମାଡ଼ିଲେ ପାହାଡ଼ି ଝରଣାପରି କଳ କଳ ନାଦ କରି ଛଳ ଛଳ ହୋଇ କବିତା ବହି ଆସିବ । କବିତା ଲେଖିବାକୁ ମନ ପ୍ରେରଣା ଦିଏ । କବିତା ହାତ ଧରି କବିତା ଲେଖିବା ଶିଖାଇ ଦିଏ । କବିତାହିଁ ମୋର ଜୀବନ । କବିତାକୁ ସାଥୀ କରି ମୁଁ ଜୀବନର ସବୁ ସଂଘର୍ଷର ସାମ୍ନା କରିଛି । ହସି ହସି ବଞ୍ଚିଛି । ଶିକ୍ଷାଦାନ ମୋର ବୃତ୍ତି, କବିତା ମୋର ପ୍ରବୃତ୍ତି ।

ନାରାୟଣବାବୁ କହିଲେ-ମୁଁ ବାଣୀବିହାରରେ ଓଡ଼ିଆରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଅଛି । କବିତା ପଢ଼ିବାରେ ଓ ତାକୁ ବିଶ୍ଳେଷଣ କରିବାରେ ମୋର ଅସୀମ ଆନନ୍ଦ । ମୁଁ କିନ୍ତୁ କବିତା ଲେଖି ପାରେନା । ସୃଷ୍ଟି କରିବାର କ୍ଷମତା ଈଶ୍ୱରଙ୍କର ଅବଦାନ । ଯାହା ହେଉ ଆପଣଙ୍କ ଭଳି ଜଣେ କବୟତ୍ରୀ ଆମ ଜରାଶ୍ରମରେ ଅଛନ୍ତି, ଏହା ଆମ ପାଇଁ ଗର୍ବ ଓ ଗୌରବର କଥା ।

- ଅନେକ ଦିନ ପରେ ମୁଁ ଜଣେ ଆଗ୍ରହୀ ପାଠକ ପାଇଛି, ସେଥିପାଇଁ ମୁଁ ବହୁତ ଖୁସି । ପାଠକୀୟ ସ୍ୱୀକୃତି ଲେଖକ ପାଇଁ ଅମୂଲ୍ୟ ପ୍ରେରଣା ଯୋଗାଇ ଦିଏ । ମୋ ପାଖରେ ମୋ କବିତା ପାଣ୍ଡୁଲିପିଟି ଅଛି । ନିଅନ୍ତୁ । ଅବସର ସମୟରେ ପଢ଼ିଲେ ମିଠା ମିଠା ଆନନ୍ଦରେ ଆପଣଙ୍କ ମନ ପୂରି ଉଠିବ ।

- ଆପଣ ପାଣ୍ଡୁଲିପିଟିକୁ ଛପାଇଲେ ନାହିଁ କାହିଁକି ?

- ଇଚ୍ଛା ଥିଲା, କିନ୍ତୁ ଆର୍ଥିକ କ୍ଷମତା ନଥିଲା । ସ୍ୱାମୀ ଥିଲେ ଓଡ଼ିଶା ସରକାରଙ୍କର ତୃତୀୟ ଶ୍ରେଣୀ କର୍ମଚାରୀ । ମୁଁ ଏକ ଛୋଟ ଘରୋଇ ସ୍କୁଲର ଶିକ୍ଷୟିତ୍ରୀ । ସୀମିତ ଦରମାରେ ଚଳିବାକୁ, ବ୍ରହ୍ମପୁର ସହରରେ ଛୋଟ ଘର ଖଣ୍ଡିଏ କରିବାକୁ ଓ ଏକମାତ୍ର ପୁଅକୁ ମଣିଷ କରିବାକୁ ଆମେ କଣ୍ଠାଗ୍ରତ ହୋଇ ଯାଉଥିଲୁ । ଅସମୟରେ ମୋ ସ୍ୱାମୀ ମୋତେ ଏକାକରି ଚାଲିଗଲେ । ପୁଅ ପାଠ ପଢ଼ା ପରେ ଚାକିରି କଲା । ଭଲ ପାଇ ବିବାହ କଲା ଅନ୍ୟ ଧର୍ମର ଝିଅକୁ । ପୁଅ , ବୋହୂ ଦୁହେଁ ରହିଲେ ପୁଅର ଚାକିରି ସ୍ଥାନରେ, ବାଙ୍ଗାଲୋରରେ । ମୋ କଥା ବୁଝିବାକୁ ତାଙ୍କ ପାଖରେ ସମୟ ନାହିଁ କି ଇଚ୍ଛା ନାହିଁ । ଦିନେ ହେଲେ ମୋତେ ଫୋନ୍ କରନ୍ତି ନାହିଁ କି ଥରଟେ ମୋତେ ଦେଖିବାକୁ ଆସନ୍ତି ନାହିଁ ।ଏମିତି ପରିସ୍ଥିତିରେ ମୋର କବିତା ପୁସ୍ତକ ପ୍ରକାଶନ ଇଚ୍ଛା ଅସମ୍ଭବ ଓ ଅପ୍ରାପ୍ୟ ବିଳାସ, ଅପହଞ୍ଚ ସ୍ୱପ୍ନ ହୋଇ ସବୁ ଦିନ ପାଇଁ ରହିଗଲା ।

- ଆପଣଙ୍କ ପ୍ରିୟ କବି ଓ କବିତା ପୁସ୍ତକ ?

- ମାୟାଧର ମାନସିଂହ ମୋର ପ୍ରିୟ କବି । ତାଙ୍କ ଦ୍ୱାରା ରଚିତ କବିତା ପୁସ୍ତକ 'ଧୂପ' ମୋର ପ୍ରିୟ କବିତା ପୁସ୍ତକ । ସେ ପୁସ୍ତକର 'ନିଶୀଥ ଅଭିସାର' କବିତାର ଏଇ କେତୋଟି ଧାଡ଼ି ମୋ ମନକୁ ସର୍ବଦା ମୁଗ୍ଧକରେ:-

ଏଇ ସହକାର ତଳେ,
ସେଦିନ ପ୍ରିୟାର କର କଙ୍କଣ,
ଭିଡ଼ିଥିଲା ମୋର ଗଳେ ।
ଏଇ ସହକାର ତଳେ ।୧।

ଚାନ୍ଦିନୀ ରାତି ଉଠିଥିଲା ମାତି,
ମଳୟ ପରଶ ପାଇ
ମନପକ୍ଷୀ ଦୂରେ କରୁଣ ମଧୁରେ
ଯାଉଥିଲା କିବା ଗାଇ

ସହଚରୀ ମୋର ପ୍ରଣୟ ବିଭୋରେ,

ଭିଡ଼ିଥିଲା ମୋର ଗଳେ

ଏଇ ସହକାର ତଳେ

ସେ ଦିନ ପ୍ରିୟାର କର କଙ୍କଣ ଭିଡ଼ିଥିଲା ମୋର ଗଳେ ।୨।

ନାରାୟଣବାବୁ ସ୍ତବ୍ଧ ହୋଇ ଯାଇଥିଲେ । ତାଙ୍କର ଆଦରଣୀୟ କବି ଓ କବିତା ଲକ୍ଷ୍ମୀଙ୍କର ବି ପ୍ରିୟ । ଅପୂର୍ବ ସଂଯୋଗ । ଲକ୍ଷ୍ମୀଙ୍କ ପାଣ୍ଡୁଲିପିଟି ପାଇ ସେ ଆନନ୍ଦରେ କୁରୁଳି ଉଠୁଥିଲେ । ଯେତେ କବିତା ପଢୁଥାନ୍ତି, ତାଙ୍କ ଦେହ ଓ ମନରେ ସେତେ ଶିହରଣ ଖେଳି ଯାଉଥିଲା । କବିତାର ପ୍ରତିଟି ଧାଡ଼ିରେ ଜୀବନ ଦର୍ଶନ, ମନୋବୈଜ୍ଞାନିକ ବିଶ୍ଳେଷଣ ।

ସେଦିନ ଥିଲା ଲକ୍ଷ୍ମୀଙ୍କର ଜନ୍ମଦିନ । ଆଶ୍ରମର ଅନ୍ତେବାସୀମାନେ ତାଙ୍କୁ ଜନ୍ମଦିନର ଅଭିନନ୍ଦନ ଜଣାଉଥାନ୍ତି । ଭିଡ଼ ସରିଗଲା । ନାରାୟଣବାବୁ ଅଭିନନ୍ଦନ ଜଣାଇଲା ପରେ ଲକ୍ଷ୍ମୀଙ୍କୁ ଗୋଟିଏ ପୁସ୍ତକ ଉପହାର ଦେଲେ । ତାହା ଥିଲା ଲକ୍ଷ୍ମୀଙ୍କ ପାଣ୍ଡୁଲିପିର ପ୍ରେସ୍‌ରେ ମୁଦ୍ରିତ କବିତା ପୁସ୍ତକ "ଲକ୍ଷ୍ମୀର ସ୍ୱପ୍ନ" ।

ବହିଟିକୁ ଦେଖି ଲକ୍ଷ୍ମୀଙ୍କ ମୁହଁରେ ଉତୁରି ପଡ଼ିଥିଲା ହସ ଓ ଆଖିରେ ମନ୍ତ୍ର ମୁଗ୍ଧ ଚାହାଣୀ । ବହିଟି ତାଙ୍କୁ କରିଥିଲା ମାୟାମଗ୍ନା । ସ୍ରଷ୍ଟାହିଁ ଜାଣେ ସୃଷ୍ଟିର ମହତ୍ତ୍ୱ, ଅନୁଭବ କରେ ସୃଷ୍ଟିର ଆନନ୍ଦ । ଆକର୍ଷଣୀୟ ପ୍ରଚ୍ଛଦପଟ, ସୁନ୍ଦର ଓ ତ୍ରୁଟି ଶୂନ୍ୟ ମୁଦ୍ରଣ । ବହିର ପ୍ରତ୍ୟେକ ପୃଷ୍ଠାକୁ ଛୁଇଁ ଦେଲାବେଳକୁ ତଡ଼ିତ୍ ବେଗରେ ତାଙ୍କ ଦେହରେ ଶିହରଣ ସୃଷ୍ଟି ହେଉଥିଲା । ଆନନ୍ଦର ଆତିଶଯ୍ୟରେ ସେ ଭାବ ବିହ୍ୱଳ ହୋଇ ପଡ଼ିଥିଲେ ।

ନାରାୟଣବାବୁଙ୍କ ପଦସ୍ପର୍ଶ କରି କହିଲେ ମୋର ସ୍ୱାମୀ, ଭାଇ ଓ ପୁଅ ଯାହା କରିବାକୁ ଚିନ୍ତା କରିନଥିଲେ, ଆପଣ ତାକୁ ବାସ୍ତବତାରେ ପରିଣତ କରିଛନ୍ତି । ମୁଁ ଆପଣଙ୍କ ପାଖରେ ଚିର କୃତଜ୍ଞ ହୋଇ ରହିବି ।

ନାରାୟଣବାବୁ ପରିତୃପ୍ତ ଦେଖାଯାଇଥିଲେ । ସିଏ ନିଜ ହାତରେ ଆଶ୍ରମର ଅନ୍ତେବାସୀମାନଙ୍କୁ ଏଇ ପୁସ୍ତକରୁ ଖଣ୍ଡେ ଲେଖାଁ ଉପହାର ଦେଲେ । ଅବଶିଷ୍ଟ ବହି ଗୁଡ଼ିକୁ ଭୁବନେଶ୍ୱରର ବିଭିନ୍ନ ବହି ଦୋକାନରେ ବିକ୍ରି ନିମନ୍ତେ ଡ଼ିପୋଜିଟ୍ କରିଦେଲେ ।

ସମୟକ୍ରମେ ନାରାୟଣବାବୁ ଓ ଲକ୍ଷ୍ମୀଙ୍କ ମଧ୍ୟରେ ଅନ୍ତରଂଗତା ବୃଦ୍ଧି ପାଇବାକୁ ଲାଗିଲା । ଦୁହିଁଙ୍କ ଚେହେରାରେ କେତେକ ସାମଞ୍ଜସ୍ୟ ଥିଲା । ଦୁହିଙ୍କ ବର୍ଣ୍ଣ ଶ୍ୟାମଳ, ଉଚ୍ଚତା ମଧ୍ୟମ ।

ଲକ୍ଷ୍ମୀ ତାଙ୍କ ପୁଅ, ବୋହୂର ଅବହେଳା ଓ ବ୍ୟବହାରରେ ଅତିଷ୍ଠ ହୋଇ ଜୀବନ

ଜ୍ୟୋତି ଆଶ୍ରମରେ ଆଶ୍ରୟ ନେଇଥିଲେ । ପାଉଥିବା ମାସିକ ଫ୍ୟାମିଲି ପେନ୍‌ସନ୍‌ରେ ତାଙ୍କର ବ୍ୟକ୍ତିଗତ ଖର୍ଚ୍ଚ ଚଳିଯାଉଥିଲା । ଦ୍ୱିତୀୟ କବିତା ପାଣ୍ଡୁଲିପି ଲେଖିବା ପାଇଁ ନାରାୟଣବାବୁ ତାଙ୍କୁ ପ୍ରେରଣା ଦେଉଥାନ୍ତି । କବିତା ଦୁଇଜଣଙ୍କ ସଂପର୍କହୀନ ସଂପର୍କକୁ ଆହୁରି ଦୃଢ଼ୀଭୂତ କରୁଥାଏ । ଲକ୍ଷ୍ମୀଙ୍କ ଦ୍ୱିତୀୟ ପାଣ୍ଡୁଲିପିର ପ୍ରକାଶନ ପାଇଁ ନାରାୟଣବାବୁ ପ୍ରତିଶ୍ରୁତି ଦେଇଥିଲେ ।

ସେଦିନ ଶୁଭକାନ୍ତଙ୍କ ଠାରୁ ଟେଲିଫୋନ ପାଇ ନାରାୟଣ ବାବୁଙ୍କ ମୁହଁରେ ମିଠା ମିଠା ଖୁସିର ରଙ୍ଗ ବୋଳି ହୋଇଗଲା । ସେ ଜାଣିଲେ ଯେ ଶୁଭକାନ୍ତର ଭୁବନେଶ୍ୱରକୁ ବଦଳି ହୋଇଛି । ତାର ଝିଅଟିଏ ଜନ୍ମ ହୋଇଛି ଓ ନାରାୟଣବାବୁ ଏବେ ଜେଜେ ପଦକୁ ପଦୋନ୍ନତି ପାଇଛନ୍ତି । ଶୁଭସ୍ମିତା ଏବେ ଚେନାଇର ଚାକିରି ଛାଡ଼ି ଭୁବନେଶ୍ୱରରେ ଗୃହିଣୀ ଭାବେ କାର୍ଯ୍ୟ କରିବେ ଓ ଝିଅ ଲିସାର ଲାଳନ ପାଳନ କରିବେ । ଶୁଭକାନ୍ତ ତାଙ୍କୁ ଜରାଶ୍ରମ ଛାଡ଼ି ତାଙ୍କ ପାଖରେ ରହିବାକୁ ଅନୁରୋଧ କରିଥିଲେ ।

ନାତୁଣୀ ହେବା ଶୁଣି ଆନନ୍ଦରେ ନାରାୟଣ ବାବୁ ଆଶ୍ରମରେ ରସଗୋଲା ବାଣ୍ଟିଥିଲେ । ତା ପରଦିନ ମୋବାଇଲ୍‌ରେ ଫୋନ୍ କରି ଶୁଭକାନ୍ତକୁ କହିଲେ ଯେ ଗୋଟିଏ ସର୍ତ୍ତ ପୂରଣ ହେଲେ ସେ ଜରାଶ୍ରମ ଛାଡ଼ି ସେମାନଙ୍କ ପାଖରେ ରହିବେ । ସେମାନେ ଭୁବନେଶ୍ୱରକୁ ଆସି ଆଶ୍ରମକୁ ଆସିଲେ ସେ ସର୍ତ୍ତଟିର ବିଶଦ ବିବରଣୀ ସେମାନଙ୍କୁ ଦେବେ ।

ବାପାଙ୍କର କଣ ସର୍ତ୍ତ ହୋଇଥାଇପାରେ ବୋଲି ଭାବି ଶୁଭକାନ୍ତ ଓ ଶୁଭସ୍ମିତା ଚିନ୍ତାରେ ପଡ଼ିଲେ । ସେମାନେ ଭାବିଲେ ଅବସର ପରେ ବାପା ଭାରି ସ୍ୱାଭିମାନୀ, ଉଚ୍ଚମନା ଓ ପରୋପକାରୀ ମଣିଷ ଭାବ୍‌ରେ ଦ୍ୱିତୀୟ ଅବତାର ପାଇଛନ୍ତି । ଚାକିରି ସମୟରେ ଯେତିକି ହିସାବୀ ଥିଲେ, ଅବସର ପରେ ସେତିକି ଖୋଲାହାତରେ ଖର୍ଚ୍ଚ କରିବାକୁ ଭଲ ପାଉଛନ୍ତି । ଦୁଃଖୀ ଦରିଦ୍ରଙ୍କୁ ଦାନ କରିବାରେ ତାଙ୍କର ନିର୍ମଳ ଆନନ୍ଦ । ବନ୍ଧୁ, ବାନ୍ଧବ ବିପଦରେ ପଡ଼ିଲେ ସେମାନଙ୍କୁ ମୁକ୍ତ ହସ୍ତରେ ସାହାଯ୍ୟ କରୁଛନ୍ତି । ମନ୍ଦିର ନିର୍ମାଣ ପାଇଁ ଓ ଜରାଶ୍ରମ, ଅନାଥାଶ୍ରମ ପାଇଁ ବିପୁଳ ଅର୍ଥ ଦାନ କରୁଛନ୍ତି । ଯେଉଁ ଦୁଇଟି ଫ୍ଳୋର ଭଡ଼ା ଲାଗିଛି, ସେ ସମସ୍ତ ଭଡ଼ା ଟଙ୍କା ସେ ନେବାକୁ ଚାହିଁବେ । ତାଙ୍କ ପେନସନ୍ ଓ ଅବସରକାଳୀନ ମିଳିଥିବା ସମସ୍ତ ଅର୍ଥର ସୁଧକୁ ଏବେ ସେ ମନଇଚ୍ଛା ଖର୍ଚ୍ଚ କରୁଛନ୍ତି । ବାପା ଭାରି ସ୍ୱାଭିମାନୀ ଓ ସ୍ୱାଧୀନଚେତା । ସେ ହୁଏତ ଚାହିଁବେ ଗୋଟିଏ ଫ୍ଳୋରରେ ସେ ଏକୁଟିଆ ରହିବେ । ସେ ଭାରି ବନ୍ଧୁପ୍ରିୟ । ଦଳ ଦଳ ସାଙ୍ଗ ଆସିବେ ଓ ସେମାନଙ୍କ ସାଙ୍ଗରେ

ବିଭିନ୍ନ ବିଷୟରେ ଆଲୋଚନା ପର୍ଯ୍ୟାଲୋଚନା କରି ସମୟ କଟାଇବେ । ଉଭୟ ସର୍ତ୍ତରେ ରାଜି ହେବାକୁ ସେମାନେ ସ୍ଥିର କରିଥିଲେ ।

ଏକ ମାସ ପରେ ଶୁଭକାନ୍ତ ଓ ଶୁଭସ୍ମିତା ଝିଅ ଲିସାକୁ ନେଇ ଜୀବନ ଜ୍ୟୋତି ଆଶ୍ରମରେ ପହଞ୍ଚିଲେ । ବାପାଙ୍କୁ ଆଶ୍ରମ ସାମ୍ନା ବରଗଛ ଚାନ୍ଦିନୀରେ ଜଣେ ବୟସ୍କା ମହିଳାଙ୍କ ସହିତ ବସିଥିବାର ଦେଖି ସେଇଠି ଅଟକି ଗଲେ । ନାରାୟଣବାବୁ ନାତୁଣୀ ଲିସାକୁ ଦେଖି ଆନନ୍ଦରେ ଅଧୀର ହୋଇ ପଡ଼ିଲେ ଓ ତାକୁ ଆଦରରେ କୋଳରେ ନେଇ ବସାଇଲେ । ତାପରେ କହିଲେ - ଏ ହେଉଛନ୍ତି ଲକ୍ଷ୍ମୀ, ମୋର ଜଣେ ଭଲ ବନ୍ଧୁ । ସାହିତ୍ୟାନୁରାଗିଣୀ ଓ କବୟତ୍ରୀ । ଏହି ଜୀବନଜ୍ୟୋତି ଜରାଶ୍ରମର ଅନ୍ତେବାସୀ ।

ପୁଅ, ବୋହୂ ଲକ୍ଷ୍ମୀଙ୍କୁ ନମସ୍କାର କଲେ । ଲକ୍ଷ୍ମୀ ସ୍ନେହରେ ସେମାନଙ୍କୁ କୋଳେଇ ନେଲେ । ତାଙ୍କ ମୁହଁରୁ ଓ ଓଠରୁ ମିଠା ମିଠା ମମତାର ନିର୍ଝରିଣୀ ଅବାରିତ ଭାବରେ ବହିଚାଲିଥିଲା । -ପିଲାମାନେ ଆସିଛନ୍ତି, ଲେମ୍ବୁ ସର୍ବତ କରି ନେଇ ଆସେ ବୋଲି କହି ସେ ଆଶ୍ରମ ଆଡ଼କୁ ଦ୍ରୁତ ଗତିରେ ଚାଲିଗଲେ ।

ବିଭିନ୍ନ ଆଳାପ, ଆଲୋଚନା ପରେ ଶୁଭକାନ୍ତ କହିଲେ- ବାପା ଆପଣ କାଲି ଜରାଶ୍ରମ ଛାଡ଼ି ଆମ ଘରକୁ ଆସିବେ । ଶୁଭସ୍ମିତା ଆପଣଙ୍କର ଯତ୍ନ ନେବ । କିଛି ଅସୁବିଧା ହେବ ନାହିଁ । ଏବେ ଫାଷ୍ଟ ଫ୍ଲୋର ଘର ଖାଲି ଅଛି । ଆପଣ ଚାହିଁଲେ ସେଠି ସ୍ୱାଧୀନ ଭାବରେ ରହିପାରିବେ ।

ନାରାୟଣବାବୁ କହିଲେ-ହଁ, ତୁମମାନଙ୍କ କଥା ମାନି ମୁଁ ନିଶ୍ଚୟ ଯିବି । କିନ୍ତୁ ଗୋଟିଏ ସର୍ତ୍ତ ।

ଉତ୍ସୁକତାର ସହ ବାପାଙ୍କୁ ଦୁହେଁ ଅନାଇ ରହିଥିଲେ । ଆଖିରେ ପ୍ରଶ୍ନବାଚକ ଚିହ୍ନଗୁଡ଼ା ଧାଡ଼ି ଧାଡ଼ି ହୋଇ ଭିଡ଼ ଜମେଇ ଥିଲେ । ନାରାୟଣଙ୍କ ମୁହଁର ରଙ୍ଗ ବଦଳି ଗଲା । ଗୁରୁ ଗମ୍ଭୀର କଣ୍ଠରେ କହିଲେ-ମୁଁ ଜରାଶ୍ରମରେ ରହିବା ଭିତରେ ଲକ୍ଷ୍ମୀଙ୍କ ସହିତ ମୋର ଉତ୍ତମ ବନ୍ଧୁତା ହୋଇ ଯାଇଛି । ମୋ ସହିତ ଲକ୍ଷ୍ମୀ ଆମ ଘରେ ରହିବେ ।

ଶୁଭକାନ୍ତ ଓ ଶୁଭସ୍ମିତାଙ୍କର ମୁହଁର ଭୂଗୋଳ ତତ୍‌କ୍ଷଣାତ୍ ବଦଳିବାକୁ ଆରମ୍ଭ କଲା । ନିରବ ବିରକ୍ତିରେ ମୁଖମଣ୍ଡଳ ବିବର୍ଣ୍ଣ ଦେଖାଗଲା । ସ୍ନାୟୁ ଓ ତନ୍ତ୍ରୀରୁ ପ୍ରତିବାଦର ସ୍ୱର ହାବୁକା ଖାଇ ଉଠିଆସିଲା ବେଳକୁ ବ୍ୟକ୍ତ ହେବାର ଶକ୍ତି ହରେଇ ବସୁଥିଲା । ସେମାନଙ୍କ ମୁହଁରେ ହସ ଖୁସିର ତୋଫା ଜହ୍ନର ଉଜ୍ଜ୍ୱଳ ଆଲୋକ ଆଗରୁ ଭରି ଯାଇଥିଲା । ଏବେ ତାକୁ ସନ୍ଦେହ ଓ ବିରୋଧାଭାସର କଳା ବଉଦ ଢ଼ାଙ୍କି ଦେଲା । କିଛି ସମୟ

ଗୁମ୍‌ସୁମ ନିରବତା ପରିବେଶଟିକୁ ଗାମ୍ଭୀର୍ଯ୍ୟପୂର୍ଣ୍ଣ କରିଦେଲା ।

ଶୁଭକାନ୍ତ ଥରିଲା କଣ୍ଠରେ କହିଲେ-ବାପା, ଲୋକନିନ୍ଦା ବିଷୟ କେବେ ଚିନ୍ତା କରିଛନ୍ତି ? ଆପଣଙ୍କ ସହିତ କ'ଣ ତାଙ୍କର ସଂପର୍କ ଲୋକେ ପ୍ରଶ୍ନ କରିବେ ?

ନାରାୟଣବାବୁ ଦୃଢ଼ ଆଉ ଗମ୍ଭୀର କଣ୍ଠରେ କହିଲେ- ଲୋକନିନ୍ଦାକୁ ମୁଁ ଖାତିର କରେନା । ଏହି ସଂପର୍କହୀନ ସଂପର୍କ ବିଷୟରେ ଲୋକମାନେ କିଛି ଦିନ କହିବେ । ତାପରେ ଚୁପ୍ ହୋଇଯିବେ । ସେମାନଙ୍କୁ ଡରି ମୁଁ ମୋର ଶେଷ ଜୀବନକୁ ନୀରସ, ଶୁଷ୍କ କରିଦେବି କାହିଁକି ? ମୁଁ ଆଜି ପର୍ଯ୍ୟନ୍ତ ଅନ୍ୟମାନଙ୍କ ପାଇଁ ବଞ୍ଚିଥିଲି, ଏବେ ଯେତେଦିନ ବାକି ଅଛି ନିଜ ପାଇଁ ଓ ନିଜ ଇଚ୍ଛାରେ ବଞ୍ଚିବି । ମୁଁ ରକ୍ତ, ଝାଳ ବୁହାଇ ପେଟ କାଟି ଭୁବନେଶ୍ୱରରେ ତିନି ମହଲା ବିଶିଷ୍ଟ ଘର କରିଛି ତୁମରିମାନଙ୍କ ପାଇଁ । ନିଜେ କାଣ୍ଟି କୁଣ୍ଟି ଚଳି ତୋର ଇଂଜିନିୟରିଂ ପଢ଼ିବା ପାଇଁ ପ୍ରତି ମାସରେ ଟଙ୍କା ପଠାଇଥିଲି ତୋର ଭବିଷ୍ୟତକୁ ଉଜ୍ଜ୍ୱଳ କରିବା ପାଇଁ । ସଞ୍ଚିତ ଅର୍ଥରେ ଜାକ୍‌ଜମକରେ ତୁମ ବାହାଘରର ଆୟୋଜନ କରିଥିଲି ତୁମର ଦାମ୍ପତ୍ୟ ଜୀବନକୁ ସୁଖମୟ କରିବା ପାଇଁ । ତୁମମାନଙ୍କର ଚଲାପଥକୁ କୁସୁମିତ କରିବା ପାଇଁ ମୁଁ ଆଉ ବୋଉ ଅସୀମ ତ୍ୟାଗ ସ୍ୱୀକାର କରିଛୁ । ଏବେ ବାକି ଜୀବନ ବଞ୍ଚିବା ପାଇଁ ମୁଁ ଚାହେଁ ସ୍ୱାଧୀନତା, ମନକୁ ଛୁଇଁବା ଭଳି ଆନନ୍ଦ । ଲକ୍ଷ୍ମୀ ମୋର ପ୍ରେମାସ୍ପଦା ପ୍ରଣୟିନୀ ନୁହେଁ, ସେ ମୋର ସାଥୀ, ବନ୍ଧୁ । ସେ ମୋ ପାଇଁ ଘର କି ମନ୍ଦିର ନୁହେଁ, ସେ ମୋ ପାଇଁ ପାନ୍ଥଶାଳା ।

ଜୀବନର ଆଦ୍ୟ ପର୍ଯ୍ୟାୟରେ ଦୈହିକ ପ୍ରେମ ମନ ଓ ତନୁକୁ ମାୟାଚ୍ଛନ୍ନ କରି ରଖିଥାଏ । ଜୀବନର ଅନ୍ତିମ ପର୍ଯ୍ୟାୟରେ ତାହା ଅନନ୍ୟ ଅନୁରାଗ ଓ ଅନାବିଳ ଶ୍ରଦ୍ଧାର ରୂପ ନେଇ ଭାରାକ୍ରାନ୍ତ ମନର ଯନ୍ତ୍ରଣାକୁ ଲାଘବ କରେ । ପରିଣତ ବୟସରେ ସାଥୀହୀନ ହୋଇଗଲେ ଜୀବନ ଦୁର୍ବିସହ ହୋଇଥାଏ । ମନରେ ପଦ୍ମ ଭଳି ଢ଼ଳ ଢ଼ଳ ହେଉଥିବା ଜୀବନସାଥୀ ଏରୁଣ୍ଡି ବନ୍ଧ ଡେଇଁ ଘରକୁ ପ୍ରବେଶ କଲାବେଳକୁ ଏ ସମାଜ କଂସା କବାଟଟିଏ ଭଳି ତା ଆଗରେ ଠିଆ ହୁଏ । ତାର ଚରିତ୍ରରେ କଳଙ୍କ ଓ କଳୁଷର କାଳିମା ବୋଳିଦିଏ । ସଂଯୋଗ ବଶତଃ ସମଦଶାପନ୍ନ, ସମଭାବାପନ୍ନ, ସମାନ ମାନସିକତାର ସାଥୀଟିଏ ପାଇଲେ, ଉଭୟଙ୍କର ଅନ୍ତିମ ଜୀବନ ସାର୍ଥକ ହୁଏ ।

ନାରାୟଣବାବୁ ଏଥିପାଇଁ ପତ୍ନୀଙ୍କର ସ୍ୱୀକୃତି ପାଇଛନ୍ତି ବୋଲି ଜୋର ଦେବାକୁ ଯାଇ କହିଲେ -ତୋ ବୋଉ ସବୁବେଳେ କହେ, ସେ ଚାଲିଗଲା ପରେ ଆଉ ଗୋଟିଏ ଲକ୍ଷ୍ମୀ ନିଶ୍ଚୟ ଆଣିବ । ସେ ସ୍ୱର୍ଗପୁରୀରେ ଥାଇ ବହୁତ ଖୁସି ହେବ ।

ଲକ୍ଷ୍ମୀ ଦୁଇ ଗ୍ଲାସ ସର୍ବତ ନେଇ ଆସି ପହଞ୍ଚିଲେ। ସର୍ବତ ପିଇସାରି -ହଉ ଆସୁଛୁ କହି ଶୁଭକାନ୍ତ, ଶୁଭସ୍ମିତା ଲିସାକୁ ନେଇ ଘରକୁ ଫେରିଗଲେ। ସେମାନଙ୍କ ମୁହଁର ପରିସୀମାରେ ପ୍ରତିବାଦ ଓ ଅସମ୍ମତିର ସ୍ୱର ନିରବରେ ଗର୍ଜନ କରୁଥାଏ। ସେମାନେ ସ୍ଥିର କଲେ ବାପା ବରଂ ଜରାଶ୍ରମରେ ରହନ୍ତୁ ଭଲ ହେବ। ବାପାଙ୍କ ସର୍ତ୍ତ ପୂରଣ କରି ତାଙ୍କୁ ଘରକୁ ଡାକିଲେ ସମସ୍ୟା ଦ୍ୱିଗୁଣିତ ହେବ।

ସାଇ, ଭାଇ, ବନ୍ଧୁବାନ୍ଧବ ଛି' ଛାକାର କରିବେ। ସେମାନେ ମୁଣ୍ଡ ଟେକି ଚଲି ପାରିବେ ନାହିଁ।

ରବିବାରର ଅଳସ ସକାଳରେ ଡେରିରେ ଉଠି ଶୁଭକାନ୍ତ ଓ ଶୁଭସ୍ମିତା ଖବରକାଗଜ ଉପରେ ଆଖି ବୁଲେଇ ନେଉଥିବା ବେଳେ କଲିଂବେଲ୍ ବାଜି ଉଠିଲା। କାମବାଲି ଆସିଛି ବୋଲି ଭାବି ଶୁଭସ୍ମିତା କବାଟ ଖୋଲିଦେଲା ବେଳକୁ ସାମ୍ନାରେ ଦେଖିଲେ ଶ୍ୱଶୁର ଓ ଲକ୍ଷ୍ମୀଦେବୀ। ସେ କିଛି କହିବା ପୂର୍ବରୁ ନାରାୟଣବାବୁ ଦୃଢ଼ କଣ୍ଠରେ ଆଦେଶ ଦେଲେ -ଫାଷ୍ଟ ଫ୍ଲୋରର ଚାବିଟି ଦିଅ।

ଶୁଭସ୍ମିତା ଅନନ୍ୟୋପାୟ ହୋଇ ସେ ଶ୍ୱଶୁରଙ୍କୁ ଚାବିଟି ବଢ଼ାଇଦେଲା।

ନାରାୟଣବାବୁ ଓ ଲକ୍ଷ୍ମୀ ଆନନ୍ଦ ଓ ସନ୍ତୋଷର ଅଳସୀ ନଈରେ ସିଆର କାଟି କାଟି ଗଲା ଭଳି ଉପର ମହଲାକୁ ଉଠି ଯାଉଥିଲେ।

ନାରାୟଣବାବୁ ରାଜ୍ୟ ଜୟ କରିବାର ଗର୍ବରେ ଗୌରବାନ୍ୱିତ ହେଲା ପରି ଜଣା ପଡୁଥିଲେ। ତାଙ୍କ କଥାରେ ସ୍ୱରରେ ଓ ମନରେ ଅଭୂତପୂର୍ବ ଦୃଢ଼ତା ଓ ଅନମନୀୟତା।

ଶୁଭକାନ୍ତ ଓ ଶୁଭସ୍ମିତା ସେମାନଙ୍କୁ ଅପଲକ ନୟନରେ ଅନାଇରହିଥିଲେ। ବାସ୍ତବତା ସହିତ ସାଲିସ୍ କରିବାକୁ ନିଜ ମନ, ହୃଦୟକୁ ସଜାଡ଼ି ନେଉଥିଲେ। ଉପର ମହଲାର ହସ ଆଉ ଆନନ୍ଦର ଲହଡ଼ି ତଳ ମହାଲାକୁ ଧସେଇ ପଶି ଆସୁଥିଲା।



*(କଥାକଳିକା ସାହିତ୍ୟ ପତ୍ରିକାରେ ପ୍ରକାଶିତ)*



ଶ୍ରୀ ମନୋଜ କୁମାର ଜେନା ୧୯୫୭ ମସିହା ମାର୍ଚ୍ଚ ୩ ତାରିଖରେ ଢେଙ୍କାନାଳ ଜିଲ୍ଲାର ନିହଲପ୍ରସାଦ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ସ୍ନାତକୋତ୍ତର ଡିଗ୍ରୀ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଆଇନରେ ସ୍ନାତକ ଡିଗ୍ରୀ ହାସଲ କରିଥିଲେ । ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କରେ ଚିଫ୍ ରିଜିଓନାଲ ମ୍ୟାନେଜର ଓ ଡେପୁଟି ଜେନେରାଲ ମ୍ୟାନେଜର ଭାବରେ କାର୍ଯ୍ୟ କରି ୩୧.୩.୨୦୧୭ରେ ଅବସର ଗ୍ରହଣ କରିଥିଲେ । ଅବସର ପରେ ସେ ଗଳ୍ପ ଓ କବିତା ରଚନାରେ ମନୋନିବେଶ କରିଛନ୍ତି । ତାଙ୍କର କ୍ଷୁଦ୍ରଗଳ୍ପଗୁଡିକ ସମାରୋହ, କଥାକଳିକା ଓ ସତ୍ୟବାଦୀ ଆଦି ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଛି । କବିତାର ଲାଳିତ୍ୟଭରା ଛନ୍ଦୋମୟ ସ୍ପର୍ଶ, ବର୍ଣ୍ଣନାର ସାବଲୀଳ ପ୍ରବାହ ଓ କାହାଣୀରେ ରହୁଥିବା ଉତ୍କଣ୍ଠାର ସମନ୍ୱୟରେ ତାଙ୍କର ଗଳ୍ପଗୁଡିକ ସରସ, ସୁନ୍ଦର ଓ ସୁଖପାଠ୍ୟ । ତାଙ୍କର ଅନୁବାଦ କବିତା ପୁସ୍ତକ **'ପ୍ରଭୁ ମହିମା'** ଓ କବିତା ସଂକଳନ **'ଆମ ଗାଆଁ'** ପାଠକୀୟ ସ୍ୱୀକୃତି ଲାଭ କରିଛି ।

**'ସଜ ସକାଳ'** ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ ସଂକଳନ । ଦ୍ୱିତୀୟ କ୍ଷୁଦ୍ରଗଳ୍ପ ସଂକଳନ **'ଅଚିହ୍ନା ଆକାଶ'** ପ୍ରକାଶ ଅପେକ୍ଷାରେ । ଶ୍ରୀ ଜେନା ସଂପ୍ରତି "ଚିରସମର୍ଥା" ସାହିତ୍ୟ ପତ୍ରିକାର ସହସଂପାଦକ ।